# ଜୀବନର ଜିପ୍ସ-ଯାତ୍ରା



ଶ୍ରୀ ଭଂଜକିଶୋର ପଟ୍ଟନାୟକ

# ଜୀବନର ଜୟଯାତ୍ରା

( ଆତ୍ମ-ଜୀବନୀ )



ଭଞ୍ଜକିଶୋର ପଟ୍ଟନାୟକ

ନବେଦତା ପ୍ରକାଶନୀ

[illegible]

# ଜୀବନର ଜୟଯାତ୍ରା

(ଆତ୍ମ-ଜୀବନୀ)

**ଭଞ୍ଜକିଶୋର ପଟ୍ଟନାୟକ**

**ନିବେଦିତା ପ୍ରକାଶନୀ**

ମଙ୍ଗଳା ସାହି, କଟକ-୭୫୩୦୦୨

ପ୍ରକାଶିକା :

**ଶ୍ରୀମତୀ ସରୋଜିନୀ ପଟ୍ଟନାୟକ**

ମଳୟ-ନିଳୟ, ମଙ୍ଗଳା ସାହି, କଟକ-୨



ମୁଦ୍ରାକର :

**ପୁଷ୍ପଗିରି ପ୍ରେସ୍**

କାଫଲ୍ ବଜାର, କଟକ-୨

ମୂଲ୍ୟ :

ସାଧା ବନ୍ଧାଇ : ଟ ୫୫-୦୦

ବୋର୍ଡ଼ ବନ୍ଧାଇ : ଟ ୬୫-୦୦

**JIBANARA JAYAJATRA**

(AUTOBIOGRAPHY)

**BHANJAKISHORE PATNAIK**

**NIBEDITA PRAKASANI**

Mangala Sahi, Cuttack-753002

*Publisher :*

**Smt. SAROJINI PATNAIK**

Malay-Nilay, Mangala Sahi, Cuttack-2



*Printed at :*

**Puspagiri Press**

Kafla Bazar, Cuttack-2

*Price :*

Plain Bound : Rs 55-00

Hard Bound : Rs. 65-00

# ଉତ୍ସର୍ଗ

ପ୍ରବୀଣ ଆଇନଜ୍ଞ, ବିଶିଷ୍ଟ ସମାଜସେବୀ ତଥା

ସିକିମ୍ ହାଇକୋର୍ଟର ପୂର୍ବତନ ମୁଖ୍ୟ-ବିଚାରପତି

ଶ୍ରଦ୍ଧେୟ **ଯୁଗଳ କିଶୋର ମହାନ୍ତିଙ୍କୁ**

ଏଇ ସ୍ନେହୋପହାର—

**ଭଞ୍ଜକିଶୋର**

"ଜୀବନର ଜୟଯାତ୍ରା"ରେ ରହସ୍ୟ ନାହିଁ, ରୋମାଞ୍ଚ ଅଛି; ଶିଶୁର ବାଲ୍ୟ-ଚପଳତା ନାହିଁ, ସାରଲ୍ୟ ଅଛି; ଯୌବନର ଉଚ୍ଛୃଙ୍ଖଳତା ନାହିଁ, ଉନ୍ମାଦନା ଅଛି; ବାର୍ଦ୍ଧକ୍ୟର ଶିଥିଳତା ନାହିଁ, ପ୍ରବୀଣତା ଅଛି; ଆଜ ଅଛି ଆକାଶର ଉଦାରତା ଓ ସାଗରର ଗମ୍ଭୀରତା ।

—ପ୍ରକାଶିକା

# ଜୀବନର ଜୟଯାତ୍ରା

## ଆଦ୍ୟ-କଥନ

ଅନାଦି, ଅନନ୍ତ, ଅଚ୍ୟୁତ, ପରାତ୍ପର ପରମେଶ୍ୱରଙ୍କ ପାଦପଦ୍ମରେ ଅଭୂମି ପ୍ରଣାମ ଜଣାଇ, ଆରମ୍ଭ କରୁଛି ମୋର ଏଇ ଅବ୍ୟକ୍ତ, ଅଭିନବ, ଅପୂର୍ବ, ଅଲେଖ୍ୟମୟ ଆତ୍ମଜୀବନୀ ଗ୍ରନ୍ଥ ।

ସାନଭାଇଠୁଁ ବଳି ଆପଣାର ଅତି ଆଦରର ଶ୍ରୀମାନ୍ ବୈକୁଣ୍ଠ ନାଥ ସାହୁ, ଓ. ଏ. ଏସ୍., ସହକର୍ମୀ । ଗାଳ୍ପିକ ଶ୍ରୀମାନ୍ ବୈଷ୍ଣବ ଚରଣ ମହାନ୍ତି, ନାଟ୍ୟକାର ବନ୍ଧୁ ଶ୍ରୀମାନ୍ ସୋମନାଥ ପାଲ, ମୋର ଅଲିଅଳି ମଧ୍ୟମା କନ୍ୟା ଆୟୁଷ୍ମତୀ କବିତା, ପଞ୍ଚମ ଜାମାତା ଶିକ୍ଷାବିତ୍, ସାହିତ୍ୟିକ ଶ୍ରୀମାନ୍ ସତ୍ୟଜିତ ମହାପାତ୍ର, ଅଧିକନ୍ତୁ ଅନେକ ହିତାକାଂକ୍ଷୀ ବନ୍ଧୁ ଏବଂ ଶୁଭେଚ୍ଛୁ ପାଠକ ମାନଙ୍କର ଅନୁରୋଧକୁ ବାରମ୍ବାର ଟାଳି ଦେଇ; ଏପରିକି ପ୍ରାଣ-ପ୍ରିୟତମା ପତ୍ନୀ ସରୋଜିନୀଙ୍କ ଅଳି ଆବଦାର୍‌କୁ ଏଡ଼ିଦେଇ, ଆତ୍ମଜୀବନୀ ଲେଖାରେ ମନ ବଳାଇ ନ ଥିଲି— ହୁଏତ ଅନେକ ଦିନୁ ଲେଖା ସରନ୍ତାଣି—କିନ୍ତୁ ଶେଷରେ ମୋର କଲେଜ୍ ସହପାଠୀ, ସୁହୃଦ ଶ୍ରୀଯୁକ୍ତ ଅନିଲ କୁମାର ଦାସଗୁପ୍ତ, ଓ. ଏ. ଏସ୍. (ରିଟାୟାର୍ଡ) ଯେଉଁଦିନ ଏକ ସୁଦୃଶ୍ୟ ବନ୍ଧାଇ ଖାତା ଓ ନୂଆ କଲମ ଧରାଇ ଦେଇ ତାଗିଦା କଲେ, ସେଇ ଅକ୍ଷୟତୃତୀୟାର ପବିତ୍ର ଦିବସରେ ହିଁ ହେଲା ଜୀବନୀ ଲେଖାର ଅସ୍ତ୍ରମାରମ୍ଭ ।

କଣ ଲେଖିବି ? କିପରି ଆରମ୍ଭ କରିବି ? ଘଟଣା ବହୁଳ ଜୀବନର ଅନେକ କଥା, ଅନେକ କାହାଣୀ, ଅନେକ ଅନୁଭୂତି, ବୁଢ଼ିଆଣୀ ସୂତାର ଖିଅ ପରି ଜାଲ ବାନ୍ଧି ଗୁଡ଼େଇ ଗୁଡ଼େଇ ହୋଇ ରହିଛି । କେଉଁ ଖିଅକୁ ଧରିଲେ ସୂତା ଠିକ୍ ଫିଟିବ, ଏହାହିଁ ମୋ ସମ୍ମୁଖରେ ଏକ ବିରାଟ ପ୍ରଶ୍ନବାଚୀ ! ଜଣେ ନାଟ୍ୟକାର ମୁଁ, ଓଡ଼ିଶାର ବିଭିନ୍ନ ପେଶାଦାରୀ ତଥା ସୌଖୀନ୍ ରଙ୍ଗମଞ୍ଚରେ ମୋର ବହୁ ନାଟକ ଅଭିନୀତ; ସମାଜ ଭିତରୁ ବହୁ ଚରିତ୍ର ସୃଷ୍ଟି କରି ଅଗଣିତ ନାଟ୍ୟପ୍ରେମୀ ଦର୍ଶକଙ୍କ ଚକ୍ଷୁ ସମକ୍ଷରେ ଉପସ୍ଥାପିତ କରିଛି; କିନ୍ତୁ କେଉଁ ଭୂମିକାରେ ନୂଆ ରଙ୍ଗମଞ୍ଚରେ ବିଦଗ୍ଧ ପାଠକମାନଙ୍କ ସମ୍ମୁଖରେ ନିଜକୁ ମୁଁ ପରିଚିତ କରାଇବି ? ଛାତ୍ରାବସ୍ଥାରୁ ଆଜି ସୁଦ୍ଧା ବହୁ କାବ୍ୟ-କବିତା, ନାଟିକା, ଗଳ୍ପ

ଉପନ୍ୟାସ, ଗୀତିନାଟ୍ୟ, ପ୍ରବନ୍ଧାବଳି (ଅଧିକାଂଶ ପ୍ରକାଶିତ) ଲେଖିଛି, ଲେଖୁଛି ମଧ୍ୟ; କିନ୍ତୁ ଏ ଆତ୍ମ-ଜୀବନୀ ଲେଖାର ମାଧ୍ୟମ ପ୍ରକୃତରେ କଣ ହେବ, ତାହା ସ୍ଥିର କରିବା ମୋ ପକ୍ଷରେ ଏକ ଦୁରୂହ ବ୍ୟାପାର ମନେ ହେଉଛି ! ମନରେ ଆଶଙ୍କା ଆସୁଛି, 'ଦିଅଁ' ଗଢ଼ିବାକୁ ଯାଇ 'ମାଙ୍କଡ଼' ହୋଇ ଯିବନି ତ ଆଉ ? ଯାହା ହେଉ, ଯେଉଁ ଦିଅଁଙ୍କ ଉପରେ ଅତୁଟ ଭରସା ରଖି ଆଜି ପର୍ଯ୍ୟନ୍ତ ମୋ ସାହିତ୍ୟିକ ଜୀବନ ଆଗେଇ ଆସିଛି, ସେହି ଅପାର କରୁଣାମୟ ପ୍ରଭୁ ମୋର ପଥ-ପ୍ରଦର୍ଶକ ହୁଅନ୍ତୁ—ଏତିକି କାମନା !

ସେକ୍ସ୍ ଓ ଡ୍ରଗ୍ସ-ବିରୋଧୀ ଆନ୍ଦୋଳନରେ ସାମିଲ୍ ହୋଇ ଯେଉଁମାନେ ନିଜେ ଏଡ୍ସ୍‌ର ଶିକାର ହୁଅନ୍ତି ଅବା ଅଭ୍ୟାସର ଦାସ ହୋଇ ଆପଣାର ସର୍ବନାଶ କରନ୍ତି ; ଯୌତୁକ-ବେଦୀରେ ଶତ ସହସ୍ର ଲଳନାଙ୍କୁ ବଳି ଦେଇ ଯେଉଁମାନେ ନାରୀନିର୍ଯ୍ୟାତନା ଲାଗି କୁମ୍ଭୀର କାନ୍ଦଣା କାନ୍ଦନ୍ତି ; ଦେଶ ଓ ଦଶର ହିତ କରିବାର ପ୍ରତିଶ୍ରୁତି ଦେଇ ଶାସନ ଗାଦିକୁ ଗଲାପରେ ଯେଉଁମାନେ କେବଳ ଆପଣାର, ଆପଣା ପରିବାରର ଓ ଆପଣାର ବନ୍ଧୁ ସ୍ୱଜନମାନଙ୍କ ହିତ କାମନା କରନ୍ତି; ଜନ-ମଙ୍ଗଳର ଦୁହାଇ ଦେଇ ଲୋକତନ୍ତ୍ରର ଯେଉଁ ବଡ଼ପଣ୍ଡାମାନେ କଳାଧନରେ ଜାତୀୟ ଚରିତ୍ରକୁ ଅଧୋଗାମୀ କରିବାରେ ଅଗ୍ରଣୀ ହୁଅନ୍ତି; ସେହି ନରରାକ୍ଷସ, ଡକାୟତମାନଙ୍କୁ ବଦଳାଇବ କିଏ ? ଆମେ ଫାସିଜମ୍‌ର ମୂଲୋତ୍ପାଟନ କରିଛୁ ବୋଲି କଥାରେ କହୁଛୁ, ହେଲେ ଆମରି ଭିତରେ ଏବେ ବି ବଞ୍ଚି ରହିଛନ୍ତି ହିପୋଳାଟ୍ ହିଟଲର୍, ଇଭାନ୍ ଦି ଟେରିବଲ୍ ଆଉ ଇଦି ଅମୀନ୍ ଭଳି ରକ୍ତପାୟୀ ପିଶାଚ !

ସତ୍ୟ ଓ ଅର୍ଦ୍ଧସତ୍ୟକୁ ଆଧାର କରି ଆମ ଦେଶର ମହାମାନ୍ୟବର ପ୍ରଧାନମନ୍ତ୍ରୀ, ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ରାଜ୍ୟପାଳ, ଏବଂ ଉଚ୍ଚ-ପଦାଧିକାରୀମାନଙ୍କ ବିରୁଦ୍ଧରେ ଦୁର୍ନୀତି, ଭ୍ରଷ୍ଟାଚାର ତଥା ବ୍ୟକ୍ତି-କୈନ୍ଦ୍ରିକତାର ଯେଉଁ ସ୍ୱର ଉଠୁଛି, ତା'ମଧ୍ୟରେ ବୋଫର୍ସ, ନଗରୱାଲା, ହର୍ଷଦ ମେହେଟ୍ଟା, ସେଣ୍ଟ୍ କିଟ୍ସ୍ କେଶ୍, ଏବଂ ସେୟାର୍ ମାର୍କେଟ୍ ଦୁର୍ନୀତି; ହାଉସିଂ ସ୍କାମ୍; ୟୁରିଆ, ଚିନି ଓ ଟେଲିକମ୍ ଦୁର୍ନୀତି, ପଶୁପାଳନ ବିଭାଗରେ ଭ୍ରଷ୍ଟାଚାର ପ୍ରଭୃତି ଅନ୍ତର୍ଭୁକ୍ତ ! ବିଶେଷ କରି ହାୱାଲା କାଣ୍ଡ ଯେପରି ଲଙ୍କାକାଣ୍ଡ ସୃଷ୍ଟି କରି ଆମ ଦେଶର ଭି. ଭି. ଆଇ. ପି. .ନେତା ଓ ଶାସକବର୍ଗଙ୍କ ମୁଖା ଖୋଲି ଦେଇଛି, ତାହା ବିଂଶ ଶତାବ୍ଦୀର ବିଶେଷ ଉଲ୍ଲେଖଯୋଗ୍ୟ ଘଟଣାପ୍ରବାହ ! ଅତୁଟ ବିଶ୍ୱାସ ଓ ଭରସା ରଖି ଆମେ ଯେଉଁମାନେ ଯାହାଙ୍କୁ ଶାସନ ଗାଦିରେ ବସାଇଥିଲେ, ସେହିମାନେ ହିଁ 'ତ୍ୟାଗ' ପରିବର୍ତ୍ତେ 'ଭୋଗ'ର ବଶବର୍ତ୍ତୀ

ହୋଇ ବିଶ୍ୱାସଘାତକତା କରିଚାଲନ୍ତି ଦେଶ ପ୍ରତି, ଆମର ଗଣତନ୍ତ୍ର ପ୍ରତି, ଏବଂ ଏହାହିଁ ହେଉଛି ଭାରତୀୟ ନେତାମାନଙ୍କ ପ୍ରତି ଚରମ ଉପହାସ !

କେଉଁ ପ୍ରକାର ସାହିତ୍ୟ ଏ ଦେଶ ଆଉ ଜାତିକୁ ରକ୍ଷା କରିବ ? ଆମର ତଥାକଥିତ ତରୁଣ ସମାଜ ଆଜି ଗଭୀର ହତାଶାରେ ଜର୍ଜରିତ; ଉଗ୍ର-ଭାବପ୍ରବଣତାରେ ଉଚ୍ଛୃଙ୍ଖଳ, ହିଂସ୍ର, ଅଶ୍ଳୀଳ-ଅନ୍ଧକାରର ବାଟଧରି ମଧ୍ୟରେ ଯୌବନର ଭଗ୍ନ ଆଜି ନିମଜ୍ଜମାନ;—କାହିଁ ଆଶାର ଆଲୋକ-ବର୍ତ୍ତିକା ? ଗୌତମ ବୁଦ୍ଧ, ଯୀଶୁ, ଚୈତନ୍ୟ, ନାନକ ଆଜି କାହାନ୍ତି ? କାହାନ୍ତି ଆଜି ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ସନ୍ଥ ତୁଳସୀ ଦାସ ଆଉ ମହାତ୍ମା ଗାନ୍ଧୀ ? ଅମ୍ଳାନଙ୍କୁ ଛାଡ଼ି ଆମେ ଆଜି ଅଂଗାରକାମ୍ଳରେ ଜୀବନର ସନ୍ଧା ଖୋଜୁଛୁ । 'ଭଲ'କୁ ତ୍ୟାଗ କରି 'ଭେଜାଲ୍' ନିକଟରେ ଆତ୍ମସମର୍ପଣ କରୁଛୁ । କେଉଁ ପ୍ରକାର ସାହିତ୍ୟ ଜନଚେତନା ଜାଗ୍ରତ କରି ଏ ପତିତ ମାନବସମାଜକୁ ଉର୍ଦ୍ଧ୍ୱକୁ ଉଠାଇବ ଆଜି ?...

ଜଣେ ଇତିହାସର ଛାତ୍ର ହିସାବରେ ମୁଁ ଭାରତ ଇତିହାସଠୁ ଆରମ୍ଭ କରି ପୃଥିବୀ ଇତିହାସ ପର୍ଯ୍ୟନ୍ତ ଅନୁଧ୍ୟାନ କରି ଦେଖିଛି, ପରିବର୍ତ୍ତନଶୀଳ ପୃଥିବୀରେ ସବୁବେଳେ ଓଲଟ ପାଲଟ ଲାଗି ରହିଛି । ଆଜି ଯାହା ଅଛି, କାଲିକି ସେ ନ ଥିବ; କାଲି ଯାହା ଥିଲା, ଆଜି ତାହା ନାହିଁ ! ଅଘଟନ, ବିଘଟନ, ଉଚ୍ଛୃଙ୍ଖଳତା, ବିପ୍ଳବ ଆଉ ବିଦ୍ରୋହର କେତେ ସର୍ବନାଶୀ ଝଞ୍ଜା ପୃଥିବୀ ଉପରେ ବହି ଯାଇଛି, କେତେ ମହାନ୍ ସଭ୍ୟତା ଭାଙ୍ଗି ଚୂରି ଧ୍ୱଂସ ହୋଇଯାଇଛି; ଅତ୍ୟାଚାର, ଅନାଚାର ଓ ଭ୍ରଷ୍ଟାଚାରର କେତେ ଢେଉ ସମାଜ-ସାଗର ତଟରେ ପିଟି ହୋଇ ନିଜର ସତ୍ତା ହରାଇ ଦେଇଛି, କିନ୍ତୁ ତଥାପି ସମାଜ ତିଷ୍ଠି ରହିଛି, ଅଚଳା ପୃଥିବୀ ସ୍ଥିର ହୋଇ, ଅଟଳ ହୋଇ ମୁଣ୍ଡ ଟେକି ଛିଡ଼ା ହୋଇଛି ।

ପ୍ରଳୟର ଯେଉଁଠି ଶେଷ, ସୃଷ୍ଟିର ସେଇଠି ଆରମ୍ଭ ! ପ୍ରସିଦ୍ଧ ଇଂରେଜ କବି P. B. Shellyଙ୍କର "Ode to west wind"ରେ "If winter comes, can Spring be far behind ?" ବର୍ଣ୍ଣିତ ଭଳି ଧ୍ୱଂସର ସ୍ତୂପ ହିଁ ପୃଥିବୀରେ ନୂତନ ସବୁଜିମା ଆଣିଦେଉଛି, ଆଣି ଦେଉଛି ନବୀନ ସର୍ଜନା ! ସକଳ ପ୍ରକାର ବିବାଦ, ବିସମ୍ବାଦ, ଆଘାତ-ଅପଘାତ ସତ୍ତ୍ୱେ ଏ ସମାଜ ବଞ୍ଚିରହିବ; ହୃଦୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ କଳା-କୀର୍ତ୍ତି-କୁଶଳତାର ଉଦାର, ଉଦ୍ଦାମ, ଉଲ୍ଲାସରେ ଏ ସୃଷ୍ଟି ହସି ଉଠିବ । ଧରିତ୍ରୀପୃଷ୍ଠକୁ ନୂଆ

ନୂଆ ରୂପରେ ପୁଣି ଓହ୍ଲାଇ ଆସିବେ ବୁଦ୍ଧ, ଚୈତନ୍ୟ, କବୀର, ଋଷି ଅରବିନ୍ଦ ପ୍ରେମର ମହାମନ୍ତ୍ର, ମାନବିକତାର ବାର୍ତ୍ତା ଶୁଣାଇବାପାଇଁ, ଆନନ୍ଦର ବନ୍ୟା ଛୁଟାଇବା ପାଇଁ ! ଉଦ୍ଭଟ ନାଟକର ଉପସଂହାର ଭଳି ଅନ୍ଧାରରେ ଖୋଜି ବୁଲିବା ପାଇଁ ନୁହେଁ—ମରଣଶୀଳ ମନୁଷ୍ୟଙ୍କୁ ମୃତ୍ୟୁର ଭୟ ଦେଖାଇବା ପାଇଁ ନୁହେଁ—ଜୀବନକୁ ଗଭୀର ହତାଶାରେ ଜର୍ଜରିତ କରି କ୍ଷତବିକ୍ଷତ କରିବା ପାଇଁ ନୁହେଁ !

ଅଖ୍ୟାତ, ଅଭୂତ, ଅଶ୍ରୁତପୂର୍ବ, ଉଦ୍‌ବେଗ ଓ ଆବେଗମୟ ଅଭୁଲା ସ୍ମୃତିର ଉଲ୍ଲାସ-ମଧୁର, ହର୍ଷ-ରସାପ୍ଲୁତ, ଅଶ୍ରୁ ଓ ଆନନ୍ଦର ଅନିର୍ବଚନୀୟ ଘଟଣାର ସମାହାରକୁ ନେଇ, ଅସ୍ତବ୍ୟସ୍ତ, କର୍ମବହୁଳ ଜୀବନର ଅମ୍ଳ-ମଧୁର ସ୍ମୃତିଗାଥାକୁ ଯୋଡ଼ି ଆତ୍ମ-ଜୀବନୀ ଲେଖିବାର ମୋର ଏ ପ୍ରୟାସ ଏକ ଅନ୍ତରଙ୍ଗ-ଆଳାପ ପରି ରୁଚିକର ହେଲେ ମୋ ଶ୍ରମ ସାର୍ଥକ ହେବ । ଏକଦା ଏକ ଭାବପ୍ରବଣ ମୁହୂର୍ତ୍ତରେ ଲେଖିଥିଲି :—

"କେତେ ତାରା ଲିଭିଯାଏ
ଆକାଶର ଛାତିରେ,
କେତେ ଫୁଲ ଝରିଯାଏ
ମାଟିତଳ ତାତିରେ,
କେତେ ପ୍ରାଣ ହଜିଯାଏ
କାଳ-ଅମା-ରାତିରେ
ଜୀବନର ଜୟଗାନ
ଗାଏ ମୋର ଗୀତିରେ !"

———

# ଜୀବନ-ପ୍ରଭାତ

—ଏକ—

ସିନ୍ଦୂର ଫାଟିଲା । କାକଳି ରବରେ ଆକାଶ, ବତାସ ହେଲା ମୁଖରିତ । ସୀମନ୍ତିନୀର ଲଲାଟରେ ସିନ୍ଦୂର ବିନ୍ଦୁପରି ଉଇଁ ଆସିଲେ ଲାଲ୍ ଟକ୍ ଟକ୍ ସୂର୍ଯ୍ୟ ! ନବ-ଦୂର୍ବାଦଳ ଉପରୁ ଅଦୃଶ୍ୟ ହୋଇଗଲା ଜମାଟ ବାନ୍ଧିଥିବା ଶିଶିର-ବିନ୍ଦୁ । ନିର୍ମେଘ ଆକାଶରେ ବିଚ୍ଛୁରିତ ହେଲା ସୂର୍ଯ୍ୟୋଦୟର ରକ୍ତିମ ଛଟା । ଚଳଚଞ୍ଚଳ ଜୀବନର ହେଲା ଶୁଭ-ଉନ୍ମେଷ !

୧୯୨୨ ମସିହା ନଭେମ୍ବର ମାସ ତା ୧୩ ରିଖ ସୂର୍ଯ୍ୟୋଦୟର ପବିତ୍ର ମୁହୂର୍ତ୍ତରେ ଜନନୀ ସତ୍ୟଭାମା ପ୍ରଥମ ଗର୍ଭରେ ଜନ୍ମ ଦେଲେ ଏକ ପୁତ୍ର ସନ୍ତାନକୁ ଏବଂ ତାହାର ନାମକରଣ କଲେ 'ମହେନ୍ଦ୍ର' । କିନ୍ତୁ ଜନ୍ମଦେବାର ମାତ୍ର ନଅମାସ ପରେ ସତ୍ୟଭାମାଙ୍କର ଅକାଳ ବିୟୋଗ ଘଟିଲା । ପିତା ସ୍ୱର୍ଗତ ଦୁର୍ଗାଚରଣ ପଟ୍ଟନାୟକ ଏତେ ବଡ଼ଟେ ପିଲାକୁ କିପରି ବଞ୍ଚାଇବେ ସେଚିନ୍ତା ଏବ ପାଗଳ ପ୍ରାୟ ହୋଇଗଲେ । ତା'ଛଡ଼ା ନିଜେ ଅସୁସ୍ଥ ଥିବାରୁ ତାଙ୍କ ବୁଦ୍ଧି ବାଟ ଦିଶିଲା ନାହିଁ । ଏତିକିବେଳେ ତାଙ୍କର ଜଣେ ବଡ଼ଭାଇ (ଏକା ସାହିର) ୬ ସାଧୁଚରଣ ପଟ୍ଟନାୟକ ସେଇ ମାତୃହୀନ ଶିଶୁଟିକୁ ପୁଅକରି ନେବାକୁ ଚାହିଁଲେ । ଅଭିଷିକ୍ତର ଦଇବ ସାହା । ଦୁର୍ଗାଚରଣ ତାଙ୍କ ହାତକୁ ଟେକିଦେଲେ ସେଇ ଶିଶୁପୁତ୍ରଟିକୁ । ସାଧୁଚରଣଙ୍କର ତିନି ଚାରୋଟି ସନ୍ତାନ ଏଥିପୂର୍ବରୁ ମରିଯାଇଥିବାରୁ, ସେଇ ପିଲାଟିକୁ ନେଇ ସେ ତାଙ୍କ ସ୍ତ୍ରୀ ସତ୍ୟଭାମାଙ୍କ କୋଳରେ ଦେଲେ । ବିଧାତାର ଏପରି ବିଧାନ ଯେ ଜନ୍ମିତା ମା ଓ ପାଳିତା ମା ଉଭୟଙ୍କ ନାମ ଥିଲା 'ସତ୍ୟଭାମା' ।

କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ଗୁଣିପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ସୁଦ୍ଧା, ମହେନ୍ଦ୍ରର ଶୈଶବ, କୈଶୋର ଓ ଯୌବନର ଆଦ୍ୟାବସ୍ଥା ଅତିବାହିତ ହୋଇଥିଲା ତତ୍‌କାଳୀନ ମୟୂରଭଞ୍ଜ-ଷ୍ଟେଟ୍‌ର ରାଜଧାନୀ ବାରିପଦାରେ । ମାତ୍ର ଦଶମାସ ବୟସର ପୁତ୍ର ସନ୍ତାନକୁ ପାଳକ ପିତା ସ୍ୱର୍ଗତ ସାଧୁଚରଣ ପଟ୍ଟନାୟକ ନେଇ ଯାଇଥିଲେ ତାଙ୍କ କର୍ମକ୍ଷେତ୍ର ବାରିପଦାକୁ । ସେତେ ସମୟରେ ସେ ଷ୍ଟେଟ୍ ଟ୍ରେଜେରୀର ଆକାଉଣ୍ଟେଣ୍ଟ୍ ଭାବେ କାର୍ଯ୍ୟ କରୁଥିଲେ ।

ପୁତ୍ର ମହେନ୍ଦ୍ରର ନାମକରଣ ତାଙ୍କୁ ବୋଧହୁଏ ଭଲ ଲାଗିଲା ନାହିଁ । ଅତି ପୁରୁଣାକାଳିଆ ସାଧାରଣ ମନେହେଲା ବୋଧହୁଏ । ସେତେବେଳର ଏଣ୍ଟ୍ରାନ୍ସ ପାଶ୍ କରି ଉନ୍ନତ, ଆଧୁନିକ ଦୃଷ୍ଟିଭଙ୍ଗୀର ମଣିଷ ଥିଲେ ସେ । ଭଞ୍ଜଭୂମି (ମୟୂରଭଞ୍ଜ)ର କିଶୋର ଭାବେ ପୁତ୍ରର ଭବିଷ୍ୟତ ଉଜ୍ଜ୍ୱଳ ହେବ ବୋଲି ଚିନ୍ତା କରି 'ମହେନ୍ଦ୍ର' ପରିବର୍ତ୍ତେ ନୂତନ ନାମକରଣ କଲେ 'ଭଞ୍ଜକିଶୋର'। ବୋଧହୁଏ ତାଙ୍କ ମତରେ ଏହି ନାମ ଥିଲା ଅନନ୍ୟ-ସାଧାରଣ ଓ ଅତ୍ୟାଧୁନିକ ।

ସେତେବେଳେ ଇଂରେଜର ଏକ ମିତ୍ରରାଜ୍ୟ ରୂପେ ମୟୂରଭଞ୍ଜ ଥିଲା ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ସବୁ ବିଷୟରେ ଅଗ୍ରଣୀ । ଉତ୍କଳଜନନୀର ବରପୁତ୍ର, ପ୍ରଜାବତ୍ସଳ, ଉଦାର ହୃଦୟ, ଦେଶପ୍ରେମୀ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ଦ୍ୱିତୀୟ ପୁତ୍ର ମହାରାଜା ସାର୍ ପ୍ରତାପଚନ୍ଦ୍ର ଭଞ୍ଜଦେଓ, କେ.ସି.ଆଇ.ଇ. ଥିଲେ ମୟୂରଭଞ୍ଜର ଶାସକ । ଉଚ୍ଚ ଜ୍ଞାନ-ବୁଦ୍ଧି-ସମ୍ପନ୍ନ ସୁଶାସକ ଭାବରେ ତାଙ୍କର ଥିଲା ଅପରିସୀମ ଖ୍ୟାତି । ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତି ପରେ ସର୍ବଶେଷ ଗଡ଼ଜାତ ରାଜ୍ୟରୂପେ ମୟୂରଭଞ୍ଜ ଓଡ଼ିଶାରେ ସାମିଲ ହେଲା । ବିହାରୀମାନେ ଯେପରି ଭାବରେ ମହାରାଜାଙ୍କୁ ପ୍ରବର୍ତ୍ତାଉଥିଲେ, ଚାହିଁଥିଲେ ସେ ହୁଏତ ମୟୂରଭଞ୍ଜକୁ ବିହାର ସହିତ ମିଶାଇ ଦେଇଥାନ୍ତେ; ମାତ୍ର ତାହା ହେଲା ନାହିଁ । ସାର୍ ପ୍ରତାପଚନ୍ଦ୍ର ନିଜକୁ ଓଡ଼ିଆ ବୋଲି ପରିଚୟ ଦେଇ ଓଡ଼ିଶା ସହିତ ତାଙ୍କ ରାଜ୍ୟର ମିଶ୍ରଣ କରାଇଥିଲେ । ଏହା ହିଁ ଥିଲା ତାଙ୍କ ଦେଶ ଓ ଜାତିପ୍ରୀତିର ଜ୍ୱଳନ୍ତ ନିଦର୍ଶନ ।

ମାତ୍ର ତାଙ୍କ ବିଷୟରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ନାହିଁ । ତାଙ୍କ ପିତାଙ୍କ ନାମରେ ନାମିତ କଟକରେ ଯେଉଁ ବଡ଼ ଡାକ୍ତରଖାନା (S.C.B. Medical College and Hospital) ପ୍ରତିଷ୍ଠିତ ହୋଇଛି, ସେଥିପାଇଁ ସେ ଅଜସ୍ର ଅର୍ଥ ଦାନ କରିଛନ୍ତି । ରେଭେନ୍ସା କଲେଜ ପାଇଁ ତାଙ୍କ ଦାନମଧ୍ୟ ଉଲ୍ଲେଖଯୋଗ୍ୟ । ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ କଟକର 'ଶ୍ରୀରାମଚନ୍ଦ୍ର ଭବନ' ଉତ୍କଳର ଏକ ମହାନ ସାଂସ୍କୃତିକ ପୀଠସ୍ଥଳୀ । ଆପଣା ରାଜନଗରକୁ ସେ ତାଙ୍କ ଜ୍ୟେଷ୍ଠ ଭ୍ରାତା ମହାରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ନାମରେ M. P. C. College ସ୍ଥାପନ ଉଦ୍ଦେଶ୍ୟରେ ଦାନ କରିଛନ୍ତି । Mayurbhanj State Pressକୁ ସେ ହସ୍ତାନ୍ତରିତ କରିଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟକୁ । ଏପରିକି ତାଙ୍କ State Band Partyକୁ ମଧ୍ୟ ସେ ଓଡ଼ିଶା ପୋଲିସକୁ ଦେଇଛନ୍ତି । ଉପରୋକ୍ତ ବିଷୟମାନଙ୍କରୁ ସାର୍ ପ୍ରତାପଚନ୍ଦ୍ରଙ୍କର ଗଭୀର ହୃଦୟବତ୍ତାର ପରିଚୟ ମିଳେ । ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବାକୁ ତାଙ୍କୁ ଯେତେବେଳେ ଅନୁରୋଧ କରାଗଲା, ଜଣେ ମହାରାଜା କିପରି

ମନ୍ତ୍ରୀ ହେବେ ବୋଲି ଉକ୍ତ ପ୍ରସ୍ତାବକୁ ସେ ହସି ଉଡ଼ାଇ ଦେଇଥିଲେ । ମାତ୍ର କେତେକ ବର୍ଷ ପାଇଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର Pro-Chancellor ଥିଲେ ।

ପର୍ଲାଖେମୁଣ୍ଡି, ଖରସୁଆଁ, ଫୁଲଝର, ଡ଼ଙ୍ଗୁମା ଓ ମେଦିନୀପୁର ଭଳି ଅନେକ ଓଡ଼ିଆ-ଭାଷୀ ଅଞ୍ଚଳ ଆଜି ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ ପଶ୍ଚିମବଙ୍ଗ ସହିତ ସାମିଲ ହୋଇଯାଇଛି । ରାଜନୈତିକ ସ୍ୱାର୍ଥବାଜିରେ ସେହି ସବୁ ଅଞ୍ଚଳର ଓଡ଼ିଆ ଭାଇମାନେ ଓଡ଼ିଆତ୍ୱକୁ ବିସର୍ଜନ ଦେଇ ବହୁ ମାନସିକ ଯନ୍ତ୍ରଣାର ଶିକାର ହୋଇଛନ୍ତି । ଶିକ୍ଷା, ଦୀକ୍ଷା, ଭାଷା, ଆଚାର, ବିଚାର, ଚଳଣି ତଥା ରୀତିନୀତି ଯେପରିଭାବେ ଶ୍ରୀହୀନ ଓ ପଦଭ୍ରଷ୍ଟ ହୋଇଛି; ସେ ସବୁ ଅଞ୍ଚଳକୁ ଓଡ଼ିଶାକୁ ଫେରାଇ ଆଣିବା ଲାଗି ଯେପରି ନିଷ୍ପ୍ରାଣ ଉଦ୍ୟମ କରାଯାଇଛି; ତାର ତର୍ଜମା କରି ବସିଲେ କେବଳ ଦୁଃଖ ହିଁ ସାର ହେବ ! ଉତ୍କଳୀୟ ପ୍ରାଣର ଉଦ୍‌ବେଗ ଓ ଆଲୋଡ଼ନ ଏକ ଅଖୋଜା, ଅଲୋଡ଼ା, ଅସହାୟ ଶିଶୁର ଆକୁଳ ଆର୍ତ୍ତନାଦ ଭଳି "ଉତ୍କଳ ସମ୍ମିଳନୀ" କକ୍ଷରେ ଅନୁରଣିତ ହେବା ବ୍ୟତୀତ ଅନ୍ୟଗତି ଥିଲାପରି ଲାଗୁନାହିଁ ! ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ (ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି), ବାରିଷ୍ଟର ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଗୌରୀଶଙ୍କର ରାୟ, ଗୋଦାବରୀଶ ମିଶ୍ର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀର ମୋହନ, ବ୍ରଜସୁନ୍ଦର ଦାସଙ୍କ ପରେ ଓଡ଼ିଶାରେ ଆଉ କ'ଣ କେହି ନେତା ନାହାନ୍ତି ? କବି ଗୋଦାବରୀଶ ମହାପାତ୍ରଙ୍କ କାଳଜୟୀ କବିତା, "ଉଠ କଙ୍କାଳ"ର ଡାକ କ'ଣ କାଳେ କାଳେ ସେଇ ଡାକରେ ହିଁ ରହିଯିବ ? ହାୟ୍, କେତେ ଝୋଲ ଯାଇଛି ଭାଙ୍ଗି, କେତେ ଫୁଲ ଯାଇଛି ଝରି, କେତେ ବଂଶୀ ହୋଇଛି ସ୍ତବ୍ଧ, ସୁର ଯାଇଛି ହଜି—ସବୁ କ'ଣ କେବଳ ବ୍ୟର୍ଥତାର ହାହାକାର ?...

ଆମ ପଡ଼ୋଶୀ ରାଜ୍ୟ ସମୂହ ତଥା ଭାରତବର୍ଷର ମସ୍‌ନଦ କେବେହେଲେ ଆମ ପ୍ରତି ସହାନୁଭୂତି ଦେଖାଇନାହାନ୍ତି, ଜଣାଇନାହାନ୍ତି ସମବେଦନା ! ବରଂ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ହୀନମର୍ଯ୍ୟ ପ୍ରତିପାଦିତ କରିବା ଲାଗି ସ୍ୱେଚ୍ଛାକୃତ ପ୍ରଚେଷ୍ଟା କରାଯାଇଛି; କରାଯାଇଛି ହୀନ ଷଡ଼ଯନ୍ତ୍ର ! "ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି ବଙ୍ଗୀୟ ବୁଦ୍ଧିଜୀବୀମାନେ ଅବିରତ କଣ୍ଠରେ ପ୍ରଚାର କରିଛନ୍ତି । ବିଖ୍ୟାତ ବଙ୍ଗୀୟ ଲେଖକକୁଳ ତାଙ୍କ ଲେଖାରେ ଯେଉଁଠି କୁଲି, ମଜୁରିଆ ବା ପୂଝାରୀ (ଠାକୁର) ଚରିତ୍ର ଆଣିବାକୁ ପଡ଼େ, ସେମାନେ ନିର୍ବାଚିତ କରନ୍ତି ଓଡ଼ିଆଙ୍କୁ । ମନେହୁଏ ସେମାନେ ଯେପରି ଓଡ଼ିଶା ମାଟିରେ କେବେ କୌଣସି ବୈଜ୍ଞାନିକ, ଇଞ୍ଜିନିୟର୍, ଡାକ୍ତର, ଆଡ଼ଭୋକେଟ, ଅଧ୍ୟାପକ ବା ସେହି

ସ୍ତରର ବ୍ୟକ୍ତିଙ୍କ ସନ୍ଧାନ ପାଇନାହାନ୍ତି ! କି ଭାଗ୍ୟ ! ବଣ ଜଙ୍ଗଲର ଅଧିବାସୀ ରୂପେ ଓଡ଼ିଆର ପରିଚୟ; ଏହାର ସାଧକ, କବି, ନାଟ୍ୟକାର, ସଙ୍ଗୀତଜ୍ଞ, ଶିଳ୍ପୀ—ସମସ୍ତେ ଯେପରି କେବେ ନ ଥିଲେ, ଆଜି ବି ନାହାନ୍ତି ! ଜାତୀୟ ସଙ୍ଗୀତ, ଲୋକଶିକ୍ଷା ପ୍ରଭୃତି ଦୂରଦର୍ଶନ ପ୍ରୋଗ୍ରାମରେ ମଧ୍ୟ ଓଡ଼ିଶା ସମ୍ପୂର୍ଣ୍ଣ ଭାବେ ଅବହେଳିତ, ଉପେକ୍ଷିତ ! ଯଦି କଦବା କେଉଁଠି ଓଡ଼ିଆର ଚଳୋଚ୍ଚିତ୍ରଣ କରାଯାଇଛି, ତା' ହୋଇଛି ଶବର ବେଶରେ ନଚେତ୍ ଦୁଃସ୍ଥ, ଅସ୍ଥିକଙ୍କାଳସାର ମଜୁରିଆ ରୂପରେ । ଜାତୀୟ ସଙ୍ଗୀତର ଏ ଯେଉଁ ନଗ୍ନ-ପରିପ୍ରକାଶ, ମର୍ମନ୍ତୁଦ ଉପହାସ, କେଉଁ ସଭ୍ୟ ଜାତି ଏହାକୁ ବରଦାସ୍ତ କରିବ ? ନାଗାଲାଣ୍ଡ, ଅରୁଣାଚଳ ପ୍ରଦେଶ, ମିଜୋରାମ, ହିମାଚଳ ପ୍ରଦେଶ, ଆସାମ, ମଣିପୁର ଆଦି ରାଜ୍ୟମାନଙ୍କ ତୁଳନାରେ ଓଡ଼ିଶା କ'ଣ ଏକାନ୍ତ ଦୀନହୀନ ? ହେ ଜଗନ୍ନାଥ ! ଏ ଜାତିକୁ ତୁମେ ହିଁ ରକ୍ଷା କର ପ୍ରଭୁ !

ବ୍ୟାସକବି ଫକୀର ମୋହନ, ସ୍ୱଭାବ-କବି ଗଙ୍ଗାଧର, ଭକ୍ତକବି ମଧୁସୂଦନ ରାଓ ଯଦି ଓଡ଼ିଶାରେ ଜନ୍ମଗ୍ରହଣ କରି ନ ଥାନ୍ତେ, ପାଠ୍ୟ-ପୁସ୍ତକ ରଚନା ସହିତ ଅନ୍ୟାନ୍ୟ ସାହିତ୍ୟ ଯଦି ରଚିତ ହୋଇ ନ ଥାନ୍ତା, କବି ମେହେର ଯଦି "ଉଚ୍ଚ ହେବା ପାଇଁ କର ଯେବେ ଆଶା, ଉଚ୍ଚ କର ଆଗେ ନିଜ ମାତୃଭାଷା" ସ୍ଲୋଗାନ୍ ଦେଇ ଏ ଜାତିକୁ ଜାଗ୍ରତ ତଥା ଉଦ୍‌ବୁଦ୍ଧ କରି ନଥାନ୍ତେ, ତାହାହେଲେ ଓଡ଼ିଆ ଭାଷାର ସତ୍ତା ଲୋପ ହୋଇ ଯାଇଥାନ୍ତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାଷାର ଯାଦୁକର କବି-ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଆଜି "ଗାଁ କନିଆ, ଫିଂଘାଣି ନାକ" । ତାଙ୍କୁ ରାଜ୍ୟ ବାହାରେ ଚହ୍ଲାଇବା ପାଇଁ କୌଣସି ସରକାରୀ କିମ୍ବା ବେସରକାରୀ ଉଦ୍ୟମ କରାଯାଇ ନାହିଁ, "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ" (ଗୋପାଳ ଚନ୍ଦ୍ର ପ୍ରହରାଜକୃତ) ଭଳି ବିରାଟ ଏନ୍‌ସାଇକ୍ଲୋପିଡ଼ିଆ ଆଜି ଲୁପ୍ତ ପ୍ରାୟ । ଅନ୍ୟ ରାଜ୍ୟ ବା ଅନ୍ୟ ଦେଶ ହୋଇଥିଲେ ବିଶ୍ୱ ଦରବାରରେ ଯେଉଁ ଖ୍ୟାତି ବା ପ୍ରତିଷ୍ଠା ଆମ କବି-କଥାକାରମାନେ ଲଭି କରିଥାନ୍ତେ, ଦୁଃସ୍ଥ ଓଡ଼ିଆ ଭାଗ୍ୟରେ ସେ ଯଶଲାଭ ଆକାଶ-କୁସୁମ ମାତ୍ର ! କାଦୁଅ ଫିଙ୍ଗା, ଡାଲକୁ ଗୋଡ଼ ଟଣା ବୋଲି ଯେଉଁ କଥାସବୁ କୁହାଯାଏ, ତାହା କ'ଣ ସତରେ ଓଡ଼ିଆର ଜାତୀୟ ଚରିତ୍ର ?...

ପ୍ରଥମ ଶ୍ରେଣୀରେ ମୋର ବିଦ୍ୟାରମ୍ଭ ହେଲା ବାରିପଦା ମିଶନ୍ ସ୍କୁଲରେ । ତାହା ମୁଖ୍ୟତଃ ଖ୍ରୀଷ୍ଟିଆନ୍ ମିଶନାରୀମାନଙ୍କଦ୍ୱାରା ପରିଚାଳିତ ହେଉଥିଲା । ସେତେବେଳେ ଆମେ ଯେଉଁ ଭଡ଼ାଘରେ ରହୁଥିଲୁ ସେଠୁ ସ୍କୁଲ୍ ଖୁବ୍ ନିକଟ । ଯିବା ଆସିବାରେ କୌଣସି ଅସୁବିଧା ହୁଏ ନାହିଁ । ମୋ ଯିବା ଓ ଫେରିବା ବାଟକୁ ଦୋଉ ଚାହିଁ ବସିଥାଏ । ଖେଳଛୁଟିରେ ମୁଁ ବରାବର ମୋ ଅଜାଙ୍କ

ପାଖକୁ ଯାଏ । ତାଙ୍କ ଅଫିସ ଓ ମିଶନ୍ ସ୍କୁଲ ମଝିରେ କେବଳ ଗୋଟିଏ ରାସ୍ତା । ଅଜା ଦେଓ୍ବାନଙ୍କ ଅଫିସରେ ହେଡ଼କ୍ଲର୍କ ଭାବେ କାର୍ଯ୍ୟ କରୁଥିଲେ । ତାଙ୍କ ସାନଭାଇ ୰ ଗୋବର୍ଦ୍ଧନ ଚନ୍ଦ୍ର ଦାସ (ବୋଉର ନନ ଦାଦା) ବାଲ୍‌ଡ଼ହାର ସର୍ଦ୍ଦାର ଥିଲେ । ମୟୂରଭଞ୍ଜକୁ ବ୍ରିଟିଶ ଭାରତରେ ବିଭକ୍ତ କରି ମହାରାଜା ବ୍ରିଟିଶ ସର୍ଦ୍ଦାରଙ୍କୁ ନିଯୁକ୍ତ କରିଥିଲେ । ନନ ନନର ଇଲାକାରେ ସର୍ଦ୍ଦାରମାନଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା । ସେମାନେ ଖଜଣା ଆଦାୟ କରି ପ୍ରତିବର୍ଷ ଷ୍ଟେଟ୍-ଟ୍ରେଜେରୀରେ ଦାଖଲ କରୁଥିଲେ ଏବଂ ମହାରାଜାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଯୋଗ ଦେଉଥିଲେ । ବାଲ୍‌ଡ଼ହାର ସର୍ଦ୍ଦାରୀ ଯେତେବେଳେ ମୋ ଅଜା ୰ କୃଷ୍ଣଚନ୍ଦ୍ର ଦାସଙ୍କୁ ଦିଆଗଲା, ସେ ତାଙ୍କ ସାନଭାଇ ଗୋବର୍ଦ୍ଧନଙ୍କୁ ସର୍ଦ୍ଦାରୀ ଦେବାପାଇଁ ମହାରାଜାଙ୍କୁ ଅନୁରୋଧ କରିଥିଲେ । କାର୍ଯ୍ୟତଃ ତାହା ହିଁ ହୋଇଥିଲା । ମୋଟ ଉପରେ ମୋ ମାମୁଁ ଘରର ଧନ, ସମ୍ପଦ ଓ ପ୍ରତିପତ୍ତି ଯଥେଷ୍ଟ ଥିଲା ।

ଦେଓ୍ବାନ ଅଫିସ୍‌ର ହେଡ଼କ୍ଲର୍କ ଆଉ ମୋ ଅଜା ୰ କୃଷ୍ଣଚନ୍ଦ୍ର ଦାସ ସମସ୍ତଙ୍କର ପ୍ରିୟପାତ୍ର ଥିଲେ । ତାଙ୍କର ଉଦାର, ମଧୁର ସ୍ୱଭାବ ଓ ଦେବୋପମ ଚରିତ୍ର ଥିଲା ଲୋକପ୍ରିୟତାର ପ୍ରଧାନ କାରଣ । ମୋ ପାଠପଢ଼ା ଆରମ୍ଭର କିଛି ଦିନ ପରେ ସେ ଦିନେ ତାଙ୍କ ଅଫିସ ପିଅନ ଗୋଲୋକକୁ ଆମ ସ୍କୁଲକୁ ପଠାଇ ଖେଳ ଛୁଟିରେ ମତେ ତାଙ୍କ ଅଫିସକୁ ନେଇଗଲେ । ବାସ୍, ସେଠାରେ ପହଞ୍ଚିବା ମାତ୍ରେ ମୋ ଦୁଷ୍ଟାମି ବାହାରିଲା । ମୁଁ ତାଙ୍କ ଟେବୁଲ୍ ଉପରେ ଚଢ଼ି ଫାଇଲପତ୍ର ଘାଣ୍ଟିବା ସଙ୍ଗେ ସଙ୍ଗେ ତାଙ୍କ କୋଳରେ ବସି ତାଙ୍କ ବାଘୁଆ ନିଶକୁ ଟାଣିବାରେ ଲଗିଲି । ବ୍ୟତିବ୍ୟସ୍ତ ହୋଇ ସେ ଗୋଲୋକକୁ ଡାକିଲେ ଓ ମୋତେ ସେଠୁ ନେଇ ପାଖ ଜଳଖିଆ ଦୋକାନରେ ଖୁଆଇ ସ୍କୁଲରେ ଛାଡ଼ି ଆସିବାକୁ କହିଲେ । "ଛୁଆବାବୁ, ମିଠା ଖାଇବ ଆସ" କହି ଗୋଲୋକ ମତେ ସେଠୁ ଭୁଲାଇ ନେଇଆସିଲା । ନ ହେଲେ ସେଦିନ ଅଜାଙ୍କ ଦଫା ରଫା କରିଥାନ୍ତି । କଚେରୀ ହତା ଭିତରେ ନିଶୁଆ, ପେଟୁଆ ଲୋକଟିଏ ଦୋକାନ କରିଥାଏ । ଜଲପି, ଲଡ଼ୁ, କାକରା, ପୁରି, ତରକାରୀ ଓ ପକୋଡ଼ି ବିକ୍ରୀ କରେ । ସେଠି ପେଟେ ଜଳଖିଆ ଖାଇ ଘଣ୍ଟା ବାଜିଲାବେଳକୁ ମୁଁ ଯାଇ ସ୍କୁଲରେ ହାଜର୍ ।

ସେହିଦିନଠାରୁ ମତେ ଆଉ ଡକେଇ ପଠେଇବା ଦରକାର ପଡ଼ିନାହିଁ ! ଖେଳଛୁଟି ଘଣ୍ଟା ବାଜିଲା ମାତ୍ରେ ମୁଁ ଯାଇ ଅଜାଙ୍କ ଶିରସ୍ତାରେ ଉପସ୍ଥିତ ହୁଏ । ତା'ପରେ ଆରମ୍ଭ ହୁଏ ଦୌରାତ୍ମ୍ୟ । ଦପ୍ତରରେ ଯିଏ ଯେତେ ଆଆନ୍ତୁ ପଛକେ, ସେମାନଙ୍କ ଆଡ଼କୁ ଦୃଷ୍ଟିପାତ ନ କରି ମୁଁ ସିଧା ସିଧା ଅଜାଙ୍କ ଟେବୁଲ ଉପରକୁ ଚଢ଼ିଯାଏ ଓ ବେଳେ ବେଳେ ତାଙ୍କ କାନ୍ଧରେ ଦୁଇଗୋଡ଼ ଝୁଲାଇ

ବସିଯାଏ । କୃଷ୍ଣବାବୁଙ୍କ ଝିଅର ପୁଅ ବୋଲି ଜାଣିବା ଲୋକେ କିଛି ନ କହି ଦାନ୍ତ ଚପି ହସନ୍ତି; ଅନ୍ୟମାନେ ଆବ୍‌ବାକାବା ହୋଇ ଏ ଦୃଶ୍ୟ ଦେଖନ୍ତି । ଏହିପରି ଭାବରେ ଦିନକୁଦିନ ଉତ୍ପାତ କ୍ରମଶଃ ବଢ଼ିବାରୁ ଅଜା ମୋତେ କୃତ୍ରିମ ରାଗ ଦେଖାଇ କହିଲେ, "ଏ ଟୋକା, ତୁ ଆଉ ମୋଟେ ଏଠିକି ଆସିବୁନି । ଆସିଲେ ତତେ ପୁଲିସ୍‌ବାଲାଙ୍କୁ ଧରେଇଦେବି ।" ପୁଲିସ୍ ଫୁଲିସ୍‌ଙ୍କ ପ୍ରଭାବ ମୋ ଉପରେ କିଛି ନ ପଡ଼ିବାର ଦେଖି ଗେଲ କରି କହିଲେ, "ଆରେ ବାପା, ତୁ ଇମିତି ହେଲେ ମୋ ସ୍କୁଲରେ ରହିବୁନି । ମତେ ପୁଲିସବାଲା ନେଇ ଜେଲରେ ପୁରେଇଦେବେ ! ମୋ କଥା ମାନ୍ । ତୁ ସବୁଦିନେ ଆସି ଏଇ ଗୋଲୋକ ପାଖରେ ପହଞ୍ଚିବୁ । ମୁଁ ତାକୁ କହିଦଉଚି, ସେ ତତେ ନେଇ ଜଲଖିଆ ଖୁଆଇବ ଆଉ ତମ ସ୍କୁଲରେ ଛାଡ଼ିଦେଇ ଆସିବ ।" କେଜାଣି କାହିଁକି, ଏ କଥାରେ ଅଜାଙ୍କ ଉପରେ ମୋର ଭାରି ଦୟା ହେଲା । ଛୋଟପିଲା ହେଲେ ବି ତାଙ୍କ କଥା ମୋ ମନକୁ ବେଶ୍ ପାଇଲା । ପାଚିଲା କଦଳୀ ଆଉ କଞ୍ଚା ପରିବା ଲୋଭରେ ମାଙ୍କଡ଼ ମଥାନ ଉପରୁ କର୍ଫୁଲିଆ ମଣିଷ ଛୁଆଟିକୁ ଅଗଣାରେ ଶୁଆଇ ଦେଇ ଫଳମୂଳ ନେଇ ଛାଡ଼ି ପଳାଇଲାପରି ସେହିଦିନଠାରୁ ଅଜାଙ୍କ ପାଖକୁ ଯିବା ଅଭ୍ୟାସ ମୋର ଛାଡ଼ିଗଲା । ଗୋଲୋକ ଓ ସେଇ ନିଶୁଆ ପେଟୁଆ ଜଲଖିଆ ଦୋକାନ ସହିତ ମୋର ନିରବଚ୍ଛିନ୍ନ ଘନିଷ୍ଠତା ନିବିଡ଼ତର ହୋଇଗଲା । ମୁଁ ଖୁସି, ମୋ ଦାଉରୁ ରକ୍ଷା ପାଇ ଅଜା ବି ବହୁତ ଖୁସି । ମିଶନ୍ ସ୍କୁଲରୁ ପାଶ୍ କରି ବାରିପଦା ହାଇସ୍କୁଲକୁ ଆସିବା ପର୍ଯ୍ୟନ୍ତ ମୋର ଏଇ ଜଲଖିଆ ଖାଇବା ଅଭ୍ୟାସରେ ଥରେ ମାତ୍ର ବ୍ୟତିକ୍ରମ ଘଟି ନ ଥିଲା । ପିଲା ବୟସରେ ପାଠପଢ଼ା କିମ୍ବା ଅନ୍ୟ ବିଷୟ ମନେ ନ ପଡ଼ୁ ପଛକେ, ପାଟିସୁଆଦ କଥାଟା ଯେ ନିଶ୍ଚିତ ଭାବେ ମନେରହିବ—ଏଥିରେ ସନ୍ଦେହର ଅବକାଶ ନାହିଁ । ମିଶନ ସ୍କୁଲର ଶିକ୍ଷକ, ଛାତ୍ରସାଥୀ, ପାଠ୍ୟପୁସ୍ତକ—ଏ ସମସ୍ତ ମାନସପଟରୁ ପୋଛି ହୋଇଯାଇଛି, ହେଲେ ଅଜା, ଗୋଲୋକ ଆଉ ସେ ନିଶୁଆ, ପେଟୁଆ ଜଲଖିଆ ଦୋକାନ କଥା ମୋ ମନର କଳାପଟା (Black board)ରେ ଏବେ ବି ଲେଖା ହୋଇ ରହିଛି !

---

—ଦୁଇ—

ଆଜି ଯାହାକୁ M.K.C. (ମହାରାଜା କୃଷ୍ଣଚନ୍ଦ୍ର) ହାଇସ୍କୁଲ ବୋଲି କୁହାଯାଉଛି, ମୋ ପଢ଼ିଲାବେଳେ ସେ ଥିଲା ବାରିପଦା ହାଇସ୍କୁଲ । ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରି ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ବିଧିବଦ୍ଧ ଭାବରେ ପାଠପଢ଼ା ହେଉଥିଲା । ପିଲାମାନେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକୁଲେସନ୍ ପରୀକ୍ଷା ଦେଉଥିଲେ । ବାରିପଦା ହାଇସ୍କୁଲ ଥିଲା ଓଡ଼ିଶାର ସର୍ବବୃହତ୍ତ ଓ ସର୍ବୋତ୍ତମ ହାଇସ୍କୁଲ । ସ୍କୁଲରେ ଆଠଶହରୁ ଊର୍ଦ୍ଧ୍ୱ ଛାତ୍ର ଅଧ୍ୟୟନ କରୁଥିଲେ । ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ଦୁଇଟି (A ଓ B) ଲେଖାଏଁ ସେକସନ୍ ଥିଲା । (କୌଣସି ଛାତ୍ରୀ ନ ଥିଲେ) । ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟାଳୟ ଓ ଶିକ୍ଷକମାନଙ୍କ କମନ୍ ରୁମ୍ ପାଖ ଦେଇ ଏକ ବିରାଟ ସିଡ଼ି ଦୋତାଲାକୁ ଯାଇଥିଲା । ସେଠାରେ ଥିଲା ଏକ ପ୍ରକାଣ୍ଡ ହଲ୍ ଯେଉଁଠି ପାଞ୍ଚଶହରୁ ଊର୍ଦ୍ଧ୍ୱ ଛାତ୍ର ଅକ୍ଲେଶରେ ବସି ପାରିବେ । ସେହି ହଲ୍‌ରେ ଗଣେଶ ପୂଜା, ସରସ୍ୱତୀ ପୂଜା ହେବା ସହିତ ସାଂସ୍କୃତିକ ଉତ୍ସବମାନ ଅନୁଷ୍ଠିତ ହେଉଥିଲା ।

ମୂଳ ବିଲ୍ଡିଂର ଦୁଇପାଖରେ ଧାଡ଼ିହୋଇ ପକ୍‌କା ଘର ସବୁ ଥିଲା ପାଠ ପଢ଼ାପାଇଁ । ପ୍ରତ୍ୟେକ ରୁମ୍‌ରେ ବିଜୁଳି ଲାଇଟ୍ ଓ ପଙ୍ଖାର ବ୍ୟବସ୍ଥା ଥିଲା । ଚଉକି, ଟେବୁଲ୍, ଡେସ୍କ୍, ବ୍ଲାକ୍‌ବୋର୍ଡ଼ ପ୍ରଭୃତି କୌଣସି ଆସବାବପତ୍ରର ଅଭାବ ନ ଥିଲା । ହାଇସ୍କୁଲର ବିରାଟ ହତା ମଧ୍ୟରେ ଦୁଇଟି ଖେଳପଡ଼ିଆ, ବ୍ୟାଡ୍‌ମିଣ୍ଟନ୍ କୋର୍ଟ୍, କୁସ୍ତି ପାଇଁ ଫଳ୍‌କା, ଦୋଳି, ହୋରିଜେଣ୍ଟାଲ ବାର୍, ରିଂଗ ଓ ଜିମ୍‌ନାସିୟମ୍ ପାଇଁ ସ୍ୱତନ୍ତ୍ର ସ୍ଥାନ ଥିଲା । ଆଉ ଥିଲା ଏକ ବଡ଼ ଉଦ୍ୟାନ, ଯେଉଁଠି ପିଲାମାନେ ଉଦ୍ୟାନକର୍ମ ଶିକ୍ଷା କରୁଥିଲେ । ଆମ୍ବ, ସପେଟା, ଜାମୁ, ଲିଚୁ, ପିଜୁଳି ପ୍ରଭୃତି ନାନା ଫଳ ବୃକ୍ଷ ଓ ଅନନ୍ତ ନାଗେଶ୍ୱର, ହେନା, ମଧୁମାଳତୀ, ମୁଚୁକୁନ୍ଦ, ଚମ୍ପା, କୁରୁଅନା, ଗୋଡ଼ିବାଣ ପ୍ରଭୃତି ଫୁଲଗଛମାନ ଋତୁ ଅନୁସାରେ ସ୍ଥାନର ଶୋଭାବର୍ଦ୍ଧନ କରୁଥିଲେ । ସ୍କୁଲର ଦୁଇଟି ହଷ୍ଟେଲ୍—ଫ୍ରେଜର୍ ହଷ୍ଟେଲ ଓ ନିଉହଷ୍ଟେଲ । ଦୂରଦୂରାନ୍ତ ମୋଫସଲ ଅଞ୍ଚଳରୁ ଆସୁଥିବା ଛାତ୍ରମାନେ ସେଠାରେ ରହୁଥିଲେ । ଭଲିବଲ୍ ଓ ବ୍ୟାଡ୍‌ମିଣ୍ଟନ୍ ଖେଳପଡ଼ିଆର ଅନତିଦୂରରେ ଥିଲା ଏକ ଅର୍ଫାନେଜ୍ । ଦୁଃସ୍ଥ ଓ ଅନାଥ ଛାତ୍ରମାନେ ସେଠାରେ ରହି ବିନା ଖର୍ଚ୍ଚରେ ଖାଇବା ପିଇବା ସହ ସ୍କୁଲରେ ପାଠ ପଢ଼ୁଥିଲେ । ଦୁଇ ହଷ୍ଟେଲ ମଝିରେ ଫୁଟବଲ୍ ପଡ଼ିଆ । ହକି, କ୍ରିକେଟ୍ ମଧ୍ୟ ଖେଳାହୁଏ । ଖେଳପଡ଼ିଆର ଉତ୍ତର ପାର୍ଶ୍ୱରେ

କୃଷ୍ଣଚୂଡ଼ା ଓ ମୁଚକୁନ୍ଦ ବୃକ୍ଷରାଜି । ଦକ୍ଷିଣ ପାର୍ଶ୍ୱରେ ଫ୍ରେଜର ହଷ୍ଟେଲ ପାଖ ଗୋଟିଏ ବୁଢ଼ା ଗଛରେ ପିଲାମାନେ ଡାଳମାଙ୍କୁଡ଼ି ଖେଳନ୍ତି । ବାଘୁଡ଼ି (କବାଡ଼ି), କୋହ୍ଲୁକ୍ରେଷ୍ଟା ଓ ଡାଣ୍ଡିଆ ଖେଳ ମଧ୍ୟ ଏଇ ପଡ଼ିଆରେ ହୁଏ । ସ୍କୁଲର ନିୟମ ଅନୁସାରେ ଛାତ୍ରମାନଙ୍କୁ ନିୟମିତ ଡ୍ରିଲ୍ କରିବା ଓ କୌଣସି ନା କୌଣସି କ୍ରୀଡ଼ା କସରତରେ ଯୋଗ ଦେବାକୁ ପଡ଼େ । ଅବଶ୍ୟ ତଳ ଶ୍ରେଣୀର ପିଲାମାନଙ୍କ ପାଇଁ କୌଣସି ବାଧ୍ୟ ବାଧକତା ନ ଥାଏ ।

ପାଠପଢ଼ା ସହିତ ଖେଳ କୁଦ, କୁସ୍ତି-କସରତ ଓ ସାଂସ୍କୃତିକ କାର୍ଯ୍ୟକ୍ରମ-ମାନଙ୍କରେ ଆମ ସ୍କୁଲର ଯଥେଷ୍ଟ ସୁନାମ ଥିଲା । ୧୯୩୯ ମସିହାରେ ଆମେ ୫୬ ଜଣ ଛାତ୍ର ବାଲେଶ୍ୱର ସେଣ୍ଟର୍‌ରେ ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇଥିଲୁ । ପରୀକ୍ଷାରେ ଫଳ ଥିଲା ଶତକଡ଼ା ଶହେ ଭାଗ । ସାତଜଣ ପ୍ରଥମ ଶ୍ରେଣୀ, ଛତିଶଜଣ ଦ୍ୱିତୀୟ ଶ୍ରେଣୀ ଏବଂ ତେରଜଣ ତୃତୀୟ ଶ୍ରେଣୀରେ ପାଶ୍ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମୁଁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲି ଓ ଭୂଗୋଳରେ ଖରାପ କରିଥିବାରୁ ମାତ୍ର ଆଠନମ୍ବର ପାଇଁ ପ୍ରଥମ ଶ୍ରେଣୀ ପାଇବାରୁ ବଞ୍ଚିତ ହୋଇଥିଲି ।

ପରୀକ୍ଷାରେ ଭଲଫଳ ହେବା ମୂଳରେ ଶିକ୍ଷକମାନଙ୍କ ଅବଦାନ ଯେ ଯଥେଷ୍ଟ ଥିଲା, ଏହା ମୁକ୍ତକଣ୍ଠରେ ସ୍ୱୀକାର କରାଯାଇପାରେ । ମାତ୍ର ଶିକ୍ଷକ-ମାନଙ୍କ ସମ୍ବନ୍ଧରେ କିଛି ଲେଖିବା ପୂର୍ବରୁ ତା'ର ଉପକ୍ରମଣିକା ଗୋଟିଏ ଅଭିନବ ଉପାୟରେ କଲେ ବୋଧହୁଏ ସୁଖପାଠ୍ୟ ହେବ । ୧୯୩୬ ମସିହାର କଥା । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ବନ୍ୟାର ବ୍ୟାପକତା ଆମ ରାଜ୍ୟର ଆର୍ଥିକ ମେରୁଦଣ୍ଡକୁ ଦୋହଲାଇ ଦେଇଥାଏ । ବ୍ୟାପକ ଶସ୍ୟହାନି ସହିତ ଗାଁ ଗଣ୍ଡାର ଲୋକେ ଅକଥନୀୟ ଦୁର୍ଦ୍ଦଶାର ଶିକାର ହୋଇଥାନ୍ତି । ଗୁରୁଜୀମାନଙ୍କ ନେତୃତ୍ୱରେ ଆମେ ପିଲାଏ ସକାଳ ଓ ଅପରବେଳା ଘର ଘର ବୁଲି ଭିକ୍ଷା ସଂଗ୍ରହ କରୁଥାଉଁ । ଧାନ, ଚାଉଳ, ଲୁଗାପଟା, ଟଙ୍କା ପଇସା ଯିଏ ଯାହା ଦାନ କରୁଥିଲେ, ତାକୁ ସବୁ ଏକାଠି କରି ପଠାଯାଉଥିଲା କଟକର 'ସମାଜ' ଅଫିସ ବନ୍ୟା ସାହାଯ୍ୟ ପାଣ୍ଠିକୁ ।

"ଦେଶ ଲାଗି ଆଜ ତୁମର ଦୁଆରେ
ଭିକ୍ଷା ମାଗୁଅଛୁ ଆସି
ଲକ୍ଷ ଲକ୍ଷ ଭାଇ ଭଉଣୀ ଯେ ତୋର
ଯାଉଛନ୍ତି ଭେଳେ ଭାସି । (ଘୋଷା)

ସବୁ ନଦୀ ମିଶି ହେଲଣି ଚଲକା
କାହିଁ ଅଲକୂଳ, କାହିଁ ବା ନଉକା ?
ଗାଆଁ ଦାଣ୍ଡେ ଗର୍ଜି ଯାଉଛି ସୁଅ,
କେତେ ବାପ ମାଆ, କେତେ ଝିଅପୁଅ—
କାଛ ତଳେ ପଡ଼ି ସମାଧି ନେଲେଣି
ବେଗେ ରକ୍ଷା କର ଆସି ।" (ଘୋଷା)

ଅନେକ ପଦ ତ ଆଜି ମୋର ମନେ ନାହିଁ; ହେଲେ ଏଇ ଗୀତକୁ ଗାଇ ଗାଇ ଆଗରେ ଯାଉଥିଲି ମୁଁ ମୋ ପଛରେ ଧାଡ଼ି ହୋଇ ଶହଶହ ଛାତ୍ରସାଥୀ । ଏହା ଏକ ବିରାଟ ଶୋଭାଯାତ୍ରା ଭଳି ରାଜପଥରେ ଯାଉଥାଏ—ସକାଳ ଆଠଟାରେ ଆରମ୍ଭ, ସନ୍ଧ୍ୟା ପୂର୍ବରୁ ଶେଷ !

ଉପରଲିଖିତ ଏହି ଗୀତ (କୋରସ୍)ଟିକୁ ଲେଖିଥିଲେ ଆମ ଇଂରାଜୀ ଶିକ୍ଷକ ତଥା ଉତ୍କଳର ବରପୁତ୍ର, ଶିଶୁସାହିତ୍ୟ ବିଶାରଦ, "ଆହେ ଦୟାମୟ ବିଶ୍ୱବିହାରୀ, ଘେନ ଦୟାବହି ମୋର ଗୁହାରି"ର ଜନପ୍ରିୟ ରଚୟିତା, ସୁ-ସାହିତ୍ୟିକ ସ୍ୱର୍ଗତଃ ରାମକୃଷ୍ଣ ନନ୍ଦ ମହୋଦୟ ! ତାଙ୍କ ଇଂରାଜୀ ପଢ଼ାଇବାର ଶୈଳୀ ଏପରି ଉଚ୍ଚକୋଟୀର ଥିଲା ଯେ, କେହି କେବେ ଇଂରାଜୀରେ ଫେଲ୍ ହେବା ମୁଁ ଜାଣେନାହିଁ । ଇଂରାଜୀ ଓ ଓଡ଼ିଆ ଭାଷାରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । "ତୁଳସୀ ଦାସ", "କୃଷ୍ଣାକୁମାରୀ", "ଏତେ ପ୍ରଭେଦ" ଓ "ବିଶ୍ୱକୋଷ" ପ୍ରଭୃତି ରଚନା ତାଙ୍କର ଅଭିନବ ସୃଷ୍ଟି ! "କୃଷ୍ଣାକୁମାରୀ" ନାଟକରେ ସେ ଯେଉଁ "ନିରାଶ ଜନର ଆଶା ହେ ତୁମେ, ବିଣା ବାନ୍ଧବର ସାଥୀ; ତୁମର ଇଙ୍ଗିତେ ଜଳସ୍ଥଳ ହସେ ତୁମ ବୀଣା ବାଜେ ଦିବାରାତି" ଗୀତ ଲେଖିଥିଲେ ତାର ସ୍ୱର ଏବେବି ମୋର ମନେଅଛି । ସେ ଥିଲେ ଜଣେ ସୁଯୋଗ୍ୟ, ଛାତ୍ରବତ୍ସଳ, ଅସାଧାରଣ ବ୍ୟକ୍ତିତ୍ୱର ଶିକ୍ଷକ ଓ ଜଣେ ସ୍ୱାଧୀନଚେତା ସ୍ୱାଧୀନତା-ସଂଗ୍ରାମୀ ! ତାଙ୍କ ବିରାଟ ପ୍ରତିଭାର କଳନା କରିବା ମୋ ପକ୍ଷରେ ଚରମ ଧୃଷ୍ଟତା ମାତ୍ର ।

ଥରେ ମହାରାଜା ପ୍ରତାପ ଚନ୍ଦ୍ର ତାଙ୍କୁ ରାଜବାଟୀକୁ ଡକାଇ ତାଙ୍କର ଦୁଇ ରାଜକୁମାର (ପ୍ରଦୀପ ଚନ୍ଦ୍ର ଓ ସ୍ୱରୂପ ଚନ୍ଦ୍ର)ଙ୍କୁ ଇଂରାଜୀ ଶିକ୍ଷା ଦେବା ନିମନ୍ତେ ଅନୁରୋଧ କରିଥିଲେ; ମାତ୍ର ରାଜାଙ୍କ ତଥା ମାସିକ ଦୁଇଶତ ମୁଦ୍ରାର ପ୍ରଲୋଭନକୁ ଏଡ଼ିଦେଇ ସେ ବିନୀତ କଣ୍ଠରେ ଉତ୍ତର ଦେଇଥିଲେ, "ଇଚ୍ଛାକଲେ ମହାରାଜ ମୋତେ ସ୍କୁଲରୁ ବାହାର କରିଦେଇ ପାରନ୍ତି; କିନ୍ତୁ ଆପଣାର ବିବେକକୁ ତଥା ଶହ ଶହ ସ୍କୁଲ୍‌ଛାତ୍ରଙ୍କ ସ୍ୱାର୍ଥକୁ ବଳି ଦେଇ ଟିଉସନ କରିପାରିବିନାହିଁ । ମତେ କ୍ଷମା ଦେବେ ।" ସେଦିନ ଆଉ ଆଜି ଭିତରେ କେତେ ତଫାତ୍ ସତେ ! ଆଜିର ଶିକ୍ଷକ

ଟିଉସନ୍‌କୁ ମୂଳ ବେଉସା କରି ସ୍କୁଲଛାତ୍ରଙ୍କୁ ଉପେକ୍ଷା କରୁଛ, ନାମକୁ ମାତ୍ର ସ୍କୁଲରେ ହାଜିରା ଦେଇ ଦରମା ଆଣୁଛ, ମାନେ ବହି ଲେଖି ଅଧିକ ଉପାର୍ଜନ କରୁଛ ଏବଂ ଆବଶ୍ୟକ ସ୍ଥଳେ ରାଜନୀତି କରି, ଉପରସ୍ଥ ହାକିମଙ୍କୁ ସନ୍ତୁଷ୍ଟ କରି ଜୀବିକା ନିର୍ବାହ କରୁଛ ! କି ଅଧୋଗତି ।

ଏକଦା ସତ୍ୟବାଦୀ ବନ-ବିଦ୍ୟାଳୟକୁ "ମଣିଷ ତିଆରି କାରଖାନା" ବୋଲି କୁହାଯାଉଥିଲା । ସେଠାରେ ଅଧ୍ୟୟନ କରୁଥିବା ଛାତ୍ର ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟାନ୍ୟ ମୌଳିକ ଶିକ୍ଷା (Basic Education) ମଧ୍ୟ ଲାଭ କରୁଥିଲେ । ମାତ୍ର ବ୍ରିଟିଶ ଅମଳରେ ସ୍କୁଲ କଲେଜ ପ୍ରତିଷ୍ଠା କରାଯାଇ ଯେଉଁ ଶିକ୍ଷା ଦିଆଯାଉଥିଲା, ମୁଖ୍ୟତଃ ତାହା ନୌକରସାହି "କିରାନି କୁଳ" ସୃଷ୍ଟି କରିବା ଲାଗି ଅଭିପ୍ରେତ ଥିଲା ବୋଲି କୁହାଯାଉଥିଲା । କିନ୍ତୁ ଏବେ ଆମ ଦେଶରେ ଯେଉଁ ଶିକ୍ଷା ବ୍ୟବସ୍ଥା ହୋଇଛି, ତାହା ସାଧାରଣ ଛାତ୍ର (ଅତି ମେଧାବୀ ଛାତ୍ରଙ୍କ କଥା ସ୍ୱତନ୍ତ୍ର)ଙ୍କ ପକ୍ଷରେ କେବଳ ଖଣ୍ଡିଏ ଖଣ୍ଡିଏ ସାର୍ଟିଫିକେଟ ହାସଲ କରିବା ବ୍ୟତୀତ ଅନ୍ୟ ଉଦ୍ଦେଶ୍ୟ ଥିବାପରି ମନେହେଉନାହିଁ । ସେକେଣ୍ଡାରୀ ବୋର୍ଡ ସ୍ତରରେ ବର୍ତ୍ତମାନ ସ୍କୁଲ କଲେଜମାନଙ୍କରେ ପର୍ଯ୍ୟାପ୍ତ କପି କରିବାର ସୁଯୋଗ ଦେବା ସହିତ ପ୍ରଶ୍ନପତ୍ର ବିଭ୍ରାଟ, ପରୀକ୍ଷା ଖାତା ମୂଲ୍ୟାୟନରେ ବାଛବିଚାର ଏବଂ ଜାଲି ସାର୍ଟିଫିକେଟ ପ୍ରଦାନ ପ୍ରଭୃତି ନାନା ଦୁର୍ନୀତି ପରିବ୍ୟାପ୍ତ ! ମୁଣ୍ଡରେ ହାତ ଦେଇ ବସିବା ଛଡ଼ା ପ୍ରତିକାରର ଉପାୟ କିଛି ନାହିଁ । "ଖଜୁରୀ ଗଛର କି ଗୁଣ ଗାଇବି ମୂଳରୁ ପାହାଚ ପାହାଚ !"

ରାମକୃଷ୍ଣ ବାବୁଙ୍କ ନିର୍ଭୀକ ଉତ୍ତରରେ ମହାରାଜା ଅସନ୍ତୁଷ୍ଟ ହେଲେ ନାହିଁ; ବରଂ ତାଙ୍କର କର୍ତ୍ତବ୍ୟ ନିଷ୍ଠାଲାଗି ମନେ ମନେ ତାଙ୍କୁ ପ୍ରଶଂସା କଲେ । ତାଙ୍କର ସ୍ପଷ୍ଟବାଦୀତା, ଉଦାର ଦୃଷ୍ଟିଭଙ୍ଗୀ ତଥା ମହତ୍ ଆଦର୍ଶ ସମଗ୍ର ଛାତ୍ରସମାଜ ଓ ଅଭିଭାବକମାନଙ୍କୁ ସମ୍ମୋହିତ କରିଥିଲା । କେତେଥର ତାଙ୍କ ମୁହଁରୁ ଶୁଣିଛୁ, "ପିଲାଏ, ମୁଁ ଆଉ ଚାକିରି କରିବି ନାହିଁ । ବାରିପଦାରୁ ଯାଇ କଟକରେ ଗୋଟିଏ ପ୍ରେସ୍ କରିବି ।" ତାହାହିଁ ସେ କରିଥିଲେ । ଶିକ୍ଷକତା ଛାଡ଼ି କଟକରେ ତେଲେଙ୍ଗା ବଜାରରେ 'ଫସାର ପ୍ରେସ' ନାମକ ଗୋଟିଏ ଛାପାଖାନା କଲେ । "ଫସାର" ବୋଲି ଗୋଟିଏ ଶିଶୁ ଓ କିଶୋର ପତ୍ରିକାର ସେ ଥିଲେ ପ୍ରକାଶକ ଓ ସମ୍ପାଦକ । ଶିକ୍ଷା, ସ୍ୱାସ୍ଥ୍ୟ, ବିଜ୍ଞାନ ସମ୍ବନ୍ଧରେ ବହୁ ଜ୍ଞାତବ୍ୟ ବିଷୟ ସେ ପତ୍ରିକାରେ ପ୍ରକାଶ ପାଉଥିଲା । ନିର୍ଭୁଲ ଛପା ଓ ସୁନ୍ଦର ଗେଟ୍‌ଅପ୍ ଥିଲା 'ଫସାର'ର ବିଶେଷ ଆକର୍ଷଣ । ଉକ୍ତ ପତ୍ରିକା ସ୍କୁଲ ଓ କଲେଜ ଛାତ୍ରଙ୍କର ଅତି ପ୍ରିୟ ଥିଲା ।

ପରବର୍ତ୍ତୀ ସମୟରେ କଟକ ମୋର କର୍ମସ୍ଥଳୀ ହୋଇଥିବାରୁ ବେଳେ ବେଳେ ମୁଁ ତାଙ୍କ ବାସଭବନକୁ ଯାଇ ତାଙ୍କ ସାକ୍ଷାତ କରେ, ସାଷ୍ଟାଙ୍ଗ ପ୍ରଣାମ କରେ । ସେ ମୋତେ ଆଶୀର୍ବାଦ କରନ୍ତି । କହନ୍ତି, "ଭକ୍ତକିଶୋର, ତୁମେ ଆମର ଗର୍ବ !" ମୁଁ ବିନୀତ ଭାବରେ ଉତ୍ତର ଦିଏ, "ସାର୍, ମୋର କିଛିହିଁ କୃତି ବୋଲି କିଛି ନାହିଁ । ସବୁ ଆପଣଙ୍କ ଶୁଭାଶୀଷର ଫଳ !" ଗୋଟିଏ ଦିନର କଥା । କଟକର ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପରେ ମୋର ଏକ ସାମାଜିକ ନାଟକ "ଅଗ୍ନିପରୀକ୍ଷା" ଅଭିନୀତ ହେବାର ଥାଏ । ରଙ୍ଗମଞ୍ଚରେ ନାଟକର ଶୁଭ-ଉଦ୍‌ଘାଟନ କରିବା ପାଇଁ ମୁଖ୍ୟ ଅତିଥି ହେବାକୁ ମୁଁ ଯାଇ ତାଙ୍କୁ ନିମନ୍ତ୍ରଣ ଜଣାଇଲି । ମୋ ଅନୁରୋଧ ସେ ଟାଳି ପାରିଲେ ନାହିଁ । କିନ୍ତୁ ଗୋଟାଏ ସର୍ତ୍ତରେ ରାଜି ହେଲେ ଯିବାକୁ । କହିଲେ, "ଦେଖ ଭକ୍ତକିଶୋର ! ଯିବାକୁ ମୋର ଆପତ୍ତି ନାହିଁ ! ହେଲେ, ଖଣ୍ଡିଏ ଟିକେଟ୍ କିଣି ମୁଁ ତୁମ ନାଟକ ଦେଖିବି !"

> "ସାର୍, ଆପଣ ମୁଖ୍ୟ ଅତିଥି ! ନାଟକର ଉଦ୍‌ଘାଟନ କରିବେ !
> ଆପଣଙ୍କୁ ସମ୍ମାନିତ କରିବା ମୋ ପକ୍ଷରେ ତଥା ନାଟ୍ୟାନୁଷ୍ଠାନ
> ପକ୍ଷରେ ଅତି ଗୌରବର କଥା ! ଆପଣ ସାଧାରଣ ଦର୍ଶକ
> ଭାବରେ ଟିକେଟ୍ କିଣି ଯିବା..."

ମୋ ମୁହଁରୁ କଥା ଛଡ଼ାଇ ନେଇ ସେ କହିଲେ—

> "ନା, ନା, ତୁମେ ବୁଝୁନ ! ସେମାନେ ପେଶାଦାର୍, ରଙ୍ଗମଞ୍ଚରେ
> ଅଭିନୟ କରି ପେଟ ପୋଷିବା ତାଙ୍କର ଜୀବିକା ! ପଇସା ନ
> ପାଇଲେ କଳା ଆଉ କଳାକାର ବଞ୍ଚିବେ କେମିତି ?"

କାର୍ଯ୍ୟତଃ ସେଇଆ ହେଲା । ସେ ପାଞ୍ଚଟଙ୍କା ଦେଇ ଟିକେଟ୍ ଖଣ୍ଡିଏ ନେଲେ ଓ ଯଥାରୀତି ନାଟକର ଉଦ୍‌ଘାଟନ କଲେ । ଏଭଳି ନୀତିବାଦୀ ବ୍ୟକ୍ତିତ୍ୱ ସଂସାରରେ ନିଶ୍ଚିତ ଭାବେ ବିରଳ ।

ସ୍ୱର୍ଗତ ପଣ୍ଡିତ ବାସୁଦେବ ମହାପାତ୍ର ନବମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଆମକୁ ଓଡ଼ିଆ ସାହିତ୍ୟ ପଢ଼ାଉଥିଲେ । ସେ ମଧ୍ୟ ହାଇସ୍କୁଲ୍‌ର ସୁପରି-ଟେଣ୍ଡେଣ୍ଟ ଥିଲେ । ତାଙ୍କର ଗଭୀର ନିଷ୍ଠା, ଅଧ୍ୟବସାୟ ଓ କଠୋର ଶୃଙ୍ଖଳା ଜ୍ଞାନ ଥିଲା ଏକାନ୍ତ ଅନୁକରଣୀୟ । ତାଙ୍କର ପାଣ୍ଡିତ୍ୟ, ବାଗ୍ମିତା ଓ ଶିକ୍ଷାଦାନ ପ୍ରଣାଳୀ ଅତି ଉଚ୍ଚକୋଟୀର ଥିଲା । ଶ୍ରେଣୀଗୃହରେ ସେ ଯେତେବେଳେ ପାଠ ପଢ଼ାଉ ଥିଲେ, ମନେହେଉଥିଲା ସତେ ଯେପରି ସାହିତ୍ୟ ଏକ ମଧୁର ରସ ଭଳି ଛାତ୍ରମାନଙ୍କ ହୃଦୟକୁ ପ୍ଲାବିତ କରୁଥିଲା । କହିବାର ଅନର୍ଗଳ, ଅଭୂତ ଭଙ୍ଗୀ ସହିତ ଭାବ ଓ ଭାଷା ଏପରି ଇନ୍ଦ୍ରଜାଲ ସୃଷ୍ଟି କରୁଥିଲା ଯେ, ମୋର ମନେ

ହେଉଥିଲା ପାଠ୍ୟ-ପୁସ୍ତକ ପଢ଼ିବାର ଆବଶ୍ୟକତା ଆଉ ନାହିଁ । ଏହିପରି ଏକ ଚୁମ୍ବକୀୟ ଶକ୍ତିର ଅଧିକାରୀ ଥିଲେ ସେ । ଦେଖିଲେ ମନେହେବ ସତେ ଯେପରି ତାଙ୍କ ମୁଖ ମଣ୍ଡଳରୁ ଏକ ଉଜ୍ଜ୍ୱଳ ଜ୍ୟୋତି ବିଚ୍ଛୁରିତ ହେଉଛି । ଏକ କଥାରେ ପଣ୍ଡିତ ବାସୁଦେବ ମହାପାତ୍ର ଜଣେ ବ୍ୟକ୍ତି ନଥିଲେ, ଥିଲେ ଏକ ଅନୁଷ୍ଠାନ ।

ଜଣେ ଟୀକାକାର ଭାବରେ ପଣ୍ଡିତ ମହାପାତ୍ରଙ୍କର ବିଶେଷ ଖ୍ୟାତି ଥିଲା । ପଣ୍ଡିତ ନୀଳକଣ୍ଠ ଦାସଙ୍କର ସେ ଥିଲେ ପରମ ବନ୍ଧୁ ଓ ଅନ୍ତରଙ୍ଗ ମିତ୍ର । ନୀଳକଣ୍ଠଙ୍କର ଅନବଦ୍ୟ କାବ୍ୟ "ଖାରବେଳ"ର ତର୍ଜମା କରି ସେ ଟୀକା ଲେଖିଥିଲେ । ଶୁଣାଅଛି, ତାଙ୍କର ସମସ୍ତ କାବ୍ୟ କବିତା ("କୋଣାର୍କେ" ଓ ଅନ୍ୟାନ୍ୟ ଗ୍ରନ୍ଥ)ର ପାଣ୍ଡୁଲିପି ସେ ପ୍ରଥମେ ବାସୁଦେବ ବାବୁଙ୍କୁ ପଢ଼ିବାକୁ ଦେଉଥିଲେ ଓ ଭୁଲଭ୍ରାନ୍ତି ଥିଲେ ସଂଶୋଧନ କରିଦେବାକୁ ଅନୁରୋଧ କରୁଥିଲେ । ସ୍ୱର୍ଗତ ମହାପାତ୍ରଙ୍କ ନିଜ ରଚନା "ଭାବେ ଭୋଳା" (ପ୍ରଥମ ଓ ଦ୍ୱିତୀୟ ଭାଗ) ଉତ୍କଳ-ସାହିତ୍ୟ-ଦରବାରରେ ସ୍ୱୀକୃତି ଲାଭ କରିଛି । ପୂଜନୀୟ ଗୁରୁଦେବଙ୍କର ଏହି ପବିତ୍ର ସ୍ମୃତିଚାରଣ ଅବସରରେ ମୋର ଶେଷ ଅର୍ଘ୍ୟ ହେଉଛି—ତାଙ୍କର ଭାବ, ଭାଷା, ଓ ବିଷୟବସ୍ତୁର ଉପସ୍ଥାପନା ଆଦି ସେହି ଛାତ୍ରାବସ୍ଥାରୁ ମୋ ହୃଦୟରେ ଏଭଳି ଗଭୀର ରେଖାପାତ କରିଥିଲା ଯେ, ପରବର୍ତ୍ତୀ ସମୟରେ ତାହା ମୋ ସାହିତ୍ୟିକ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ତାଙ୍କର କଲ୍ୟାଣରୁ ମାଟ୍ରିକ୍ କ୍ଲାସମାନଙ୍କରେ ମୁଁ ପ୍ରାୟତଃ ମାତୃଭାଷା ଓ ଇତିହାସରେ ସର୍ବୋଚ୍ଚ ନମ୍ବର ପାଉଥିଲି ।

ବାରିପଦା ହାଇସ୍କୁଲର ଆଉ ଜଣେ ଖ୍ୟାତିସମ୍ପନ୍ନ ଶିକ୍ଷକ ଥିଲେ ୰ ଜଗତ ମୋହନ ସେନ୍ । ସେ ଆମ୍ଭମାନଙ୍କୁ ଗଣିତ ଓ ଭୂଗୋଳ ପଢ଼ାଉଥିଲେ, ଡ୍ରଇଂ ଶିଖାଉଥିଲେ । ଦୁଇ ହାତରେ ଦୁଇଖଣ୍ଡ ଚକ୍‌ଖଡ଼ି ଧରି କଳାପଟାରେ ସେ ଏକ ସଙ୍ଗେ ଦୁଇଦୁଇଟି ମଣିଷ, କୁକୁର, ମାଙ୍କଡ଼, ବିରାଡ଼ି ଓ ବଗ ଆଙ୍କି ଦେଉଥିଲେ । ଦୁଇଟି ଚିତ୍ର ସର୍ବତୋଭାବେ ସମାନ—ଯେପରି ଦୁହେଁ ଦୁହିଙ୍କୁ ଚାହିଁ ରହିଛନ୍ତି । ସ୍କୁଲର ସାଂସ୍କୃତିକ ଉତ୍ସବମାନଙ୍କରେ ସେନ୍ ସାର୍‌ଙ୍କ ଅବଦାନ ଥିଲା ସବୁଠୁ ବେଶି । ଉତ୍ସବ-ମଣ୍ଡପକୁ ଚିତ୍ର-ବିଚିତ୍ର କରି ସଜାଇବାଠୁ ଆରମ୍ଭ କରି, ନାଟକରେ ସ୍ୱର-ସଂଯୋଜନା କରିବା ସହିତ ପିଲାମାନଙ୍କୁ ବେଶପଟା ପିନ୍ଧାଇ ମଞ୍ଚ ଉପରକୁ ଛାଡ଼ିବା ପର୍ଯ୍ୟନ୍ତ, ସବୁଥିଲା ତାଙ୍କ ହାତର କରଣୀ । ତା'ଛଡ଼ା ପାଇଖାନାରେ ବସି ସେ ଗଣିତର ସୂତ୍ର ଓ ଜ୍ୟାମିତିର ଡିଡକ୍‌ସନ୍ ପ୍ରଭୃତି କାନ୍ଥରେ ଆଙ୍କି ସମାଧାନ କରିବା କଥା ମଧ୍ୟ ଆମେ ଶୁଣୁଥିଲୁ । ମୋଟ ଉପରେ ସବୁଦିଗରୁ ସେ ଥିଲେ ଓସ୍ତାଦ୍ ।

ମାତ୍ର···ଏହିଭଳି ଜଣେ ଯୋଗଜନ୍ମା, କର୍ମଠ କର୍ମୀ, ତରୁଣପ୍ରତିଭାଧର ଯେ ହଠାତ୍ ଆମ ପାଖରୁ ଚିରବିଦାୟ ନେଇଯିବେ, ଏହା ଧାରଣାର ଅତୀତ ଥିଲା । ବାରିପଦାର ଦେଉଳ ସାହିରେ ଥିବା "ହେମ ସାଗର" ପୁଷ୍କରିଣୀରେ ବୁଡ଼ିଯାଇ ତାଙ୍କର ଅକାଳ ମୃତ୍ୟୁ ହେଲା । ପ୍ରିୟତମା ପତ୍ନୀ, ଏକମାତ୍ର ଶିଶୁପୁତ୍ର, ଓ ଶହଶହ ଗୁଣମୁଗ୍ଧ ଛାତ୍ରଙ୍କୁ ଛାଡ଼ିଦେଇ ସେ ଚାଲିଗଲେ ଭବସାଗରର ପରପାରକୁ । ସେଦିନ ଛାତ୍ର ସମାଜ, ଅଭିଭାବକ ତଥା ସମଗ୍ର ସହର ତାଙ୍କ ପାଇଁ କାନ୍ଦି କାନ୍ଦି ଲୁହ ଭସାଇ ଦେଇଥିଲେ । କବିବର ରାଧାନାଥଙ୍କ ଭାଷାରେ—

"ବଡ଼ ନିଠୁର କାଳ, ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି"

ପ୍ରକୃତରେ ନଶ୍ୱର ଏହି ସଂସାର, କ୍ଷଣଭଙ୍ଗୁର ମଣିଷର ଏହି ଜୀବନ । ସେନ୍ ସାର୍‌ଙ୍କର ସେ ଅପରୂପ ଲାବଣ୍ୟ ତନୁ, ସେ ସ୍ନେହବୋଳା ମଧୁର ଭାଷା, ସେ ଟଣା ଟଣା ସୁନ୍ଦର ଆଖିଦୁଇଟି—ସବୁ ମନେପଡ଼ୁଛି । ଆଉ ମନେପଡ଼ୁଛି ଇଂରେଜ ଲେଖକମାନଙ୍କ କଥା :

"Whom God loves dies young." ଆଉ
"A moment of glory is better than
an age without a name."

ଏହି ସମସ୍ତ ଉକ୍ତିକୁ ଉଚ୍ଚାରି କରି ମନକୁ ସାନ୍ତ୍ୱନା ଦେବାଛଡ଼ା ଆଉ ଉପାୟ କଣ ? ଜନ-ମାନସକୁ ମୋହିତ କରି ସେ ତାଙ୍କର "ଜଗତ ମୋହନ" ନାମର ସାର୍ଥକତା ପ୍ରତିପାଦିତ କରିଯାଇଛନ୍ତି; ରଖିଯାଇଛନ୍ତି ପବିତ୍ର ସ୍ମୃତି କେବଳ : "ସ୍ମୃତି ସେ ନୁହଇ କେବେ ଭୁଲିବାର···"

ଆମର ଅନ୍ୟ ଜଣେ ଶିକ୍ଷକ ଥିଲେ କର୍ତ୍ତବ୍ୟକର୍ମୀ, ସକଳ ସଦ୍‌ଗୁଣର ଆଧାର ସ୍ୱର୍ଗୀୟ ବ୍ରଜ ସୁନ୍ଦର ଦାସ । ସେ ଥିଲେ ଆମ ସ୍କୁଲର ଡ୍ରିଲ୍ ତଥା ଖେଳ ଶିକ୍ଷକ । ପିଲାମାନଙ୍କୁ ବେତରେ ମାଡ଼ ଦିଆଯିବ ନାହିଁ ବୋଲି ମହାରାଜାଙ୍କର ଆଦେଶ ଥିଲା; କିନ୍ତୁ ବ୍ରଜବାବୁଙ୍କ ପ୍ରତି ଏହା ବୋଧହୁଏ ପ୍ରଯୁଜ୍ୟ ନ ଥିଲା । କାରଣ, ବିଶେଷ ଦୋଷ କିମ୍ବା ବଡ଼ ଧରଣର ତ୍ରୁଟି ଦେଖିଲେ ସେ ଦୋଷୀକୁ ପିଲାମାନଙ୍କ ଆଗରେ ଖୋଲା ପଡ଼ିଆରେ ନିର୍ଘାତ ବେତମାଡ଼ ଦେଉଥିଲେ । କାହାରି ପ୍ରତିବାଦ କରିବାର ଉପାୟ ନ ଥିଲା । ସେ ମାଡ଼ ଯିଏ ଥରେ ଖାଇଥିବ, ଜୀବନସାରା ଅନ୍ତତଃ ସେ ପ୍ରକାର ଦୋଷ ସେ ଆଉ କରିବ ନାହିଁ ।

ଦିନକର କଥା । ମୁଁ ପଢୁଥାଏ ଦଶମ ଶ୍ରେଣୀରେ । ସେଦିନ ସାର୍ ଅଷ୍ଟମ ଶ୍ରେଣୀଠୁ ଏକାଦଶ ଶ୍ରେଣୀଯାଏ ସବୁ ପିଲାଙ୍କୁ ସ୍କୁଲ ଛୁଟି ପରେ ଫୁଟବଲ

ପଡ଼ିଆରେ ଏକାଠି ହେବାକୁ ଆଦେଶ ଦେଲେ । ଗେମ୍ ପିଅନ ଗୋପାଳ ପ୍ରତି କ୍ଲାସକୁ ଆସି ନୋଟିସ ବୁଲାଇ ଦେଇଗଲା । ସାର୍‌ଙ୍କ କଥା ଅମାନ୍ୟ କରିବାକୁ କାହାର ସାଧ ଅଛି ? ପିଲାଏ ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ଖେଳ ପଡ଼ିଆରେ ଆସି ରୁଣ୍ଡହେଲେ । କିଛି ସମୟ ପରେ ସାର୍ ଆସି ପହଞ୍ଚିଲେ । ତାଙ୍କ ପଛରେ ଅନୁଗତ ଭୃତ୍ୟପରି ଗେମ୍ ପିଅନ ଗୋପାଳ ମଧ୍ୟ ଉପସ୍ଥିତ । ସମସ୍ତେ ଭାବିଲେ, ଆଜି କିଛି ଗୋଟାଏ ଘଟଣା ବୋଧହୁଏ ଘଟିବାକୁ ଯାଉଛି । ହୁଏତ କୌଣସି ହତଭାଗ୍ୟ ଭାଗ୍ୟରେ ବେତମାଡ଼ର ଦୁର୍ଯୋଗ ଆସନ୍ନ । ସମସ୍ତଙ୍କ ମୁହଁରେ ଆତଙ୍କର ଚିହ୍ନ । ହଠାତ୍ ସାର୍ ଆଙ୍ଗୁଠି ଦେଖାଇ ମତେ କହିଲେ, "ଭଞ୍ଜୁ, ଏଠିକି ମୋ ପାଖକୁ ଆ"— ବାସ୍, ଏତିକରେ ମୋ ପିଳେହି ପାଣି । ସମସ୍ତେ ମୁହଁ ଚାହିଁାଚାହିଁ ହେଲେ । ଅଖଣ୍ଡ ନୀରବତା ବିରାଜମାନ । ମନେ ମନେ ଭାବିଲି, ମୋ ଜାଣିବାରେ କୌଣସି ଦୋଷ ତ ମୁଁ କରିନାହିଁ । ଯାହାହେଉ, ଡେରି ନ କରି, ମନେ ମନେ ଇଷ୍ଟନାମ ସ୍ମରଣ କରି ଚାଲିକୁ ମୁହଁପୋଡ଼ି ତାଙ୍କ ପାଖରେ ଯାଇ ହାଜର ହେଲି— ଅପରାଧୀ ଯେପରି ଥାନା ଅଫିସରଙ୍କ ପାଖରେ ହାଜର ହୁଏ । "ସିଧା ହୋଇ ଛିଡ଼ା ହ'—" ଗୁରୁ-ଗମ୍ଭୀର କଣ୍ଠରେ ଆଦେଶ ଦେଲେ ସେ । କହିଲେ, "ପିଲାମାନେ, ସମସ୍ତେ ଶୁଣ । ଆଜିଠୁ ଏଇ ଭଞ୍ଜୁ (ମୋତେ ସେ ସେଇଆ ଡାକନ୍ତି) ସ୍କୁଲ ଫୁଟ୍‌ବଲ ଆଉ ହକି ଟିମ୍‌ର କ୍ୟାପଟେନ୍ । ତା' କଥା ମାନିବ । ନ ହେଲେ ବେତରେ ପିଠି ଫଟେଇ ଦେବି । ଯାଅ, ଏଥର ଘରକୁ ଯାଅ ।" ତାପରେ ସେ ଚାଲିଗଲେ ।

ମୁଁ ଅବାକ୍ ହୋଇ କିଛି ସମୟ ରହିଗଲି ।

କ୍ରୀଡ଼ା-ଜଗତରେ ବ୍ରଜସୁନ୍ଦର ଦାସ ଥିଲେ ଏକ ଲିଜେଣ୍ଡ୍ । ସେ ସମୟରେ ସେ କଲିକତାର ବିଖ୍ୟାତ "ଏରିଆନସ୍" ଫୁଟ୍‌ବଲ ଟିମ୍‌ର ବ୍ୟାକ୍ ପୋଜିସନ୍‌ରେ ଖେଳୁଥାନ୍ତି । ତା'ଛଡ଼ା ଯେ କୌଣସି ପୋଜିସନ୍‌ରେ ଖେଳିବାର ଦକ୍ଷତା ମଧ୍ୟ ତାଙ୍କର ଥିଲା । ତାଙ୍କ ଡାହାଣ ଓ ବାଁ ଗୋଡ଼ ସମାନ କାମ କରୁଥିଲା । ତାଙ୍କ ସଟ୍ ଏପରି ତୀବ୍ର ଥିଲା ଯେ, ସେ ବେଳେ ବେଳେ ଗୋଲ୍ ପୋଷ୍ଟର ନେଟ୍ ଛିଡ଼ାଇ ଦେଉଥିଲେ । କେବଳ ଫୁଟବଲ୍ ନୁହେଁ, ହକିରେ ସେ ଥିଲେ ଜଣେ ସୁଦକ୍ଷ ଫରୱାର୍ଡ଼ ଖେଳାଳି ।

ଥରେ ବିଲାତରୁ "ଇସ୍‌ଲିଙ୍ଗ୍‌ଟନ୍ କରନ୍ଥିଆନ୍" ଫୁଟବଲ୍ ଟିମ୍ ଭାରତକୁ ଖେଳିବାକୁ ଆସିଥିଲେ । ଭାରତର ମାତ୍ର ଚାରୋଟି ସ୍ଥାନରେ ଚାରୋଟି ପ୍ରଦର୍ଶନୀ ମ୍ୟାଚ୍ ଖେଳିବାର କଥା । ଗୋଟିଏ ଦିଲ୍ଲୀରେ, ଆଉ ତିନୋଟି ଯଥାକ୍ରମେ ବମ୍ବେ, ଢାକା ଓ ବାରିପଦାରେ । ମୟୂରଭଞ୍ଜ ମହାରାଜାଙ୍କ ଅନୁରୋଧ କ୍ରମେ ବାରିପଦାରେ ଖେଳର ଆୟୋଜନ ହୋଇଥିଲା । ବିଲାତର ଖେଳାଳୀମାନଙ୍କ

ଯାତାୟତ, ଖାଦ୍ୟପେୟ ଓ ଉପଢୌକନ ବାବଦରେ ସମସ୍ତ ଖର୍ଚ୍ଚ ମହାରାଜା ବହନ କରଥିଲେ । ସମଗ୍ର ଓଡ଼ଶାରୁ ଏଗାର ଜଣ ଖେଳାଳି ବଛା ହୋଇ ଆସିଥିଲେ । ସେମାନଙ୍କ ମଧ୍ୟରେ ଶ୍ୟାମ, ରୁବେନ (ଦୁଇଭାଇ—ସେଣ୍ଟର ଫରଓ୍ୱାର୍ଡ଼ ଓ ରାଇଟ୍ ଇନ୍), ବ୍ରଜସୁନ୍ଦର ଦାସ ଓ କୃଷ୍ଣଚନ୍ଦ୍ର ଦାସ (ଦୁଇ ଭାଇ—ବ୍ୟାକ୍), ଜଗନ୍ନାଥ ରାଓ (ସେଣ୍ଟର ଫରଓ୍ୱାର୍ଡ଼), ବର୍କିମ୍ (ଲେଫ୍ଟ୍ ଇନ୍), ଦୀନବନ୍ଧୁ (ଲେଫ୍ଟ୍ ଆଉଟ୍) ଓ ଲୁଲୁ ବାର୍ନେଟ (ଗୋଲକିପର୍) ପ୍ରଭୃତି ଖ୍ୟାତନାମା ଖେଳାଳିମାନେ ବଳବତର ଦୁର୍ଦ୍ଧର୍ଷ ଟିମ "ଇସଲିଙ୍ଗଟନ କରନ୍ଥିଆନ୍"ର ମୁକାବିଲା କରଥିଲେ । ଆଶ୍ଚର୍ଯ୍ୟର କଥା, ଇଂଲଣ ଖେଳାଳିମାନଙ୍କର ସବୁ ଚେଷ୍ଟା ବ୍ୟର୍ଥ ହେଲା । କାନ୍ଥ ପରି ଭଲ "ବରଜା" (ବ୍ରଜସୁନ୍ଦର ବାବୁଙ୍କୁ ବାରିପଦାର ଲୋକେ ବରଜା ବୋଲି ଡାକୁଥିଲେ) ତାଙ୍କୁ ଶେଷ ପର୍ଯ୍ୟନ୍ତ ଅଟକାଇ ରଖିଲା । ସେ ଖେଳ ଯିଏ ଦେଖିଛୁ, ସେ ଧନ୍ୟ ଧନ୍ୟ ହେଉଛୁ । ମହାରାଜା ତ ସ୍ତମ୍ଭୀଭୂତ ହୋଇଗଲେ ସାର୍‌ଙ୍କ ଖେଳ ଦେଖି । ଖେଳ ଶେଷରେ ସାହେବ ଖେଳାଳିମାନେ ତାଙ୍କୁ କାନ୍ଧରେ ବସାଇ 'ହିପ ହିପ ହୁରେ' କହି ନେଇଯାଇଥିଲେ । ଗୁଣୀର ଗୁଣ ଚିହ୍ନି ଆଦର କରିବା, ସମ୍ମାନ ଦେବା ଇଂରେଜମାନଙ୍କର ସହଜାତ ପ୍ରକୃତି ।

ମୟୂରଭଞ୍ଜ ଆଥଲେଟିକ ଆସୋସିଏସନ ଆନୁକୂଲ୍ୟରେ ଗୋଟିଏ ଖେଳ ପ୍ରତିଯୋଗିତା (Sports) ଆରମ୍ଭ ହୋଇଥିଲା । ତାର ପୃଷ୍ଠପୋଷକ ଥିଲେ ମହାରାଜା ପ୍ରତାପଚନ୍ଦ୍ର । ପ୍ରଥମବର୍ଷ ଖେଳ କସରତ୍‌ରେ ଓଡ଼ିଶା ତଥା ବିହାର ଓ ବଙ୍ଗ (ବର୍ତ୍ତମାନର ପଶ୍ଚିମବଙ୍ଗ)ର ନାମଜାଦା ଖେଳାଳିମାନେ ଅଂଶ ଗ୍ରହଣ କରଥିଲେ । ବିଭିନ୍ନ ବିଭାଗ (event)ରେ ଖୁବ ଜୋରଦାର୍ ପ୍ରତିଯୋଗିତା ହୋଇଥିଲା । ଉଦ୍‌ଯାପନ ଦିବସରେ କପ୍, ସିଲ୍‌ଡ଼୍, ଓ ବିଭିନ୍ନ ପୁରସ୍କାର ବିତରଣ କରାଯାଇଥିଲା । ଉପସ୍ଥିତ ଜନସାଧାରଣଙ୍କୁ ଚକିତ କରି champion ହୋଇଥିଲେ ଶ୍ରୀମୁକ୍ତ ବ୍ରଜସୁନ୍ଦର ଦାସ । ୧୦୦।୨୦୦।୪୦୦ ଓ ୮୦୦ ମିଟର ଦୌଡ଼, Low ଓ High Hurdles race, High Jump, Long Jump ଏବଂ Hop-step and Jump ପ୍ରଭୃତି ଅନେକ ଦୌଡ଼ ଓ କୁଦରେ ପ୍ରଥମ ସ୍ଥାନ ଅଧିକାର କରଥିଲେ ସେ । ଦ୍ୱିତୀୟ ବର୍ଷର ପ୍ରତିଯୋଗିତାରେ ମଧ୍ୟ ପ୍ରଥମ ବର୍ଷର ପୁନରାବୃତ୍ତି ଘଟିଲା । ଖେଳାଳି କୁଳର ଆଶା, ଆକାଂକ୍ଷାକୁ ଧୂଳିସାତ୍ କରି ଆମ ସାର୍ champion ହେଲେ । ତାପରବର୍ଷ ବାହାରର ଖେଳାଳିମାନେ ନିରୁତ୍ସାହିତ ହୋଇ ନ ଆସିବାରୁ ମହାରାଜା ବ୍ରଜବାବୁଙ୍କୁ ଆସୋସିଏସନର ଜଣେ ସଭ୍ୟ ରୂପେ ଗ୍ରହଣ କଲେ । ସେହି ବର୍ଷଠାରୁ ସେ ଆଉ sportsରେ ଭାଗ ନେଇ ପାରିଲେ ନାହିଁ ।

ତାଙ୍କର ଏହି ସମସ୍ତ କୃତିତ୍ୱକୁ ବିଚାରକୁ ନେଇ ସେ ବାର୍ଦ୍ଧକ୍ୟରେ ଉପନୀତ ହେବା ପରେ (ବିଶିଷ୍ଟ ହକି ଖେଳାଳି ଧ୍ୟାନଚାନ୍ଦଙ୍କ ଭଳି) Orissa Olympic Association ତଥା ଓଡ଼ିଶା ସରକାର ତାଙ୍କୁ କଟକରେ ବାରବାଟୀ ଷ୍ଟେଡ଼ିୟମଠାରେ ସମ୍ମାନିତ କରିଥିଲେ । ବାସ୍ତବିକ୍ ପ୍ରତିଭା ପୂଜା କରିବାରେ ଓଡ଼ିଆ ଜାତି କି ଆଗଭର, କି ତତ୍ପର ! ରକ୍ଷା ହୋଇଛି, ଏ ସମ୍ମାନ ତାଙ୍କର ମରଣୋତ୍ତର ହୋଇନାହିଁ । ଜଣେ ଗୁଣମୁଗ୍ଧ ଗୁରୁ ହିସାବରେ ମୁଁ ଏତିକି କହିଲେ ଯଥେଷ୍ଟ ହେବ ଯେ, ସେ ପେଲେ, ଧ୍ୟାନଚାନ୍ଦ ଓ ମାରାଡୋନାଙ୍କ ତୁଳନାରେ ଅନେକ ବଡ଼ । ସେ ଥିଲେ ସାରା ପୃଥିବୀରେ ଏକମାତ୍ର ଖେଳାଳି (Sportsman) ଯେ କି କ୍ରୀଡ଼ାର ସକଳ କ୍ଷେତ୍ରରେ ଅଳିଭା ଯଶ ରଖିଯାଇଛନ୍ତି, ଏବଂ ଯାହାକୁ ଏ ଦେଶ ଚିହ୍ନି ପାରିନାହିଁ ।

ଇଂରାଜୀରେ All Rounder କହିଲେ ଯାହା ବୁଝାଯାଏ, ସେ ଥିଲେ ତାର ମୂର୍ତ୍ତିମନ୍ତ ପ୍ରତୀକ । କେବଳ କ୍ରୀଡ଼ା ନୁହେଁ, କଳା କ୍ଷେତ୍ରରେ ମଧ୍ୟ ସେ ଥିଲେ ଜଣେ କୁଶଳୀ କଳାକାର । ତାଙ୍କର ଗୌରବର୍ଣ୍ଣ, ସୌମ୍ୟକାନ୍ତି, ଦେବଦୁର୍ଲଭ, ତେଜୋଦୀପ୍ତ ଶରୀର ପ୍ରତ୍ୟେକଙ୍କୁ ଆକର୍ଷିତ କରୁଥିଲା । ମହାରାଜାଙ୍କ ଜନ୍ମଦିନ ଉପଲକ୍ଷରେ ବାରିପଦାର Friends' Recreation Club ଦ୍ୱାରା ଯେଉଁସବୁ ନାଟକ (ମୁଁ ଦେଖିବାରେ କେଶରୀ ଗଙ୍ଗ, ଗୌଡ଼ବିଜେତା, କାଳିକେରୁ ଫୁଲ୍ଲାରା, ସ୍ୱର୍ଣ୍ଣସୌଦାର ନାଟକ) ଅଭିନୀତ ହେଉଥିଲା, ସେଥିରେ ବ୍ରଜବାବୁ ମୁଖ୍ୟ ପୁରୁଷ ଭୂମିକାରେ ଅଭିନୟ କରୁଥିଲେ । କିନ୍ତୁ ନାରୀଭୂମିକା (ଫୁଲ୍ଲାରା)ରେ ସେ ଯେଉଁ ଜୀବନ୍ତ ଅଭିନୟ କରିଥିଲେ, ତାହା ଅତ୍ୟନ୍ତ ଚିତ୍ତାକର୍ଷକ ଓ ହୃଦୟସ୍ପର୍ଶୀ ହୋଇଥିଲା । ନାୟିକା ଭୂମିକାରେ ସେ ଯେ ଏପରି ଚମତ୍କାର ଅଭିନୟ କରିବେ, ତାହା ଆମ୍ଭମାନଙ୍କ ଧାରଣାର ଅତୀତ ଥିଲା । ତାଙ୍କ ସହିତ ଅଭିନୟ କରୁଥିବା ଫ୍ରେଣ୍ଡସ୍ ରିକ୍ରିଏସନ କ୍ଲବର ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଓଡ଼ିଶାର ପ୍ରଥମ ଓଡ଼ିଆ I. G. of Police (ସେତେବେଳର S. P., Mayurbhanj) ୬ ରାମଚନ୍ଦ୍ର ଦାସ, ଆଡ଼ଭୋକେଟ୍ ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ପତି ଓ ଷ୍ଟେଟ ବ୍ୟାଙ୍କ ମ୍ୟାନେଜର ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ମିଶ୍ର, ୬ କ୍ଷେତ୍ରବାସୀ ସ୍ୱାଇଁ, ୬ ବୃନ୍ଦାବନ ଚନ୍ଦ୍ର ସାହୁ ଓ ନାଟ୍ୟକାର ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ମହାପାତ୍ର ପ୍ରଭୃତିଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ସେ ଯାହା ହେଉ, ମୋ ଜୀବନରେ ବହୁ ଅଭିଜ୍ଞ ଓ ନାମଜାଦା ଖେଳାଳିଙ୍କ ଖେଳ ଦେଖିଛି, ବହୁ ବିଖ୍ୟାତ ଅଭିନେତା, ଅଭିନେତ୍ରୀଙ୍କ ପ୍ରାଣସ୍ପର୍ଶୀ ଅଭିନୟ ଦେଖିଛି; ମାତ୍ର ଆମ ବ୍ରଜସୁନ୍ଦର ସାରଙ୍କ ଭଳି ଉଭୟ ଗୁଣରେ ବିଭୂଷିତ ବ୍ୟକ୍ତିତ୍ୱ ମୁଁ ଦେଖିନାହିଁ ଅବା କେହି ଥିବାର ଶୁଣିନାହିଁ । ତାଙ୍କର ତୁଳନା ସେ ହିଁ କେବଳ ନିଜେ ।

ହାଇସ୍କୁଲର ଅନ୍ୟାନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ସର୍ବଶ୍ରୀ ଜଣାଦର ସାହୁ ('କାଳ ବୋହୂ' ଉପନ୍ୟାସର ଲେଖକ), ଦୈତାରି ବାରିକ, କାଶୀନାଥ ମିଶ୍ର 'ସ୍କାଉଟମାଷ୍ଟର' ରାମଚନ୍ଦ୍ର ପଟ୍ଟନାୟକ, ଉମାକାନ୍ତ ମିଶ୍ର, ଗୌରୀଶଙ୍କର ଦାସ ମହାପାତ୍ର, ଅନୁକୂଳ ଚନ୍ଦ୍ର ନାୟକ, ମଧୁସୂଦନ ମହାନ୍ତି ଓ ହରିହର ନନ୍ଦ ପ୍ରଭୃତି ଥିଲେ ସ୍ୱକୀୟ ପ୍ରତିଭାରେ ଗୋଟିଏ ଗୋଟିଏ ରତ୍ନ । ସାକ୍ଷୀଗୋପାଳର ବନବିଦ୍ୟାଳୟ ଭାଙ୍ଗିଯିବା ପରେ ମହାରାଜା ସେଠିକାର କେତେକ ଶିକ୍ଷକଙ୍କୁ ଆଣି ବାରିପଦା ହାଇସ୍କୁଲରେ ଚାକିରି ଦେଇଥିଲେ । ହେଡ୍‌ମାଷ୍ଟର ଥିଲେ ଶ୍ରୀଯୁକ୍ତ ରାଜେନ୍ଦ୍ର ଲାଲ ଦତ୍ତ । ଶିକ୍ଷକମାନଙ୍କର ନିଷ୍ଠା ଓ ଉଚ୍ଚମାନର ଅଧ୍ୟାପନା ଶୈଳୀ ଯୋଗୁଁ ଛାତ୍ରମାନେ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ କିପରି ଆଶାନୁରୂପ ଫଳ ଦେଖାଉ-ଥିଲେ, ପୂର୍ବରୁ ତାହାର ଆଲୋଚନା କରାଯାଇଅଛି ।

---

—ତିନି—

ପ୍ରତି ସପ୍ତାହରେ ଆମର ଗୋଟିଏ ଧର୍ମଶିକ୍ଷା ପିରିୟଡ୍ ଥାଏ । ଶ୍ରୀଯୁକ୍ତ ଅନୁକୂଳ ଚନ୍ଦ୍ର ନାୟକ ସେ କ୍ଲାସ ନେଉଥିଲେ । ମୁଁ ସେତେବେଳେ ପଞ୍ଚମ ଶ୍ରେଣୀର ଛାତ୍ର । ଥରେ ସାର୍ କ୍ଲାସକୁ ଆସି କହିଲେ, "ପିଲାମାନେ, ଦଶଟାରୁ ଚାରିଟା ପର୍ଯ୍ୟନ୍ତ ଆମେ ତୁମକୁ ପଢ଼ାଉଛୁ, ତୁମ୍ଭେମାନେ ଶୁଣୁଛ, ପଢ଼ୁଛ । ଏଣିକି ଏଇ ଧର୍ମଶିକ୍ଷା ପିରିୟଡ୍‌ରେ ତୁମମାନଙ୍କ ଭିତରୁ ଜଣେ ଆସି ଗପ କହିବ । ମୁଁ ଶୁଣିବି, ତୁମେ ସମସ୍ତେ ଶୁଣିବ ! କିଏ ଭଲ ଗପଟିଏ କହିବ ଛିଡ଼ାହୁଅ ।"

"ସାର୍, ଭଞ୍ଜ ଅନେକ ଗପ ଜାଣେ, ସେଇ କହିବ ।" ମୋ ସାଙ୍ଗମାନେ ଏକସ୍ୱରରେ କହି ଉଠିଲେ ।

"ବେଶ୍, ଭଲ କଥା ! ଭଞ୍ଜ, ତୁ ମୋ ପାଖକୁ ଆ' । ପିଲାଙ୍କ ଆଡ଼କୁ ମୁହଁ କରି ଗପ ଆରମ୍ଭ କର ।"

ମୁଁ ଆସିଲି । ଗପକୁହା ଆରମ୍ଭ ହେଲା । ଶେଷ ହେଲା ବେଳକୁ ସାର୍ ତାଳି ମାରିଲେ, ପିଲାଏ ଖୁସିରେ କରତାଳି ଦେଲେ ।

"ଖୁବ ବଢ଼ିଆ ଗପଟିଏ କହିଲୁ ଏକା ! ଆର ଥରକୁ ଆଉ ଗୋଟିଏ ନୂଆ ଗପ କହିବୁ । ଯା—"

ଘଣ୍ଟା ବାଜିଲା । ପିରିୟଡ୍ ସରିଗଲା । ସାର୍ କ୍ଲାସ ଛାଡ଼ି ଚାଲିଗଲେ । ସମସ୍ତଙ୍କ ମୁହଁରେ ଆନନ୍ଦ ଓ ଆଶ୍ଚର୍ଯ୍ୟ ।

ନୂଆ ନୂଆ କାହାଣୀ କହିବାକୁ ହେଲେ ଗଳ୍ପ ବହି ପଢ଼ିବା ଦରକାର । ସେ ସବୁ ବହି ପଢ଼ିବାର ଅଭ୍ୟାସ ମୋର ଆଗରୁ ଥାଏ । ମୁଁ ଓଡ଼ିଆ, ଇଂରାଜୀ ଓ ବଙ୍ଗଳା ଗଳ୍ପ ବହି ବରାବର ପଢ଼େ । ପରବର୍ତ୍ତୀ ସମୟରେ ହିନ୍ଦି ପଢ଼ିବା ଲେଖିବା ସହିତ ଉର୍ଦ୍ଦୁ ଭାଷାରେ ସାମାନ୍ୟ ଜ୍ଞାନ ଅର୍ଜନ କରିବାର ସୁଯୋଗ ମଧ୍ୟ ଲାଭ କରିଥିଲି । ଆମ ସମୟରେ ଓଡ଼ିଆ ଶବ୍ଦେ ନମ୍ବରକୁ ଛାଡ଼ି (ଅଷ୍ଟମରୁ ଏକାଦଶ ପର୍ଯ୍ୟନ୍ତ) ଆଉ ସବୁ ବିଷୟ ଇଂରାଜୀରେ ପଢ଼ା ହେଉଥାଏ । ତେଣୁ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ବେଳକୁ ପିଲମାନେ ସାଧାରଣତଃ ଇଂରାଜୀ ଲେଖିପଢ଼ି ପାରୁଥାନ୍ତି । ଆଉ ବଙ୍ଗଳା ! ସ୍ୱର୍ଗତ ଦୁର୍ଗା ନନ୍ଦ ଚଟ୍ଟୋପାଧ୍ୟାୟ ବୋଲି ଜଣେ ବଙ୍ଗାଳୀ ଭଦ୍ରଲୋକ ଆମ ପଡ଼ିଶା ଥାନ୍ତି । ସେତେବେଳେକୁ ପରେଡ଼ ପଡ଼ିଆରେ ଆମର ନିଜ ଘର ଥାଏ । ସେ ଭଦ୍ରଲୋକ ଭଡ଼ାଘରେ ରହୁଥିଲେ । ତାଙ୍କ ସାନ ପୁଅ ଶୈଲ (ଶୈଳେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ) ମୋର ଅତି ପ୍ରିୟ ସାଙ୍ଗ । ପଡ଼ିଶା ଘର । ସବୁବେଳେ ଯିବା ଆସିବା । ଶୈଳର ବଡ଼ ଭଉଣୀ (ମେଜଦିଦି) ମୋ ହାତ ଧରି ବଙ୍ଗଳା ଅ ଆ କ ଖ ଲେଖାଇ ଥିଲେ ଓ ପଢ଼ାଇଥିଲେ । ଲେଖାପଢ଼ା ସହିତ ସେ ଭାଷା ପ୍ରତି ମୋର ବିଶେଷ ଆଗ୍ରହ ସୃଷ୍ଟି ହେଲା । କ୍ରମଶଃ ବଙ୍ଗଳା ଭାଷାରେ ଅନେକ ରୋମାଞ୍ଚକର ପୁସ୍ତକ ପଢ଼ିବାକୁ ଲଗିଲି । ଅନେକ ଦୁଃସାହସିକ ଅଭିଯାନର ଗଳ୍ପ, ନୂତନ ଆବିଷ୍କାରର ଗଳ୍ପ, ଗୋଏନ୍ଦା ଓ ଭୂତପ୍ରେତର ଗଳ୍ପ । ଇଂରେଜୀ, ଓଡ଼ିଆ ସହିତ ବଙ୍ଗଳା ଶିଶୁ ପୁସ୍ତକ ମାନ ପଢ଼ି ମନେରଖି, ଏଭଳି ପ୍ରାଞ୍ଜଳ ଭାବେ କ୍ଲାସରେ ସାଥୀପିଲାଙ୍କ ଆଗରେ ବର୍ଣ୍ଣନା କରୁଥିଲି ଯେ ସେମାନେ ମନ୍ତ୍ରମୁଗ୍ଧ ହୋଇଯାଉଥିଲେ । ମୋର କହିବାର ଭଙ୍ଗୀ ସାର୍ ଅନୁକୂଳ ବାବୁଙ୍କୁ ମଧ୍ୟ ଚମତ୍କୃତ କରି ଦେଉଥିଲା ।

ଏଇଠି ଗୋଟିଏ କଥା କହିଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ସେତେବେଳେ ବାଲିପଡାର "Victoria Diamond Jublee Library" ଓଡ଼ିଶାରେ ସର୍ବବୃହତ୍ତ ଓ ସର୍ବୋତ୍ତମ ପାଠାଗାର ଥିଲା । ସେଠି ମୋର ଜଣେ ସମ୍ପର୍କୀୟ ଭାଇ Attender ଭାବେ କାର୍ଯ୍ୟ କରୁଥିଲେ । ମୁଁ ତାଙ୍କ ପାଖକୁ ଯାଇ ପ୍ରତିଦିନ ଖଣ୍ଡିଏ ଖଣ୍ଡିଏ ବହି ବାଛି ଆଣେ ଓ ତା' ପରଦିନ ତାକୁ ଫେରାଇ ଆଉ ଖଣ୍ଡିଏ ଆଣେ । ଏ ଅଭ୍ୟାସ ମାଟ୍ରିକୁ୍ୟଲେସନ୍ ପରୀକ୍ଷା ଯାଏ ମୋର ରହିଥିଲା । ଫଳରେ Shakespeare, G. B. S., Alexander Dumas, E. V. Lucas, Gorky, Chekov, Charles Dickens, Tolstoy, O. Henry ପ୍ରଭୃତି ସ୍ୱନାମଧନ୍ୟ ଇଂରେଜ, ଋଷିୟାନ ଓ ଆମେରିକାନ୍ ଲେଖକଙ୍କର ଗଳ୍ପ, ନାଟକ, ଉପନ୍ୟାସ; Wordsworth, Tennyson, P. B. Shelly, Robert Browning ପ୍ରଭୃତି ପ୍ରତିଭାଶାଳୀ କବିଙ୍କର

କବିତା, କବିଗୁରୁ ରବୀନ୍ଦ୍ରନାଥ ଠାକୁର, ଶରତଚନ୍ଦ୍ର, ବଙ୍କିମଚନ୍ଦ୍ର, ପ୍ରମଥନାଥ ବିଶି, ବିଭୂତିଭୂଷଣ ବନ୍ଦୋପାଧ୍ୟାୟ, ଡ଼ି. ଏଲ୍. ରାୟ, ପାଞ୍ଚକଡ଼ି ଦେ, ଜଳଧର, ବନଫୁଲ ପ୍ରଭୃତି ବଙ୍ଗୀୟ ଲେଖକମାନଙ୍କ କାବ୍ୟ, କବିତା, ଉପନ୍ୟାସ ସହିତ ଓଡ଼ିଆରେ କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ବନମାଳୀଙ୍କ ଠାରୁ ଆରମ୍ଭ କରି ବ୍ୟାସକବି ଫକୀରମୋହନ, କାଳନ୍ଦୀଚରଣ, କମଳାକାନ୍ତ, ମଧୁସୂଦନ, ଗଙ୍ଗାଧର ଓ କବିବର ରାଧାନାଥ ପ୍ରଭୃତିଙ୍କ ବିଭିନ୍ନ ସାହିତ୍ୟ-ସମ୍ଭାର ପାଠ କରିବାର ସୁଯୋଗ ଲାଭ କରି କୃତାର୍ଥ ହୋଇଥିଲି । ମୋର କବି ଓ ନାଟ୍ୟକାର ଜୀବନରେ ଉପରୋକ୍ତ ରଚନା ସମୂହ ବିଶେଷ ପ୍ରଭାବ ପକାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍ତମ ପୁସ୍ତକ ହିଁ ଥିଲା ମୋର ପ୍ରିୟତମ ବନ୍ଧୁ । ମୋର ପୁସ୍ତକ-ପଠନର ଏହି ଅଭ୍ୟାସ ପିଲାଦିନୁ ଆଜି ପର୍ଯ୍ୟନ୍ତ ଅତୁଟ ରହିଅଛି । କେବଳ ପାଠ୍ୟ-ପୁସ୍ତକ ପଠନ କରି ଜଣେ ଗ୍ରାଜୁଏଟ ପରୀକ୍ଷାରେ ପାଶ୍ କରିପାରେ, କିନ୍ତୁ ଭାରତୀୟ ସାହିତ୍ୟ ତଥା ବିଶ୍ୱ ସାହିତ୍ୟ ସହିତ ସମ୍ପର୍କ ନ ରଖିଲେ ପ୍ରକୃତ ଜ୍ଞାନ ଲାଭ ସମ୍ଭବ ନୁହେଁ ।

ଭଞ୍ଜଭୂମି ମୟୂରଭଞ୍ଜର ପ୍ରାକୃତିକ ଶୋଭା ଥିଲା ନୈସର୍ଗିକ । ମେଘାସନର ସୁଦୃଶ୍ୟ ପର୍ବତମାଳା, ନିବିଡ଼ ବନାନୀ, ଖରସ୍ରୋତା ସ୍ରୋତସ୍ୱିନୀ ଓ ନିର୍ଝର ସମୂହ ଏହାର ପ୍ରଧାନ ଆକର୍ଷଣ । ଶାଳ, ପିଆଶାଳ, ଅସନ, ପ୍ରଭୃତି ବିରାଟ ନଭସ୍ପର୍ଶୀ ବୃକ୍ଷମାନ, ବିଭିନ୍ନ ଫଳପୁଷ୍ପ ଶୋଭିତ ଲତାଗୁଳ୍ମ, ନାନାଦି ପଶୁପକ୍ଷୀଙ୍କର ନିର୍ଭୟ ବାସସ୍ଥଳୀ, ଜଙ୍ଗଲ ଫୁଲର ମହୁଆ, ମାଦକତାଭରା ବାସ୍ନା ଦର୍ଶକଙ୍କୁ ଯେପରି ବିମୋହିତ କରେ, କବିପ୍ରାଣକୁ ମଧ୍ୟ ସେହିପରି ସ୍ପର୍ଶ କରେ । ମୋର ସେତେବେଳର ନିଜ ଲେଖା କବିତାର କିଛି ଅଂଶ ଲେଖୁଛି ।

### ବିରାଟ ଭୂଇଁ ଦର୍ଶନେ

ଶଇଲ (୧) ! କି ଶୁଭକ୍ଷଣେ ତୋହି ସଙ୍ଗେ ମୁହିଁ
ଶଇଲ-ପ୍ରାଚୀର ଘେରା କପ୍ତିପଦା(୨)ଯାଇ—
ବିରାଟ ମହିମାମୟ ତପୀ ଅଧିଷ୍ଠିତ;
ବିରାଟ-ଦେଶେ(୩) ଦେଖିଲି କୀରତି ଅଦ୍ଭୁତ !
ଶୋଣ (୪)କରି ଅତିକ୍ରମ ମୟୂରଭଞ୍ଜର
ସୀମା ପାର ହୋଇଯାଉଁ ଅଳ୍ପ କିଛି ଦୂର;

---

୧ । ପ୍ରିୟବନ୍ଧୁ ଶୈଳେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ
୨ । ମୟୂରଭଞ୍ଜ ଅଧୀନରେ ରାଜ୍ୟର ଏକ ଅଂଶ
୩ । ପାଣ୍ଡବମାନେ ଏହିଠି ଛଦ୍ମ ବେଶରେ ଅଜ୍ଞାତବାସ କରିଥିଲେ
୪ । ମୟୂରଭଞ୍ଜର ଦକ୍ଷିଣରେ ପ୍ରବାହିତ ଏକ ନଦୀ

ଦେଖିଲି ସୌନ୍ଦର୍ଯ୍ୟ ଅହୋ, କେଡ଼େ ଭାଗ୍ୟବାନ,
ଅପୂର୍ବ ପ୍ରକୃତି ଶିବ ଶାନ୍ତ, ସୁମହାନ !

ଶାଳ, ଅସନ, ଶିଂଶପା ପାଦପେ ଗହଳି,
ଅଦୂରେ ତମସାଚ୍ଛନ୍ନ ଘୋର ବନସ୍ଥଳୀ ।
ଶୁଣାଅଛି ଏ ଅଞ୍ଚଳେ ବ୍ୟାଘ୍ର-ମହାବଳ,
ଗର୍ଜନ କରନ୍ତି ଘୋର ଫୁଲାଇ ଲାଙ୍ଗୁଳ,
ମୃଗୟୁ (୧) ମାନଙ୍କ ଯେଣୁ ଭକ୍ତ-ନରପତି
ମୃଗୟା କାରଣେ କେବେ କେବେ ସେ ଆସନ୍ତି !
କରୀଯୂଥ(୨) ଭ୍ରମୁଥାନ୍ତି ଘୋର ନାଦେ କରି—
ଘୋର ଉପଦ୍ରବ, କଥା ଅଛି ଏହିପରି !

କେତେ ଗଳ୍ପ ଶୁଣିଥିଲି ତୋହଠାରୁ ପୂର୍ବେ
ଦେଖି ଘୋର ବନ, ଚିତ୍ତ ଥରିଲା ମୋ ଏବେ,
ନୀରବ, ନିଶ୍ଚଳ, ଜନଶୂନ୍ୟ ପଥ ପରେ
ତୋହ ସଙ୍ଗେ ପଛେ ପଛେ ପଦ ସ୍ଖଳୁ ଧୀରେ;
ମନେ ପଡ଼ିଗଲା କବିଙ୍କର ସୁଧା-ମୃତ(୩)
‘ସ୍ୱଜନତା ଉପଭୋଗେ ଆନନ୍ଦ ବହୁତ ।
ତଥି ସଙ୍ଗେ ଭାବିଲି ମୁଁ ତପୀଗଣ ବନେ
କିପରି ଆଚରି ତପ ରହନ୍ତି ବିଜନେ ?

ଏହି ପ୍ରଶ୍ନୋତ୍ତର ମନେ ହୋଇଲା ଉଦିତ,
ଅହିଂସାଚରଣେ ଶାନ୍ତ, ପ୍ରୀତି ସଙ୍ଗେ ସତ୍ୟ ।
କରେ ଯେହୁ ହିଂସା, ଈର୍ଷା, ପାପ, ଅପକାର,
ତାହାରି ଜୀବନ ସଦା ଭୟେ ଥରହର !
ଅହିଂସ-ତପସ୍ୟାରତ ସଦା ତପୀକୁଳ
କି କରିବ ଧାର୍ମିକର ବ୍ୟାଘ୍ର ମହାବଳ ?

× × ×

---

୧ । ଶିକାରୀ ।

୨ । ହାତୀପଲ

୩ । ସୁଧା + ଅମୃତ = ସୁଧାମୃତ

ଶୈଳେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ବସନ୍ତ କୁମାର ଦାସ, ଶ୍ୟାମ ସୁନ୍ଦର ମହାପାତ୍ର ଓ ସ୍ୱ ରୁପ୍ରସାଦ ମହାନ୍ତି ସାଥୀମାନଙ୍କୁ ଧରି ମୁଁ ବାରିପଦାର ଦୂରବର୍ତ୍ତୀ ପାର୍ବତ୍ୟ ଅଞ୍ଚଳମାନଙ୍କୁ ବହୁବାର ଯାଇଛୁ । ପର୍ବତାରୋହଣ, ଛୋଟ ଛୋଟ ଗିରି, ନଦୀ ତଥା ଜଙ୍ଗଲ, ସବୁଳର ଜ୍ୟୁତ୍ରିଷ୍ଟଳ ପରିଦର୍ଶନ ପ୍ରଭୃତି ବହୁ ଦୁଃସାହସିକ ଅଭିଯାନ ଏହି ଯାତ୍ରାର ଲକ୍ଷ୍ୟ ଥିଲା । ତାରୁଣ୍ୟର ପ୍ରଥମ ପର୍ଯ୍ୟାୟରେ ବ୍ୟାଘ୍ର, ଭଲ୍ଲୁକର ଉପଦ୍ରବ ମଧ୍ୟ ଆମ୍ଭମାନଙ୍କୁ ଭୟଭୀତ କରିନାହିଁ । ସାନ୍ତାଳ ପଲ୍ଲୀରେ ରାତ୍ରୀ ଯାପନ କରି ସେମାନଙ୍କ ସହିତ ତାଳ ଦେଇ ଢଙ୍ଗ୍, ଟୁମୁସ୍ ନୃତ୍ୟ କରିବାରେ ପାଦ ଅଟକିଯାଇ ନାହିଁ, ବୁଢ଼ାବଳଙ୍ଗ ନଦୀର ଏ ତଟରୁ ସେ ତଟ ପର୍ଯ୍ୟନ୍ତ ପହଁରିବାରେ କ୍ଳାନ୍ତି ଆସିନାହିଁ ; ବରଂ ଏକ ଅହେତୁକ ବନ୍ୟ-ଆମୋଦ ଆମ୍ଭମାନଙ୍କୁ ମସଗୁଲ୍ କରି ରଖିଥିଲା ଯେମିତି ! ଏସବୁ କେବଳ ଅନୁଭୂତିର କଥା, ଭାଷାରେ ପ୍ରକାଶ କରିବାର କଥା ନୁହେଁ । କବି ଓ ନାଟ୍ୟକାର ଜୀବନକୁ ଏହା ମୋର ଅଜ୍ଞାତସାରରେ କିପରି ପ୍ରଭାବିତ କରିଥିଲା, ସେ କଥା ମୁଁ ଆଜି ବୁଝୁଛି । ଜୀବନର ଚଲା ପଥରେ ଯେଉଁସବୁ ଅଭୁଲା, ନିଶାଣଖୁଣ୍ଟମାନ ରହି-ଯାଇଛି, ପରିଣତ ବୟସରେ ତାର ସିଂହାବଲୋକନ କେବଳ ଦୁଃଖ ହିଁ ଦେଉଛି ! ସତରେ, ବୟସଟାଇ' ମନୁଷ୍ୟର ମହାଶତ୍ରୁ !

ସେ ଘଞ୍ଚ ବନାନୀ ଆଜି ପ୍ରାୟ ନାହିଁ କହିଲେ ଚଳେ । ଆଜି ଯେଉଁଠାରେ ଉଦଳା କଲେଜ ହୋଇଛି, ମୁଁ ଗ୍ରୁଫ ଥିଲାବେଳେ ସେଠାରେ ହିଂସ୍ର ମହାବଳ ରହୁଥିଲେ । ସିମିଳିପାଳର କେତେକ ଅଞ୍ଚଳକୁ ଛାଡ଼ିଦେଲେ ଅନ୍ୟତ୍ର ଜଙ୍ଗଲ ସବୁ ସଫା ହୋଇଆସିଲାଣି । ଯେଉଁ ବୃକ୍ଷ ଲତା ଆମ ଜୀବନ; ଜୀବନର ବହୁ ଆବଶ୍ୟକତା ପୂରଣ କରିବା ସହିତ ଯେ ଆମକୁ ଅମ୍ଳଯାନ ଯୋଗାଏ, ଦେଶକୁ ମରୁଭୂମି କରିବାରୁ ରକ୍ଷା କରେ, ଜଳଭଣ୍ଡାରକୁ ସାଇତି ରଖି କ୍ଷେତକୁ ଶସ୍ୟ ଶ୍ୟାମଳ କରାଏ, ତାକୁଇ' ସାମାନ୍ୟ ସ୍ୱାର୍ଥ ପାଇଁ ଆମେ କାଟି ପଦା କରିଦେଉଛୁ । ସରକାର ବନବିଭାଗ କରିଛନ୍ତି, ଆମେ ଲୁଚି ଛପି କାଟୁଛୁ । ଏ ଲୁଚକାଳି ଖେଳ ଯେ ଆମ ରାଜ୍ୟ ତଥା ଦେଶକୁ କାଳ ହୋଇଛି, ଏ କଥା ଆମେ କ'ଣ ଚିନ୍ତା କରୁଛୁ ? ବନ୍ୟ ସମ୍ପଦକୁ ରକ୍ଷା କରିବାକୁ ହେବ, ଦେଶକୁ ଶସ୍ୟଶ୍ୟାମଳ କରିବାକୁ ହେବ—ପ୍ରତ୍ୟେକ ଭାରତବାସୀର ଆଜି ଏହା ଧ୍ୟେୟ ହେବା ଉଚିତ । ନଚେତ୍ କାଳକ୍ରମେ, 'ସାହାରା' ସୃଷ୍ଟି ହେବା ଅସମ୍ଭବ ନୁହେଁ ।

କଥା ପ୍ରସଙ୍ଗରେ ମୁଁ ନିଜ କଥାଠୁଁ ଦୂରେଇଯାଉଛି । ଉପରେ ମୋ "ଝରଟ ଭୂଇଁ ଦର୍ଶନେ" କବିତାର କିୟଦଂଶ ଉଦ୍ଧାର କରିବାର ମାର୍ମିକ ଉଦ୍ଦେଶ୍ୟ ହେଉଛି ମୋର କାବ୍ୟ-କବିତା ରଚନା ସମ୍ପର୍କରେ କିଛି ସୂଚନା ଦେବା । ୧୨ । ୧୩ ବର୍ଷ ବୟସରୁ ମୁଁ କବିତା ଲେଖିବା ଆରମ୍ଭ କରିଥିଲି, ସଙ୍ଗୀତ

ରଚନା କରୁଥିଲି ଓ ଆମ ପିଲାଏ ଅଭିନୟ କରିବା ପାଇଁ କିଛି କିଛି ବଚନିକା (dialogue) ମଧ୍ୟ ଲେଖୁଥିଲି । ସେ ସମୟର ପ୍ରାୟ ଶହ ଶହ ଗୀତ ଓ କବିତା ଏପର୍ଯ୍ୟନ୍ତ ମୁଁ ପାଖରେ ସାଇତି ରଖିଛି । ଇଂରାଜୀ ଓ ବଙ୍ଗଳାରେ ମଧ୍ୟ କେତେକ କବିତା ଲେଖିଛି । ପଚିଶ, ଷାଠିଏ ବର୍ଷ ତଳର ସେ କାଗଜ, ସେ ହସ୍ତାକ୍ଷର, ସେ ହାତଅଙ୍କା ଚିତ୍ର, ସେ କାବ୍ୟ କବିତା, ଗଳ୍ପ ପ୍ରଭୃତି ଦେଖିବାର ସୁଯୋଗ ମୋର କେତେକ ବନ୍ଧୁ, କେତେକ ପାଠକ ଓ କେତେକ ହିତୈଷୀ ଗୁରୁଜନ ପାଇଛନ୍ତି । ଓଡ଼ିଶା ହାଇକୋର୍ଟର ବିଚାରପତି ସ୍ୱର୍ଗୀୟ ରାଜକିଶୋର ଦାସ ମହୋଦୟ ସେ ସବୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ ଓ ମୋତେ ଆଶୀର୍ବାଦ ଦେଇଥିଲେ । ତାଙ୍କର ଆତ୍ମଜୀବନୀ "ଅନେକ ଦିନର ଅନେକ କଥା"ରେ ସେ ମୋ ବିଷୟରେ ଲେଖିଛନ୍ତି ଓ ମୋର ନାଟକ ସବୁ ଦେଖି ପ୍ରଶଂସା କରିବା ଉଲ୍ଲେଖ କରିଛନ୍ତି । ମୋ ଜୀବନରେ କାବ୍ୟ, କବିତା, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ନାଟକ, ନାଟିକା, ବେତାର ନାଟିକା ଓ ଗୀତିନାଟ୍ୟ ପ୍ରଭୃତି ଯାହା ରଚନା କରିଛି, ତା'ର ଶତକଡ଼ା ଅଶୀଭାଗ ମୁଦ୍ରିତ ଓ ପ୍ରକାଶିତ । ଅବଶିଷ୍ଟ କୋଡ଼ିଏ ଭାଗ ପାଣ୍ଡୁଲିପି ମୋ ପାଖରେ ଗଚ୍ଛିତ ରହିଛି ।

ସେତେବେଳେ ମୋର ହୋଇଥାଏ ନବମ ଶ୍ରେଣୀ । ୧୯୩୭ ମସିହାର ମଧ୍ୟଭାଗ । ମୋର ଛାତ୍ର ସାଥୀ ବସନ୍ତ କୁମାର ଦାସ, ଶ୍ୟାମସୁନ୍ଦର ମହାପାତ୍ର, ବୀରେନ୍ ମହାନ୍ତି, ରାଧାଶ୍ୟାମ ନାୟକ ଓ ଫ୍ରେଜର ହଷ୍ଟେଲର କେତେକ ପିଲାଙ୍କୁ ନେଇ ଗୋଟିଏ ହାତଲେଖା ମାଗାଜିନ୍ ବାହାର କରିବାର ପ୍ରସ୍ତାବ ଦେଲି । ସର୍ବସମ୍ମତିକ୍ରମେ ଉକ୍ତ ପତ୍ରିକାର ନାମକରଣ କରାଗଲା "କିଶଳୟ" । ମୁଁ ହେଲି ତାର ସମ୍ପାଦକ । ସହସମ୍ପାଦକ ହେଲା ଶ୍ୟାମ । ପିଲାମାନଙ୍କର ବିଭିନ୍ନ ଲେଖା ସଂଗୃହୀତ ହୋଇ ବାଛିବଛା ସରିଲା ପରେ ବିଭିନ୍ନ ଚିତ୍ର ସହିତ 'କିଶଳୟ"ର ପ୍ରଥମ ଖଣ୍ଡ ପ୍ରକାଶ ପାଇଲା । ମହାରାଜାଙ୍କର State Pressରୁ 'ଭଞ୍ଜ ପ୍ରଦୀପ' ପତ୍ରିକା ନିୟମିତ ପ୍ରକାଶ ପାଉଥାଏ । ମାତ୍ର ଆମ ପତ୍ରିକାକୁ ଛାପା ହେବାର ସୁଯୋଗ ମିଳିଲା ନାହିଁ । ସୁନ୍ଦର ହସ୍ତାକ୍ଷର ଓ ସୁନ୍ଦର ଚିତ୍ରାବଳି ଥିଲା 'କିଶଳୟର' ବିଶେଷ ଆକର୍ଷଣ । ବନ୍ଧୁ ବସନ୍ତ କୁମାର ଓ ମୁଁ କେତେକ ଛବି ଆଙ୍କିଥିଲୁ, ଲେଖା ମଧ୍ୟ ଦେଇଥିଲୁ; କିନ୍ତୁ ତାର ଅଙ୍ଗସଜ୍ଜା, ପ୍ରଚ୍ଛଦପଟ ଓ ଅନ୍ୟାନ୍ୟ ଚିତ୍ରର ଶିଳ୍ପୀ ଥିଲା ମୋର ଅନ୍ୟତମ ସ୍କୁଲସାଥୀ କ୍ଷିତୀନ୍ଦ୍ର କୁମାର ଚକ୍ରବର୍ତ୍ତୀ । ପରବର୍ତ୍ତୀ କାଳରେ ସେ ଖୁବ୍ ସୁନାମ କରିଥିଲା ଜଣେ ଉଚ୍ଚଦରର ଚିତ୍ରଶିଳ୍ପୀ ଭାବରେ ଓ ଦିଲ୍ଲୀରେ ଥାଇ ମୋର "ଗରିବ" ନାଟକର ପ୍ରଚ୍ଛଦପଟ ଅଙ୍କନ କରି ପଠାଇଥିଲା । ଏହିଭଳି ଭାବରେ 'କିଶଳୟର' ଦ୍ୱିତୀୟ ଖଣ୍ଡ ମଧ୍ୟ ପ୍ରକାଶ ପାଇଲା ଏବଂ ସେହିଠାରେ ହିଁ ଉକ୍ତ ହାତଲେଖା ପତ୍ରିକାର ସମାପ୍ତି ଘଟିଲା । ସେହି

ପତ୍ରିକାକୁ ଦେଖି, ପଢ଼ି ଆମ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବ୍ରଜେନ୍ଦ୍ରଲାଲ ଦତ୍ତ ଓ ଅନ୍ୟ ଶିକ୍ଷକଗଣ ବିଶେଷ ପ୍ରଶଂସା କଲେ । ଆଗ୍ରହୀ ଛାତ୍ରମାନେ ମଧ୍ୟ ଜଣ ଜଣ କରି ପତ୍ରିକା ନେଇ ପଢ଼ୁଥିଲେ । କୈଶୋର ଅବସ୍ଥାରୁ "ନିଶାଳସ୍ୱ" ଆଉ ତାରୁଣ୍ୟ ଲାଭକରି ପାରିଲା ନାହିଁ । ପଢ଼ାପଢ଼ିର ବିଶେଷ ଚାପ ଯୋଗୁଁ ମନର ଆବେଗ ମନଭିତରେ ହିଁ ମରିଗଲା । ପ୍ରଥମ ଖଣ୍ଡ "ନିଶାଳସ୍ୱ"ରେ ପ୍ରକାଶ ପାଇଥିବା ମୋର ଗୋଟିଏ କବିତା ଏଠାରେ ଉଦ୍ଧାର କରୁଛି ।

## ପଥିକ, ତବ ବଂଶୀ ବାଜ୍

କିଏ ବିଦେଶୀ, ବାଇ ବଂଶୀ
ନଈର ବାଙ୍କେ ବାଙ୍କେ—
ଚଳାଅ ପାଦ ଧୀରେ ଧୀରେ ।
ଆପଣା ସୁରେ ମନ ନିବେଶି
ମରତେ ଯାଅ ସୁଧା ବରଷି;
କୋମଳ ତବ ତନୁ ପରଶି—
ପବନ ଯାଏ ବନ-ଉଦ୍ୟାନେ
ଦୂରେ, ଅନେକ ଦୂରେ···
ବତାସ ଗାଏ ଅଳସ ଗୀତ
ପତର ଫାଙ୍କେ ଫାଙ୍କେ !
ବନର ପରପାରେ—
ପଲ୍ଲୀ ଶ୍ୟାମଳ ପ୍ରାନ୍ତର ପରେ
ମୁଗ୍‌ଧ ପ୍ରାଣେ ଧେନୁ ଚରେ
ତନ୍ମୟ ତବ ସୁରେ,
ମେଲଣି ଗୀତ ଗାଇ ପକ୍ଷୀଟି
ଫେରଇ ତାର ଘରେ
ଶାନ୍ତ-ଘନ-ବୁକେ !

ପଲ୍ଲବିତ ବୃକ୍ଷ ତଳେ
ଖେଳଇ ଶିଶୁ ସାଥୀ ମେଳେ
ଧୂଳିର ଘର, ମନ୍ଦିର ତୋଳେ,
ହୃତଟି ଭାରି ଲାଗଇ ବଳେ
ଗୁମ ଗାନର ତାଳେ ତାଳେ,

"କୋଳକୁ ମୋର
ଫେରିଆ ଧନ", କୋମଳ ସୁରେ
ମା'ଆଜି ଡାକେ ।
ତୁମର ଛନ୍ଦେ, ସବୁର ଛନ୍ଦ,
ଲଗାଇ ଅଛ ମୋହନ ଫାନ୍ଦ,
ପଥିକ ! ତୁମ ବଂଶୀ ବାଜୁ,
ଜଗତ ତୁମ ଗୌରବେ ସାଜୁ
ସୁର ବିଭବେ ପୁଲକେ ନାଚୁ
ପାଗଳ ହୃଦୟ ମମ,
ଶୀତଳ ତବ ମଳୟ ସ୍ପର୍ଶେ
ମରତ କରୁ ନନ୍ଦନବନ,
ସନ୍ଧ୍ୟା ତବ ଗୌରବ ଗାଥା
ଗାଉ ହେ ଶଙ୍ଖେ ଶଙ୍ଖେ ।

---

## —ଗୃହ—

ତାରିଖ, ମସିହା ନେଇ ଜନ୍ମ, ଜନ୍ମସ୍ଥାନ, ବଂଶାବଳି, ପିତୃମାତୃ ପରିଚୟ, ବନ୍ଧୁବାନ୍ଧବ, କୁଟୁମ୍ବବର୍ଗ ଓ ବର୍ଷାବଳିକ୍ରମରେ ଶୈଶବର ଇତିବୃତ୍ତି—ସାଧାରଣତଃ ଆତ୍ମଜୀବନୀମାନଙ୍କରେ ଯେପରି ଦେଖିବାକୁ ମିଳେ; ଏହି ଆତ୍ମଜୀବନୀରେ ସେପରି ଶୈଳୀ ବା ପରମ୍ପରାର ପ୍ରୟୋଗ ମୁଁ କରିନାହିଁ । ଏହା ନିଶ୍ଚିତ ଭାବେ ଏକ ବ୍ୟତିକ୍ରମ ହୋଇଥିଲେ ମଧ୍ୟ, ଏହା ପଛରେ ଏକ ବଳିଷ୍ଠ ଯୁକ୍ତି ରହିଛି । ଗୋଟିଏ ଶିଶୁ ପ୍ରାୟତଃ ଛ' ସାତବର୍ଷ'ର ନହେବା ପର୍ଯ୍ୟନ୍ତ ତାର ଶିଶୁ ଜୀବନର କୌଣସି ବିଷୟ ମନେ ନଥାଏ । ଗୃହର ବୈଦେହୀ ଗ୍ରାଉଣ୍ଡ, ମାତୃକୋଳ ଗ୍ରାଉଣ୍ଡ, ପରିବାର ବାହାରକୁ ଆସିଲେ କିଛିଟା ତାର ମନେରହେ, ନଚେତ୍ ସେ ତାର ଜୀବନୀର ଏହି ଅଂଶରେ ଯାହା ଲେଖିବ, ସବୁ କେବଳ ଶୁଣାକଥା ହେବ ସିନା, ପ୍ରତ୍ୟକ୍ଷ ଅନୁଭୂତ କିଛି ରହିବ ନାହିଁ । ତେଣୁ ଏ ପ୍ରକାର ବ୍ୟତିକ୍ରମ ! ଯାହାହେଉ, ମୋର ପିତାମାତାଙ୍କ ବିଷୟରେ ସମ୍ପୂର୍ଣ୍ଣ ବିବରଣୀ ନ ଦେଲେ ଏ ଜୀବନୀ ନିଶ୍ଚିତ ଭାବେ ଅସମ୍ପୂର୍ଣ୍ଣ ରହିଯିବ । ମାତ୍ର ମୋ ଆପଣା ପରିବାର ସମ୍ପର୍କରେ ମୁଁ ଯଥାସ୍ଥାନରେ ଆଲୋକପାତ କରିବ ।

ମୋ ବାପା ଓ ବୋଉ (ସାଧୁଚରଣ ଓ ସତ୍ୟଭାମା) ଥିଲେ ଗୋଟିଏ ମୁଦ୍ରାର ଦୁଇପାର୍ଶ୍ଵ ଭଳି । ଏକ ପାର୍ଶ୍ଵରେ ସଂଯମ, ଶୃଙ୍ଖଳା ଓ କଠୋର ଶାସନ, ଅପର ପାର୍ଶ୍ଵରେ ଅପରିସୀମ ସ୍ନେହ, ବାତ୍ସଲ୍ୟ, ଓ ପରିପୂର୍ଣ୍ଣ ମମତା । ଚରମପନ୍ଥୀ ଓ ନରମ ପନ୍ଥୀର ଅପୂର୍ବ ସମନ୍ୱୟ । କୌଣସି ଦୋଷତ୍ରୁଟି ଯୋଗୁଁ ବାପା ଯେଉଁଦିନ କଠୋର ଶାସ୍ତି ଦିଅନ୍ତି, ଅବା ମୋ ଖାଇବା ବନ୍ଦ କରନ୍ତି, ବୋଉ ସେଦିନ ଅଖିଆ ରହେ, ଅନିଦ୍ରା ରହି କାନ୍ଦି କାନ୍ଦି ମରେ । ଭାଗ୍ୟରେ ଥିଲେ ହିଁ ସନ୍ତାନକୁ ଏହିଭଳି ବାପ-ମା ମିଳନ୍ତି । ଆଜି ସେମାନଙ୍କ ଅବର୍ତ୍ତମାନରେ ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ଯେ ସେଦିନର ସେଇ କଠୋର ଶାସନ ତଥା ସ୍ନେହବୋଳା ମମତା ମୋତେ ମଣିଷ ପରି ମଣିଷ କରିଛି, ଭଲମନ୍ଦ ବସ୍ତୁର କରି ଠିକଣା ବାଟରେ ଯିବାକୁ ପ୍ରେରଣା ଦେଇଛି ।

ବାପା ଏଣ୍ଟ୍ରାନ୍ସ ପାଶ୍ କରି ମୟୂରଭଞ୍ଜ ଷ୍ଟେଟ୍ ଟ୍ରେଜେରୀରେ କାର୍ଯ୍ୟ କରୁଥିବା କଥା ପୂର୍ବରୁ କହିଛି । ଇଚ୍ଛା ଥିଲେ, ପ୍ରମୋଶନ୍ ପାଇ ଆକାଉଣ୍ଟାଣ୍ଟ ହେଲେ । ଅଫିସରେ ତାଙ୍କର ବହୁତ ଖାତିର୍ ଥିଲା । ବିଶାଳ ବ୍ୟକ୍ତିତ୍ୱ ଓ ନ୍ୟାୟବୋଧ ଲାଗି ସେ ଅଳ୍ପ କେତେଜଙ୍କ ନିକଟରେ ଅପ୍ରିୟ ହେଲେ ମଧ୍ୟ, ଅଧିକାଂଶ ସହକର୍ମୀଙ୍କର ମିତ୍ର ଥିଲେ । କର୍ତ୍ତବ୍ୟନିଷ୍ଠା ଓ କାର୍ଯ୍ୟଦକ୍ଷତା ଯୋଗୁଁ ଉପରିସ୍ଥ କର୍ମଚାରୀମାନେ ତାଙ୍କୁ ଶ୍ରଦ୍ଧା କରୁଥିଲେ । ତାଙ୍କର ଗୋଟିଏ ଉପଦେଶ ମୁଁ ଜୀବନସାରା ମନେରଖିଛି । "ଭଗବାନଙ୍କ ଛଡ଼ା ଆଉ କାହାରିକୁ କିଛି ମାଗିବୁନି କି ଖୋସାମଦ କରିବୁ ନାହିଁ ।"

ଇଂରାଜୀ ଓ ଗଣିତରେ ବାପାଙ୍କର ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ପ୍ରତିଦିନ ସକାଳେ ଘଣ୍ଟାଏ ଦୁଇଘଣ୍ଟା ସେ ମୋତେ ପଢ଼ାଉଥିଲେ । ସେ ବିଶେଷ ଗୁରୁତ୍ୱ ଦେଉଥିଲେ ବର୍ଣ୍ଣାଶୁଦ୍ଧି ଉପରେ । ପରୀକ୍ଷାରେ ଭଲ ନମ୍ବର ରଖିଲେ ବହୁତ ଖୁସି ହେଉଥିଲେ ଓ ଆହୁରି ଭଲ କରିବାକୁ ଉତ୍ସାହିତ କରୁଥିଲେ । କଳା ପ୍ରତି ମଧ୍ୟ ତାଙ୍କର ଖୁବ୍ ଝୁଙ୍କ୍ ଥିଲା । ନୃତ୍ୟ, ଗୀତ, ଯାତ୍ରା, ଥିଏଟର, ସିନେମା ଓ ପାଲା ପ୍ରଭୃତି ଯେଉଁଠି ଯାହା ହୁଏ, ପ୍ରାୟତଃ ସେ ଦେଖିବାକୁ ଯାଉଥିଲେ ଓ ମୋତେ ସାଙ୍ଗରେ ନେଉଥିଲେ । ବାରିପଦାର ପୃଥିବୀ ପ୍ରସିଦ୍ଧ 'ଛଉ' ନୃତ୍ୟଠୁ ଆରମ୍ଭ କରି, ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସ, ନାଟ୍ୟାଚାର୍ଯ୍ୟ ବାଲକୃଷ୍ଣ ମହାନ୍ତି (ସୁଶୀଳ ମାଳତୀ, ବୀଣା ପରିଣୟ, ଅମରବିଳାସ ପ୍ରଭୃତି ବହୁ ଗୀତାଭିନୟ ରଚୟିତା)ଙ୍କ ଅପେରା, ଇଂରାଜୀ ସିନେମା 'Tarzan the Apeman' (Edgar Rice Burrughଙ୍କ ଲେଖା), ବଙ୍ଗଳା ସିନେମା 'ସୋନାର ସଂସାର', ପ୍ରମଥେଶ ବଡ଼ୁଆଙ୍କ 'ଦେବଦାସ', 'ଗୃହଦାହ' ପ୍ରଭୃତି ଚଳଚିତ୍ର, ସେ ସମୟରେ ପ୍ରସିଦ୍ଧ ପାଲା ଗାୟକ ନରିନାଥ, ହରିନାଥ, କୃଷ୍ଣ ଚକ୍ରବର୍ତ୍ତୀନଙ୍କ ପରିବେଷିତ ପାଲାଗାୟନ ଓ

ବାଣପଡ଼ା 'Friends' Recreation Club' ଦ୍ୱାରା ଅଭିନୀତ ସମସ୍ତ ମଞ୍ଚ-ନାଟକ ମୁଁ ତାଙ୍କର ସାଙ୍ଗରେ ବସି ଦେଖିଛି ପଞ୍ଚମ ଶ୍ରେଣୀରୁ ମ୍ୟାଟ୍ରିକ୍ୟୁଲେଶନ୍ କ୍ଲାସ ପର୍ଯ୍ୟନ୍ତ । ରାମଦାସ ବାବାଜୀଙ୍କ ସଂକୀର୍ତ୍ତନ ଶୁଣି ମୋ ମନ ଭିତରେ ଏକ ଧାର୍ମିକ ଆନ୍ଦୋଳନ ସୃଷ୍ଟି ହୋଇଥିଲା ମୋ ଅଜାଣତରେ । ବଙ୍ଗଳା ଭାଷାରେ ଲିଖିତ "ମାନମୟୀ ଗାର୍ଲସ୍ ସ୍କୁଲ୍", "ରାତମତ ନାଟକ" ଓ "ସାଜାହାନ" ନାଟକର ଅଭିନୟ ଦେଖି ମନ୍ତ୍ରମୁଗ୍ଧ ହୋଇଯାଉଥିଲି । ଏହିପରି ଆହୁରି ଅନେକ ଅଭିଜ୍ଞତା ଅଛି, ଲେଖିଲେ ସରିବ ନାହିଁ । ମାତ୍ର ଏ ସମସ୍ତ ଅନୁଭୂତି ଯେ ପରବର୍ତ୍ତୀ କାଳରେ ମୋତେ ନାଟ୍ୟକାର ହେବାଲାଗି ପ୍ରେରଣା ଯୋଗାଇଥିଲା, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମୋ ନିଜ ବୋଉ ସତ୍ୟଭାମାଙ୍କର ସାହିତ୍ୟ ଓ ସଙ୍ଗୀତ ପ୍ରତି ବିଶେଷ ଅନୁରାଗ ଥିଲା । ଶୁଣିଛି, ସେ ଗୀତ ଓ କବିତା ସବୁ ଲେଖୁଥିଲେ । ତାଙ୍କ ହସ୍ତାକ୍ଷର ମଧ୍ୟ ଉତ୍ତମ ଥିଲା । ମୋ ହସ୍ତାକ୍ଷର ଭାରି ଭଲ, ମୁଁ ଭଲ ଗୀତ ଗାଏ, ନାଚେ, ଅଭିନୟ କରେ—ଏ ସକଳ ଗୁଣ ବୋଧହୁଏ ମୋ ବୋଉଠାରୁ ମୁଁ ଉତ୍ତରାଧିକାର ସୂତ୍ରେ ଲାଭ କରିଥିଲି । ସେ ବଞ୍ଚି ରହିଥିଲେ, ମୋ ଜୀବନର ଗତିପଥ ହୁଏତ ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଥାନ୍ତା ।

ମୋ ପାଳିକା ବୋଉ ସତ୍ୟଭାମାଙ୍କର କୌଣସି ସନ୍ତାନ ସନ୍ତତି ଜୀବିତ ନ ଥିବାରୁ ସେ ମୋତେ ପୁଅଠୁଁ ବଳି ଅଧିକ ସ୍ନେହ, ମମତା ଦେଇ ଲାଳନପାଳନ କରିଥିଲେ । ଦେବକୀ ଅପେକ୍ଷା ଯଶୋଦା ଯେ ବଡ଼, ଏହା ସେ ପ୍ରମାଣିତ କରିଯାଇଛନ୍ତି । ପୋଷ୍ୟପୁତ୍ର ହୋଇ ମୁଁ ଯେ ଆସିଥିଲି, ଏ ଧାରଣା ମୋର ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ (ଯଦିଚ ସେତେବେଳକୁ ମୋ ସାନଭାଇ କାଳିଚରଣ ଓ ଭଉଣୀ ଶାନ୍ତିଲତା ଜନ୍ମଗ୍ରହଣ କରିସାରିଥିଲେ) ନ ଥିଲା ।

ରବି ସେଠୀ ବୋଲି ଆମର ଗୋଟିଏ ସାଙ୍ଗ ତା' ବାପ, ମା, ଭାଇ, ଭଉଣୀମାନଙ୍କ ସହିତ ସରାଳୀ ନଦୀ କୂଳରେ ବାସ କରୁଥିଲା । ସେଇ ନଦୀଟି ମଧ୍ୟ ଆମ ଘର ପଛପଟ ଦେଇ ବହିଯାଉଥିଲା । ସରାଳୀକୁ ନଦୀ ନ କହିଲେ ବି ଚଳିବ; କାରଣ ଖୁବ୍ କମ୍ ଚଉଡ଼ା, ଖରାଦିନେ ପ୍ରାୟ ଶୁଷ୍କ । କିନ୍ତୁ ବର୍ଷାଦିନେ ଝରପରି ସେହି ଛୋଟ ନଈଟିର ସ୍ରୋତ ଏଭଳି ପ୍ରଖର ଯେ କୁଟା ଖଣ୍ଡିକ ଦି'ଖଣ୍ଡ । ବର୍ଷାଋତୁରେ ତା'ର ଭୟଙ୍କର ସର୍ବଗ୍ରାସୀ ରୂପ ଯିଏ ଦେଖିବ ସେ କଳ୍ପିତ ଭାବରେ ବୁଝିପାରିବ ଯେ, "କ୍ଷୁଦ୍ର ସର୍ପର ବିଷ ଉତ୍କଟତର । ତାର ପ୍ରଖର ସ୍ରୋତରେ "ଘରଯାଏ ଭାଙ୍ଗି, କାଛଯାଏ ଗଢ଼ି, ପିଲାଏ କହନ୍ତି ଦେଖ ମାଡ଼ିଆସେ ବଢ଼ି ।"

ସେହି ରବି ଘରେ ଆମର ଆଖଡ଼ା ହୁଏ । ଛୁଟିଦିନ ମାନଙ୍କରେ ଆମେ ପିଲାଏ ସେଇଠି Rehearsal କରୁ । ମୋ ଲେଖା ନାଟିକା 'ବାଜିରାଉତ', 'ବଣୁ ମହାରଣା' ପ୍ରଭୃତି ଶିଖୁ । ଏକାଧାରରେ ମୁଁ ଲେଖକ, ଗାୟକ, ଅଭିନେତା ଓ ନିର୍ଦ୍ଦେଶକର ଭୂମିକା ଗ୍ରହଣ କରିଥାଏ । ଯେଉଁଦିନ ନାଟକ ମଞ୍ଚସ୍ଥ ହୁଏ, ସେଦିନ ଆମ୍ଭମାନଙ୍କ ମନରେ କି ଉତ୍ସାହ, କି ଉଦ୍ଦୀପନା ! ରବିର ମା ଲୁଗାପଟା, ଶାଢ଼ୀ, ବିଛଣା ଗୁଦର କାଟିବାକୁ ଆଣିଥାନ୍ତି, ତାକୁହି ଆମେ ବ୍ୟବହାର କରୁ । ଖଣ୍ଡେ ଗୁଦର Drop Scene ହୁଏ, ବାରଣ୍ଡା ହୁଏ Stage । ଶାଢ଼ୀ ଓ ଧୋତି dress ହୁଏ, ଚୂନପାଉଁଶ powderର କାମ ଦିଏ, ତାଙ୍କ ଘରର ସିନ୍ଦୂର କପାଳରେ ପଶପାଟି ହୁଏ । ଧୋବା ସାହିର ଛୋଟଛୋଟ ପିଲାଙ୍କୁ ଧରିଆଣି ଆଗରେ ବସାଉ । ସେମାନେ ହୁଅନ୍ତି ଆମ ନାଟକର ଦର୍ଶକ । ରବିର ମା ଓ ସାହି ପଡ଼ିଶାର କେତେକ ଝିଅବୋହୂ ମଧ୍ୟ କୌତୂହଳ ମେଣ୍ଟାଇବାକୁ ଆସି ବସନ୍ତି । ଟିଣ ବାଜିଆ ହୋଇ concert ବାଜେ ।

ଏହିଭଳି ଗୋଟିଏ ରବିବାରରେ 'ବଣୁ ମହାରଣା' ଥିଏଟର୍‌ର ଆୟୋଜନ ହୋଇଥାଏ । Prompting ଶୁଣି ପିଲାଏ ଆମର ଅଭିନୟ କରୁଥାନ୍ତି । ମୁଁ ସେଦିନ ଆବିର୍ଭୂତ ହୋଇଥାଏ "ନିୟତି" ଭୂମିକାରେ । ସଂଖ୍ୟାଲଘୁ ଦର୍ଶକ-ଦର୍ଶୀକାଙ୍କ ଆଖି ଆଗରେ ଅବତୀର୍ଣ୍ଣ ହୋଇଥାନ୍ତି ଗଜପତି ନରସିଂହ ଦେବ, ବଣୁ ମହାରଣା ଓ ବାରଣହ ବଢ଼େଇଙ୍କ ପ୍ରତୀକ ଗୋଟିଏ ବାଳକ । ଅଭିନେତାଗଣ ଭୁଲ୍‌ଠିକ୍ ମିଶାଇ dialogue (କଥନିକା) କହୁଥାନ୍ତି । Prompter ଶ୍ୟାମର କଣ୍ଠ ବାହାରକୁ ପରିଷ୍କାର ଶୁଭୁଥାଏ । ହଠାତ୍ ଗଜପତି ନରସିଂହ ଦେବ (ସେ ଭୂମିକାରେ ଅଭିନୟ କରୁଥାଏ ମୋର ପଡ଼ିଶା ତଥା ଅତିପ୍ରିୟ ସାଙ୍ଗ ଶୈଳେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ) ଆତ୍ମପ୍ରକାଶ କରି ବାରଣ ବଢ଼େଇଙ୍କ ପ୍ରତୀକକୁ କହୁଥାନ୍ତି, "କୋଣାର୍କ ଦେଉଳର ମୁଣ୍ଡି ମାରି ନ ପାରିଲେ ତୁମ ବାରଣହ ବଢ଼େଇଙ୍କ ମୁଣ୍ଡକାଟ ହେବ"—ସେତିକିବେଳେ ଏକ ଅଘଟଣ ଘଟିଗଲା । ହାତରେ ଯଷ୍ଟି ଖଣ୍ଡେ ଧରି ବାହାରୁ ସହସା ପ୍ରବେଶ କଲେ ଶୈଳେନ୍ଦ୍ରର ବାପା ୰ ଦୁର୍ଗାନନ୍ଦ ଚଟ୍ଟୋପାଧ୍ୟାୟ । ବାଡ଼ିରେ ବାଡ଼ିଏ ଦେଲେ ତାଙ୍କ ପୁଅ ଶୈଳେନ୍ଦ୍ର ଓରଫ ଗଜପତି ନରସିଂହ ଦେବଙ୍କୁ । ତାପରେ ଦାନ୍ତ କଡ଼ମଡ଼ କରି ରାଗରେ ମୋ ଆଡ଼କୁ ଚାହିଁ କହିଲେ, "ଓଇ ଛୋକରା ! ଆମାର ଛେଲେଟାକେ ତୁମି ନଷ୍ଟ କରେଦିଲେ । ଆଜ ସାଧୁବାବୁକେ (ମୋ ବାପାଙ୍କୁ) ବୋଲେ ତୋମାକେ ସାଦାଡ଼ କରେ ଦିଚ୍ଛି ।"

ତାଙ୍କର ପ୍ରସ୍ଥାନ ସଙ୍ଗେ ସଙ୍ଗେ ନଇଁ ଆସିଲା ଆମ ନାଟକର ଅକାଳ-ଯବନିକା । ଅଭିନେତା ଓ ଦର୍ଶକଗଣ ଯିଏ ଯୁଆଡ଼େ ଚମ୍ପଟ୍...କୁ ।

ଏଥର ଖଣ୍ଡା ଖେଳ କଥା ସଂକ୍ଷେପରେ କହିବ । ସାଙ୍ଗପିଲାମାନେ ଦୁଇ ଦଳରେ ବିଭକ୍ତ ହୋଇ ଦିନେ ଦିନେ ଏଇ ଖେଳ ଖେଳୁ । କାଠ ଓ ବାଉଁଶର ଶ୍ରେଷ୍ଠବଡ଼ ଖଣ୍ଡା ସବୁ ଅବସର ସମୟରେ ତିଆରି ହୋଇଥାଏ । ଉଭୟପକ୍ଷ ଏହି ଖଣ୍ଡାଧରି ପରସ୍ପରକୁ ଆକ୍ରମଣ କରୁ । ଏହି ଖଣ୍ଡା ଖେଳରେ ଗୋଟିଏ ନିୟମ କଡ଼ାକଡ଼ି ଭାବେ ପାଳନ କରାଯାଏ । ଅର୍ଥାତ୍ କୌଣସି ପକ୍ଷର କେହି ସୈନିକ ଯଦି ସାମାନ୍ୟ ହେଉ କି ଅସାମାନ୍ୟ ହେଉ ଆଘାତ ପାଇ ଉଃ ଆଃ ଶବ୍ଦ କରେ, ସେ ତତ୍କ୍ଷଣାତ୍ ମୃତ ବୋଲି ଘୋଷିତ ହୁଏ ଓ ପଡ଼ିଆରୁ ବାହାରିଯାଏ । ସେଥିପାଇଁ ଯେତେ କ୍ଷତବିକ୍ଷତ ହେଲେ ମଧ୍ୟ ବୀର ସୈନିକ ଭାବେ ସାହସର ସହିତ ଲଢ଼ିବା ହେଉଛି ନିୟମ ।

ରାସ୍ତାରେ ଯାଉଥିବା ଲୋକେ ଏ ଖଣ୍ଡା ଖେଳ ଦେଖିବାକୁ ଟିକିଏ ଛିଡ଼ା ହୋଇଯାନ୍ତି, ମୁରୁକି ମୁରୁକି ହସି ଉପଭୋଗ କରନ୍ତି ଓ ଯେଝା ବାଟରେ ଚାଲିଯାନ୍ତି । ଏହି ଖେଳର ସ୍ରଷ୍ଟା ହେଉଛି ମୋର ଜଣେ ଅତିପ୍ରିୟ ସାଥୀ ଶ୍ରୀ ଗୁରୁପ୍ରସାଦ ମହାନ୍ତି (ଗୁନା) । ସେ ଓ ଶାନ୍ତିମୟ ପତି (ଦୂରଦର୍ଶନର ନିର୍ଦ୍ଦେଶିକା ଟ ବୀଣା ଦେବୀଙ୍କ ସ୍ୱାମୀ) ମୋ ଉପର କ୍ଲାସରେ ପଢ଼ୁଥିଲେହେଁ ଖଣ୍ଡା ଖେଳ ଓ ଅନ୍ୟାନ୍ୟ ସମସ୍ତ ଖେଳରେ ଭାଗ ନେଉଥିଲେ । ଗୁରୁପ୍ରସାଦଙ୍କ ଇଂରାଜୀ ଉଚ୍ଚାରଣ ଥିଲା ଠିକ୍ ସାହେବଙ୍କ ଭଳି । ସପ୍ତମ ଶ୍ରେଣୀ ବେଳକୁ ସେ ଇଂରାଜୀରେ ଅନର୍ଗଳ କହି ପାରୁଥିଲା । ତାର ସାହେବୀ ଢଙ୍ଗ, ଗୋରା ଟକଟକ ଚେହେରା ଓ ଇଂରାଜୀ କହିବାର ଭଙ୍ଗୀ ଯୋଗୁଁ ଆମେ ତାକୁ 'ଉକୁ ସାହେବ' ବୋଲି ଡାକୁଥିଲୁ । ପରବର୍ତ୍ତୀ କାଳରେ ସେହି ମେଜର ଗୁରୁପ୍ରସାଦ ମହାନ୍ତି (ଉକୁ ସାହେବ) ରେଭେନ୍ସା କଲେଜରେ ଇଂରାଜୀ ଅଧ୍ୟାପକ ହୋଇ ଉତ୍ତରୋତ୍ତର ଉନ୍ନତି ଲଭିକରି D.P.I. ଅଫିସରେ Deputy D.P.I. ହୋଇଥିଲେ । ତାପରେ ଭୁବନେଶ୍ୱର B.J.B. କଲେଜର Principal ଥାଇ ଅବସର ଗ୍ରହଣ କରିଥିଲେ । ଓଡ଼ିଆରେ ତାଙ୍କର 'ସମୁଦ୍ର ସ୍ନାନ' କବିତା ପୁସ୍ତକ ଭାରତୀୟ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହୋଇ ବିଶେଷ ପ୍ରସିଦ୍ଧି ଲାଭ କରିଅଛି ।

ବାରିପଦା ହାଇସ୍କୁଲର ଫ୍ରେଜର୍ ହଷ୍ଟେଲ ପଛପଟେ ଯେଉଁ ରାସ୍ତାଟି ପରେଡ଼ ପଡ଼ିଆ ସହିତ ଗୋଲପବାଗକୁ ସଂଯୁକ୍ତ କରୁଛି, ସେ ରାସ୍ତାରେ ରାତି ଦଶଟା ପରେ ଲୋକ ଯାତାୟତ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ । ଏହା ପଛରେ ଗୋଟିଏ ଶ୍ରେଷ୍ଠ ଇତିହାସ ରହିଛି । ରାସ୍ତାର ଅନ୍ୟ ପଟରେ ଅର୍ଥାତ୍ ହଷ୍ଟେଲର ବିପରୀତ ପାର୍ଶ୍ୱରେ ଗୋଟିଏ ଟିଣଛାତ ଘରେ ପ୍ରାୟ ପଚିଶ ବର୍ଷ ତଳେ ଏକ ବଙ୍ଗୀୟ ପରିବାର ବାସ କରୁଥିଲେ । ଦୁର୍ଭାଗ୍ୟବଶତଃ ଗୃହସ୍ୱାମୀଙ୍କ ଯକ୍ଷ୍ମା ରୋଗରେ ଅକାଳ ମୃତ୍ୟୁ ଘଟିଲା । ସେ ସମୟରେ ଯକ୍ଷ୍ମାରୋଗକୁ ଲୋକେ ଏତେ

ଭସ୍ବ କରୁଥିଲେ ଯେ, ସେ ରାସ୍ତାରେ ଯିବା ଆସିବା ବନ୍ଦ ହୋଇଗଲା । ତାଛଡ଼ା ପ୍ରାଣଭସ୍ବରେ ଉକ୍ତ ବଙ୍ଗୀସ୍ବ ପରିବାରର ସମସ୍ତେ ଘରେ ବାହାରେ ତାଲା ପକାଇ ଦେଇ ସେ ଘରଗୁଡ଼ିକ କଲିକତା ପଳାଇଗଲେ । ଝର୍ଣ୍ଣିଏ ହେଲେ ଆସବାବପତ୍ର କମ୍ବା ସେ ଘରର କୌଣସି ଜିନିଷ ସେମାନେ ସାଙ୍ଗରେ ନେଇଯିବାକୁ ସାହସ କଲେ ନାହିଁ । ବହୁବର୍ଷ ପର୍ଯ୍ୟନ୍ତ ଘରଟି ପରିତ୍ୟକ୍ତ ହୋଇ ରହିଥିବା ହେତୁ, ମୋ ପଢ଼ିବା ସମସ୍ବକୁ ତାହା 'ଭୂତଘର' ବୋଲି ନାମିତ ହୋଇସାରିଥିଲା । ହଷ୍ଟେଲ ପିଲାମାନେ ରାତି ଅଧରେ ସେ ଘରର ଟିଣଛାତ ଉପରେ ଢେଲା ପଥର ସବୁ ଦୁମ୍‌ଦାମ୍ ହୋଇ ପଡ଼ିବାର ଶୁଣିଥିଲେ ଓ ଗୋଟିଏ ଶ୍ବେତମୂର୍ତ୍ତିକୁ ସେ ଘରର ଭିତର ବାହାର ହେବାର ଝରକାବାଟେ ଦେଖୁଥିଲେ । ଏହି ସମସ୍ତ ରୋମାଞ୍ଚକର ଘଟଣା ଯୋଗୁ ସେ ରାସ୍ତାରେ ଜନ-ସମାଗମ ବନ୍ଦ ହୋଇଯାଉଥିଲା ରାତି ଦଶଟା ପରେ ପରେ । ମୋ ପଢ଼ିଲା ବେଳକୁ ଏହା ପ୍ରାୟ ଷାଠିଏ ବର୍ଷ ତଳର ଗୁଜବ-ପ୍ରସୂତ ଭୂତ-ଉପଦ୍ରବର ରୋମାଞ୍ଚକର ଜନଶ୍ରୁତି ଯେପରି ଏକ ବିସ୍ମୟିକାମସ୍ବ ଆଲେଖ୍ୟ ବହନ କରି ଆସୁଥାଏ !

ମୁଁ ଆଉ ବସନ୍ତ ମନେ ମନେ ଠିକ୍ କଲୁ, ଦିନେ ରାତି ଏଗାରଟା ପରେ ସେଇ ଘରେ ପଶି ଭୂତ ମହାଶସ୍ବଙ୍କୁ ନିଜ ଆଖିରେ ଦେଖିବା । ଏହି ଯୋଜନା ଅତି ଦୁଃସାହସିକ ବୋଧ ହେଉଥିଲେ ମଧ୍ଯ, ଭୂତକୁ ଭେଟିବାର ଆଗ୍ରହ ଆମ ମନରେ ଏକ ଅହେତୁକ ଆଗ୍ରହ ସୃଷ୍ଟି କରିବା ସହିତ ଗୁରୁତ୍ବହୀନ-ଆଶାର ସଞ୍ଚାର କରିଥିଲା । ଏହି ଅଭିଯାନରେ ଆମେ ଖାଲିସ୍ ମହାନ୍ତି ଓରଫ ବୀରେନ୍ (ଜଣେ ସହପାଠୀ ଓ ଫ୍ରେଜର୍ ହଷ୍ଟେଲର ଅନ୍ତେବାସୀ)ର ସହଯୋଗ ଲୋଡ଼ିଲୁ । ବହୁ କଷ୍ଟରେ ସେ ଆମ ପ୍ରସ୍ତାବରେ ସହମତ ହୋଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ଦିନ ସ୍ଥିର କରି ଅନ୍ଧାର ରାତିରେ ଭୂତଘରେ ପଶିବାକୁ ଠିକ୍ କଲୁ । ଅନ୍ଧାର ରାତି ନହେଲେ ଭୂତ ବା ଦେଖାଦେବ କାହିଁକି ? ତା' ଜୀବନକୁ କଣ ଭସ୍ବ ନାହିଁ ? ତେଣୁ 'ଯାତ୍ରା ଦେଖି ଯାଉଛୁ' ବୋଲି ଘରେ କହି ବସନ୍ତ ଆଉ ମୁଁ ଯଥା ସମସ୍ବରେ ହଷ୍ଟେଲରେ ଯାଇ ପହଞ୍ଚିଲୁ । ବୀରେନ୍‌ଟା ଭାରି ଡରକୁଳା । ସେ କୌଣସି ମତେ ଭୂତ ଘରେ ପଶିବ ନାହିଁ ବୋଲି ସିଧା ସଳଖ ମନା କରିଦେଲା । ତେଣୁ ତାକୁ ରାସ୍ତା ମଝିରେ ଛାଡ଼ି କରିଇ ଆମେ ଦୁଇବନ୍ଧୁ ରାସ୍ତାକଡ଼କୁ ଗଡ଼ିଲୁ । ତାକୁ କହିଗଲୁ, ଆମ ଡାକ ଶୁଣିବାମାତ୍ରେ ସେ ହଷ୍ଟେଲ ପିଲାଙ୍କୁ ଡାକି ଆମକୁ ସାହାଯ୍ୟ କରିବାକୁ ଆଗେଇ ଆସେ ଯେମିତି !

ସେହି ରାତିଟି ଥିଲା ଛାତ୍ର ଜୀବନର ଏକ ଅବିସ୍ମରଣୀସ୍ବ ରାତି । ଅନ୍ଧାରିତ ଆକାଶରେ ଅସଂଖ୍ୟ ଚିନା ଚିନା ତାରା ଫୁଲ ସବୁ କିଏ ଯେମିତି ବିଞ୍ଚି ଦେଇଛି । ସେ ତାରା ସବୁ ଆଖି ମିଟିମିଟି କରି ସତେ ଯେମିତି ଆମକୁ ଚାହିଁ ରହିଛନ୍ତି, ଆଉ

ଧାରେ ଜହ୍ନ କାହିଁ କେତେ ଦୂରରେ ଗଛ ଆଢ଼ୁଆଳରେ ଥାଇ ଭୌତିକ ଇନ୍ଦ୍ରଜାଲ ସୃଷ୍ଟି କରୁଛି । ଟିକିଏ ଦେଖା ଦେଇ ପତ୍ରର ଫାଙ୍କରେ ପୁଣି ଲୁଚି ଯାଉଛି । ସେହି ସମ୍ପୂର୍ଣ୍ଣ ଭୌତିକ ପରିବେଶ ମଧ୍ୟରେ ବସନ୍ତ ଆଉ ମୁଁ ଅତି ସନ୍ତର୍ପଣରେ ପାଦ ବଢ଼ାଇଲୁ । ଆମ ପାଦରେ ପୁରାଜୋତା, ପରିଧାନରେ ହାପ୍ ପ୍ୟାଣ୍ଟ ଓ ଜାମା । ବସନ୍ତ ହାତରେ ଗୋଟିଏ ଟର୍ଚ୍ଚ । କାଳେ ଅନାବନା ଗଛଲଟା ଭିତରେ ଥିବା କୌଣସି ଜନ୍ତୁ ଆମକୁ ଦଂଶନ କରିବ, ଏତିକି ମାତ୍ର ଭୟ, ନହେଲେ ଛାତିରେ ଛାତିଏ ବଳ ଓ ସାହସ ଧରି ଆମେ ଭୂତଘର ଆଡ଼କୁ ଆଗେଇଲୁ । କଥା ହେଲା, ଏକା ସଙ୍ଗେ ଏକ ପଟୁ ନଯାଇ ପାଚେରି ଡେଇଁ ଘର ଅଗଣାକୁ ପଶିବା । କାରଣ ଶକ୍ତ ତାଲାକୁ ଭାଙ୍ଗି ସଦରବାଟ ଦେଇ ଖଞ୍ଜାରେ ପଶିବା ଅସମ୍ଭବ ଥିଲା । ସେଇଆ କଲୁ । ବସନ୍ତ ଘରର ପଛପଟକୁ ଚାଲିଗଲା ପରେ ମୁଁ ଯାଇ ପାଚେରି ପାଖରେ ପହଞ୍ଚିଲି । ଅନ୍ୟପଟେ ବସନ୍ତ କଣ କରୁଛି ଜାଣିବାର ଉପାୟ ନଥିଲା । ବର୍ତ୍ତମାନ ମୁଁ ମୋ ନିଜକଥା କହୁଛି । ବହୁତ ଡିଆଁ-ଡେଇଁ କରି ଶେଷରେ ପାଚେରିର ଫଟା ଅଂଶର ଆଁଶକୁ ଧରି ବହୁ ଆୟାସ ପରେ ପାଚେରି ଉପରେ ଚଢ଼ିଲି ଓ ଭୁସ୍‌କରି ଅଗଣା ଭିତରକୁ କୁଦିପଡ଼ିଲି । ଘାସଲଟା ଅନାବନା ଅରମା ଗଛରେ ଅଗଣାର ଚଟାଣ ବାରି ହେଉ ନଥିଲା । ସେଇ ଜଙ୍ଗଲ ଭିତରକୁ ଡେଇଁ ପଡ଼ିବା ସାଙ୍ଗେ ସାଙ୍ଗେ ମୋ ପାଦତଳୁ ସର୍ ସର୍ ହୋଇ କିଏ ସବୁ କୁଆଡ଼େ ଚାଲିଗଲେ, କଳା-ଅନ୍ଧାର ଭିତରେ କିଛି ଠଉରି କରି ପାରିଲି ନାହିଁ । ବହୁବର୍ଷ ଧରି ନିର୍ଭୟରେ ବାସ କରୁଥିବା ସେଇ ଅନାବନା ଜଙ୍ଗଲର ଅଧିବାସୀମାନଙ୍କ ଉପରେ କେହି ଯେ ହଠାତ୍ କୁଦିପଡ଼ିବ, ଏକଥା ସେମାନେ କେବେହେଲେ ଭାବି ନଥିଲେ । ସେଇଥିପାଇଁ ପ୍ରାଣ ଭୟରେ ବ୍ୟାକୁଳ ହୋଇ ପଳାୟନ କରିବା ବ୍ୟତୀତ ସେ ଜୀବଜନ୍ତୁମାନଙ୍କର ଗତ୍ୟନ୍ତର ନଥିଲା । ମୁଁ ମଧ୍ୟ ଏକାଡ଼ିଆଁକେ ଅଗଣାରୁ ଯାଇ ଘରର ବାରନ୍ଦା ଉପରେ ଛିଡ଼ା ହୋଇଗଲି । ଆଗ ଟିକିଏ ଦମ୍ ମାରିଲି, ତାପରେ ଅଣ୍ଡାଳି ଅଣ୍ଡାଳି ଦରଜା ପାଖରେ ଯାଇ ପହଞ୍ଚିଲି ।

ସେହି ପରିତ୍ୟକ୍ତ ପୁରୁଣା ଘରର ଚଟାଣ ଓ କାନ୍ଥରେ ବାଲିଗୋଡ଼ି ସିମେଣ୍ଟର ଚିହ୍ନବର୍ଣ୍ଣ ନଥିଲା । ଥିଲା କେବଳ ଉଇର ବିରାଟ ଆସ୍ତରଣ । ମୋ ଗୋଡ଼ତଳେ ଉଇ, ଯେଉଁଠି ହାତ ମାରିଲି ସେଠି ବି ଉଇ । ଉଇର ସମୁଦ୍ର ଭିତରେ ଛିଡ଼ା ହୋଇ ଦରଜାରେ ଲାଗିଥିବା ତାଲାଟିକୁ ଫିଟାଇବାକୁ ବହୁ ଚେଷ୍ଟାକରି ବିଫଳ ହେଲି । ହଠାତ୍ ଗୋଟାଏ ବୁଦ୍ଧି ଦେଖାଗଲା । କବାଟ ତଳ ପାଖରୁ ଖୁବ୍ ଜୋର୍‌ରେ ଦ'ଚାରିଟା ଗୋଇଠା ମାରିଲି । ଉଇଲଗାପଟା ଖଣ୍ଡେ ଛୁଡ଼ିଗଲା ସେ ମାଡ଼ରେ । ଗୋଟାଏ ବାଟ ହୋଇଗଲା । ସେଇବାଟେ ମୁଁ ମୁଣ୍ଡଗଳାଇ

ଘର ଭିତରକୁ ଢୁକିଲି । ଅନ୍ଧାର, ଖାଲି ଅନ୍ଧାର । ସେହି ଅନ୍ଧାର ଭିତରେ ସର୍ ସର୍, ଖସ୍ ଖସ୍, ଫଡ଼୍ ଫଡ଼୍ ଶବ୍ଦ ଶୁଣିବା ଛଡ଼ା ଭୂତ ଦେଖିବାକୁ ପାଇଲି ନାହିଁ । ଯାହାହେଉ, ଆଗେଇ ପଡ଼ି, ସେହି ଜଳାବାଟେ ଶରୀରର ସମସ୍ତ ବଳ ଖଟାଇ ଘର ଭିତରକୁ ଝାପ୍ଟା ମାରି ପଶିଗଲି । ସେଇଠି ଅଣ୍ଟୁ ମାଡ଼ି ପଡ଼ିବା ସାଙ୍ଗେ ସାଙ୍ଗେ ହଠାତ୍···

ହଠାତ୍ କିଏ ମୋ ଦୁଇ କାନ୍ଧରେ ପ୍ରକାଣ୍ଡ ଦୁଇଟା ପାପୁଲି ପକାଇ ମୋତେ ମାଡ଼ିବସିଲା । ମନେହେଲା ଯମପରି ବିଶାଳ-ବପୁ ଏକ ଦୈତ୍ୟ ଯେମିତି ଉପରୁ ମୋତେ ଚପିଧରିଛି । ମୋ ତଣ୍ଟି ଶୁଖିଆସିଲା । "ବସନ୍ତ ଦୌଡ଼ି ଆ, ଭୂତ ମତେ ମାଡ଼ିବସିଲା"—ବୋଲି ଡାକଟାଏ ମାରିଦେଇ, ମୁଁ ମୋର ସମସ୍ତ ବଳ ଖର୍ଚ୍ଚ କରି ଓଲଟି ପଡ଼ିଲି । ଭୂତର ସେ ହାତ ଦି'ଟା ମୋ କାନ୍ଧରୁ ଖସିଗଲା ଓ ଭୁସ୍ କରି ଶବ୍ଦକରି କଣ ସବୁ ଯେମିତି ମୋ କଡ଼ରେ ଅଜାଡ଼ି ହୋଇପଡ଼ିଲା । ବସନ୍ତ କେତେବେଳେ ମୋ ପାଖରେ ଆସି ପହଞ୍ଚିଛି ମୁଁ ଜାଣେନା । ସେ ଟର୍ଚ୍ଚ ବତୀ ଜାଳି ଦେଖିଲା, ଉଇର ପାହାଡ଼ ପରି ବିରାଟ, ବିଶାଳକାୟ ମୂର୍ତ୍ତି ଅଜାଡ଼ି ହୋଇପଡ଼ିଛି । ଘଟଣାଟା କଣ ବୋଲି ଏଥର ଆମେ ବୁଝିପାରିଲୁ । ଦରଜା ପାଖ କୋଣରେ ଗୋଟିଏ ମନୁଷ୍ୟ ମୂର୍ତ୍ତି (statue) କେଉଁକାଳରୁ ସେଠି ଛିଡ଼ା ହୋଇ ରହିଥିଲା । ମୋ ଗୋଇଠା ମାଡ଼ରେ ତା'ମୂଳ ଚହଁକି ଯାଇ ମୁଁ ଘର ଭିତରକୁ ଝାପ୍ଟା ମାରି ପଶିଲାବେଳକୁ ଆପଣା ଆସନ ଛାଡ଼ି "ପପାତଃ ଧରଣୀ-ତଳେ"··· ।

ଏହିଭଳି ଅଭାବନୀୟ ଓ ଅପ୍ରତ୍ୟାଶିତ ପରିସ୍ଥିତିରେ Heart fail କରି ମରିଯିବା କଥା; ମରିଯାଇଥିଲେ ଏ କାହାଣୀ ଅକୁହା ରହିଯାଇଥାନ୍ତା—କିନ୍ତୁ ଧୈର୍ଯ୍ୟ, ସାହସ ଓ ପ୍ରତ୍ୟୁତ୍ପନ୍ନ ବୁଦ୍ଧି ମୋତେ ସେଦିନ ରକ୍ଷା କରିଥିଲା । ତାପରେ ଆମେ ଦୁଇବନ୍ଧୁ ଟର୍ଚ୍ଚ ଆଲୁଅରେ ଘରଟା ସାରା ବୁଲି ଦେଖିଲୁ । ଖଟ, ଖଟ ଉପରର ବିଛଣା, ଗଦି, ତକିଆ, ଚଉକି, ମେଜ, ଆଲମାରି, ଆଲଣା ସବୁ କେବଳ ଉଇର ଗଦା । ଚେମଣିଙ୍କ ଫଡ଼୍ ଫଡ଼୍ ଶବ୍ଦ ସାଙ୍ଗକୁ ଉଇଙ୍କ ସର୍ ସର୍ ଶବ୍ଦ ଏକ ଅଦ୍ଭୁତ ପରିସ୍ଥିତି ସୃଷ୍ଟି କରୁଥାଏ । ସବୁ ତ ହେଲା, ଭୂତ କାହିଁ ? କୁଆଡ଼େ ଗଲା ସେ ଛାୟାମୂର୍ତ୍ତି ?···

ଗଦି, ତକିଆର ତୂଳା ସବୁ ଉଇଙ୍କର ଉଦରପୂର, ଚାରିଆଡ଼େ କେବଳ ଉଇର ରାଜତ୍ୱ । ଗୋଟାଏ କାଚ ଆଲମାରି ଭାଙ୍ଗି, ଉଇ ଝାଡ଼ି, ବହୁତ ପରିଶ୍ରମ କରି ତା ଭିତରୁ ଇଂରାଜୀ ଓ ବଙ୍ଗଳା ବହି ଦଶ ବାରଖଣ୍ଡ ବାହାର କଲୁ । ସେଥିରେ ମଧ୍ୟ ଉଇ । କିଛି କିଛି ଅଂଶରେ ଉଇ ଲାଗିଯାଇଛି, କେହି ଅକ୍ଷତ ନୁହେଁ । ବହିସବୁ ଧରି ଭୂତଘରୁ ଚାଲିଆସିଲୁ । ବୀରେନ ଗସ୍ତାରେ ଛଡ଼ା ହୋଇଥାଏ । ତିନିଜଣଙ୍କ

ଭିତରେ ବନ୍ଧି ସବୁ ବଣ୍ଟାହେଲା । ଭୂତ ଘରର ସ୍ମାରକୀରୂପେ ବନ୍ଧିସବୁ ପାଖରେ ରଖିଛୁ ।

କଥାଟା ପିଲାଙ୍କ ମୁହେଁ ମୁହେଁ ପ୍ରଚାରିତ ହୋଇଗଲା । ସମସ୍ତେ କହିଲେ, ଦଶମ ଶ୍ରେଣୀ ପିଲା ଦ'ଟାଙ୍କ ସାହସ ତ କମ୍ ନୁହେଁ । ଯାହାହେଉ, ଏ ଘଟଣା ଘଟିବାର କିଛିଦିନ ପରେ ଭୂତର ଭୟ ଭାଙ୍ଗି ଗଲା । ଫ୍ରେଜର୍ ହଷ୍ଟେଲ ପିଲାଏ ଏଥର ଭୂତ ଘରପଟ ଝରକା ସବୁ ଖୋଲା ରଖିରେ ନିଶ୍ଚିନ୍ତରେ ଶୋଇଲେ । ସେ ରାସ୍ତାରେ ଲୋକେ ନିର୍ଭୟରେ ଚଳପ୍ରଚଳ ହେଲେ । ଏବେ ଭୂତଘର ଭଙ୍ଗାଯାଇ ନୂଆ କୋଠାବାଡ଼ି ହେଲାଣି । 'ଭୂତଘର' ନାଁ ମଧ୍ୟ ଲିଭିଗଲାଣି ।

ଆଗରୁ କହିଛି, ବାପାଙ୍କ ସାଙ୍ଗରେ ମୁଁ ହରିନାଥ, ନରିନାଥ ଓ ବଇକୁଣ୍ଠନଙ୍କ ପାଲା ଗାୟନ ଶୁଣିବାକୁ ଯାଉଥିଲି । ସେମାନେ ବିଭିନ୍ନ ଶାସ୍ତ୍ର, ପୁରାଣ, ଓ ପ୍ରାଚୀନ ସାହିତ୍ୟର ଚର୍ଚ୍ଚା କରୁଥିଲେ । ଆଧୁନିକ କବିମାନଙ୍କର କାବ୍ୟ କବିତା ମଧ୍ୟ ଆଲୋଚନା କରୁଥିଲେ । ମୃଦଙ୍ଗ ଝାଞ୍ଜର ତାଳେ ତାଳେ ଗାୟକମାନଙ୍କ ସୁମଧୁର କଣ୍ଠ ଜନମାନସରେ ଶିହରଣ ଜଗାଇବା ସଙ୍ଗେ ସଙ୍ଗେ ହୃଦୟକୁ ମଧୁର ରସରେ ଆପ୍ଲୁତ କରୁଥିଲା । ବିଭିନ୍ନ ପ୍ରାଚୀନ ଓ ଆଧୁନିକ କାବ୍ୟ କବିତା ପାଠ କରିବା ସହିତ ପାଲାଗାୟନ ଶ୍ରବଣ କରି ପାଲା ଗାଇବାର ପ୍ରବୃତ୍ତି ମୋ ମନରେ ଜାଗରିତ ହୋଇଥିଲା । ଭୁବନ, ଶୈଳେନ୍ଦ୍ର, ବସନ୍ତ ଓ ମହିତାପ ମିଶି (ସାଥୀଗଣଙ୍କୁ ଧରି ଖୋଲା ପଡ଼ିଆରେ ନିରୋଳାରେ ପାଲା ଗାଇବାର ଅଭ୍ୟାସ କରୁଥିଲୁ । ମୁଁ ଥିଲି ଗାୟକ, ସେମାନେ ପାଳି ଧରୁଥିଲେ । ମୋ ଜୀବନ କାଳରେ ମୁଁ ତିନିଥର ପାଲା କରିଛି । ଥରେ ଆମ ସ୍କୁଲରେ, ଥରେ ନୀଳଗିରି ବ୍ରହ୍ମପୁରରେ ଓ ଆଉ ଥରେ ଆମ ଗାଁ ରୁଣିପୁରରେ । ରୁଣିପୁରରେ ଅନ୍ୟ ପାଳିଆ ଓ ଜଣେ ମୃଦଙ୍ଗିଆ ଥିଲେ । ଏହା ମଧ୍ୟ ଏକ ବିଚିତ୍ର ଅନୁଭୂତି । ଘଣ୍ଟା, ଦୁଇଘଣ୍ଟା ଧରି ଗାଇବା ଓ ଅର୍ଥ ବୁଝାଇବା କିଶୋର ବୟସରେ ଊଣା ବାହାଦୁରି ନୁହେଁ । ପଞ୍ଚଦେବତାଙ୍କ ବନ୍ଦନା ଗାଉଥିଲି, "ବନ୍ଦେ ପଞ୍ଚଦେବ ! ଗଣପତି, ମାଧବ ! ଗଉରୀଶ, କାତ୍ୟାୟନୀ, ନିତ୍ୟାନନ୍ଦ ସ୍ଥଳ-ବିହାରୀ ହେ ରୁଣ୍ଡି-ବଲଭ । କଳି କଳୁଷରୁ କର ହେ ପାର, କରୁଛୁ ଦଣ୍ଡିନୀ କରପ୍ରସାର; ଅରଜ ଘେନ ହେ, ଗରଜ ପଡ଼ିଛୁ, ଦରଜକୁ ଦୂର କର କେଶବ" ଇତ୍ୟାଦି । ଆଜି ସେସବୁ କଥା ମନେ ପଡ଼ିଲେ ମୁଁ ଭାବେ ଈଶ୍ବର ମୋଠି କି ଶକ୍ତି ଦେଇ ନଥିଲେ ସତେ !

---

—ପାଞ୍ଚ—

[ସ୍ଥାନ—ବାଣପଡ଼ାର ପୋଲିସ ଲାଇନ ଖେଳ ପଡ଼ିଆ । କାଳ—୧୯୩୭ ମସିହା । ସମୟ—ଅପରାହ୍ଣ । ପାତ୍ର ଓ ପାତ୍ରୀ—୧୩ ବର୍ଷର ଗୋଟିଏ ବାଳକ, ଗୋଟିଏ ଷୋଡ଼ଶୀ ଗ୍ରାମ୍ୟବଧୂ ଓ ତାର କୋଳ ପିଲାଟିଏ ।]

ଜୀବନ ନାଟକର ପ୍ରଥମ ଦୃଶ୍ୟର ଆରମ୍ଭ ଏଇଠୁ ।

ଫୁଟବଲ୍ ଖେଳସାରି ବାଳକଟି ଘରକୁ ଫେରିଲାବେଳକୁ ତାର ମନେପଡ଼ିଲା ବାପାଙ୍କ କଥା । ସେ କହିଥିଲେ, ତାଙ୍କ ଗାଈଟିକୁ ଭଞ୍ଜପୁର କାଞ୍ଜିଆହାଉସ୍‌ରୁ ଆଣିବା ପାଇଁ । ଦୁଇଅଣା ପଇସା ମଧ୍ୟ ପୁଅକୁ ଦେଇଥିଲେ । ସେ ଗାଈଟି ଭାରି ବୋଲଣା । ଦୁଇଦିନ କାଳ ଖୋଜାଖୋଜି କରିବା ପରେ ଖବର ମିଳିଥିଲା, ଗାଈ ଭଞ୍ଜପୁର କାଞ୍ଜିଅ ହାଉସ (ଖୁଆଡ଼)ରେ ଅଛି । ପିଲାଟି ସେଠାରେ ପହଞ୍ଚି ଖୁଆଡ଼ ମାଲିକକୁ ଦୁଇଅଣା ପଇସା ଦେଇ ଗାଈକୁ ମୁକ୍ତ କଲା । ଜେଲଖାନାର କଂସେଇ ଖୁଣ୍ଟରୁ ଛୁଟି ପାଇ ଗାଈଟି ଲାଙ୍ଗୁଳ ଟେକି ସିଧା ଘରମୁହାଁ ଦୌଡ଼ିଲା ।

ଘରକୁ ଫେରିବା ବାଟରେ ଝଞ୍ଜାର ଅନ୍ଧକାର ସାଙ୍ଗକୁ ମେଘାସନ ପର୍ବତ ଆଡ଼ୁ ଏକ ଅଦିନ ମେଘ ଘୋଟି ଆସିଲା । ମେଘ, ବର୍ଷା, ପବନ ଯେପରି ପ୍ରଳୟ ସୃଷ୍ଟି କରିବାକୁ ଉଦ୍ୟତ । ପ୍ରବଳ ତୋଫାନର ସମ୍ମୁଖୀନ ହୋଇ ନ ପାରି ବାଳକ ରାସ୍ତାକଡ଼ର ଏକ ଆମ୍ବଗଛ ମୂଳେ ଆଶ୍ରୟ ନେବାକୁ ବାଧ୍ୟହେଲା । ସେତିକି ବେଳକୁ ଘନ ଘନ ବଜ୍ରୁଲି, ଘଡ଼ଘଡ଼ି ସହିତ ଝଡ଼ବତାସ ଆଉ ମୂଷଳ ଧାରାରେ ବର୍ଷା । ପୃଥିବୀ ସତେ କି ଏଇ ମୁହୂର୍ତ୍ତରେ ଧ୍ୱଂସ ହୋଇଯିବ ।

ଯେଉଁମାନଙ୍କର ଧାରଣା ଅଛି, ସେମାନେ ଜାଣନ୍ତି ଯେ ଗଡ଼ଜାତ ଅଞ୍ଚଳମାନଙ୍କରେ ବେଳେ ବେଳେ ଅଦିନ ମେଘ ଓ ତୋଫାନ ହୋଇଥାଏ । ପାହାଡ଼, ପର୍ବତ, ଡୁଙ୍ଗୁରି, ରାସ୍ତାଘାଟ ସବୁଆଡ଼ୁ ପ୍ରଖର ସ୍ରୋତ ଆସି ଗଡ଼ିଆ, ପୋଖରୀ ଓ ନଦୀ ସବୁ ଜଳପୂର୍ଣ୍ଣ ହୋଇଯାଏ । ଉପନଦୀ ଗୁଡ଼ିକରେ ହଠାତ୍ ବନ୍ୟା ହୁଏ । ଘନ କଳାମେଘର ଆସ୍ତରଣ ଏପରି ଆଚ୍ଛନ୍ନ କରିଥାଏ ଯେ, ଆକାଶକୁ ଚାହିଁବାକୁ ଡର ମାଡ଼େ ।

ପ୍ରାୟ ଘଣ୍ଟାଏ ପରେ ବର୍ଷା ବନ୍ଦ ହୋଇ ଆକାଶ ପରିଷ୍କାର ହୋଇଗଲା । ସେତେବେଳକୁ ସନ୍ଧ୍ୟା ଗଡ଼ିଗଲାଣି । ରାଜପଥର ବଜୁଳିବତୀ ସବୁ ପୁରା ଭୋଲ୍ଟେଜ୍‌ରେ ଜଳୁଥାଏ । ବାଳକଟି ଘରକୁ ଫେରିବାକୁ ଉଦ୍ୟତ ହେଲା ।

ହଠାତ୍ ସେ ଶୁଣିବାକୁ ପାଇଲା ଏକ କରୁଣ କ୍ରନ୍ଦନ ଧ୍ୱନି । ଶବବାଗ ଫେର ବୁହିଲବେଳକୁ ଦେଖିଲା, ଭୁଆସୁଣୀ ବୋହୂଟିଏ ତା କଅଁଳା ପିଲାକୁ କୋଳରେ ଜାକ କାନ୍ଦୁଛ । ଝଡ଼, ବତାସରୁ ରକ୍ଷା ପାଇବା ପାଇଁ ଅନ୍ୟ ଏକ ଗଛମୂଳେ ବସ୍ତୁଶ ଆଶ୍ରା ନେଇଥିଲ । ବେଶଭୂଷାରୁ ଜଣା ପଡ଼ୁଥାଏ, ଅତ ଗରିବ ଘରର ବୋହୂଟିଏ । ପିନ୍ଧିଥିବା କବଟାର କିଛି ଅଂଶ ପିଲାକୁ ଘୋଡ଼ାଇ ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ବସି କାନ୍ଦୁଥାଏ ସେ ।

ବାଳକର ହୃଦୟ ତରଳଗଲ ଏ ଦୃଶ୍ୟ ଦେଖି । ସେ ତାକୁ କାନ୍ଦବାର କାରଣ ପଚାରିଲ ।

"ତୁ ମୋର କ କାମରେ ଆସିବୁ ଗୋ ବାବୁ ? ତୁ ତ ଛୁଆଟାଏ—"

"ଏଇ ଅନ୍ଧାର ରାତରେ କୁନ ଛୁଆଟିକୁ ନେଇ କୁଆଡ଼େ ଯିବୁ ? ତୋ ନଜ ଲୋକ କେହି ଏଠି ଥିଲେ ମତେ କହ, ମୁଁ ତତେ ନେଇ ତାଙ୍କ ଘରେ ଛାଡ଼ି ଆସିବ ।"

"କେହି ନାହାନ୍ତି ବାବୁ ! ମୋ ଶେରସ୍ତ ମତେ ଦୋଷ୍ଟରୁଣୀ କହି ମିଛ ଅପବାଦ ଦେଲ, ମାଡ଼ ଦେଇ ଘରୁ ବାହାର ଯାଇତେ କହଲ । କସ ଆଉ କରଥାନ୍ତି ବାବୁ, ଛୁଆଟାକେ ଧର ପଳେଇ ଆସିଲ ।"

"ଆଚ୍ଛା, ତୁ କଣ କହୁଚୁ ? ତୋର ବାପ, ଭାଇ କେହି ନାହାନ୍ତି ?···"

"ଅଛନ୍ତି ବାବୁ, ସମସ୍ତେ ଅଛନ୍ତି । ହେଲେ, ମତେ ଧକ୍କା ଦେଇ ଦାଣ୍ଡକୁ ତଡ଼ିଦେଲେ, ଦୁଆର କିଳିଦେଲେ । କହଲେ, "ପୋଡ଼ାର ମୁଖି ! ଶେରସ୍ତ ଘର ତ ଛାଡ଼ିକର ଆସିଲୁ, ଆଉ କେଣେ ମରିବୁ ଯା' । ତୋର ମୁହଁ ଚାହିଁବେ ନାହିଁ ! ଏଇ ଛୁଆ ବିକେଟଟ ମୁହଁକୁ ସେମାନେ ଚାହିଁଲେ ନାହିଁ ।"

"ତାହେଲେ କୁଆଡ଼େ ଯିବୁ ? କ'ଣ କରିବୁ ? ତୋର ଏଇ ପୁଅଟାକୁ କେମିତ ବଞ୍ଚେଇ ରଖିବୁ ?" ବାଳକଟି ବ୍ୟସ୍ତ ହୋଇ ପଚାରିଲ । "ମୁହିଁ ତାକୁ ଠିକ୍ ବଞ୍ଚେଇବ । ମୋ ଛାତର ରକ୍ତ ନିଗାଡ଼ି, ମା'ର ମମତା ଦେଇ ତାକୁ ମଣିଷ କରିବ । ଆଉ ତୁଇ ଦେଖିବୁ ବାବୁ, ଏଇ ଛୁଆଟା ତା ବାପର ବଦ୍ଲା ଠିକ୍ ନବ !" ଦୃପ୍ତ କଣ୍ଠରେ କହଲ ତରୁଣୀ । "ଏଇ ପାଖରେ ବୁଢ଼ୀଙ୍ଗମାଗରେ ମୋର ଲେଖାଯୋଖାର ଜଣେ ମାମୁଁ ଅଛନ୍ତି— ତାଙ୍କର ନାଁ ତ୍ରିନାଥ ମାହାଲକ ; ମତେ ସେଇଠେ ଟିକଏ ଛାଡ଼ି ଆସିବୁ ଯଦ, ତୋର ବହୁତ ଧର୍ମ ହବ ।"

ବାଳକଟି ସାଙ୍ଗେ ସାଙ୍ଗେ ସେମାନଙ୍କୁ ନେଇ ବାହାରପଡ଼ିଲ । ତ୍ରିନାଥ ମାହାଲକର ସନ୍ଧାନ ନେଇ ମା ଆଉ ଛୁଆକୁ ତାଙ୍କ ପାଖେ ଛାଡ଼ି ଆସିଲ । ଦୁଃଖିନୀ

ବଧୂଟିର କଥିତ ଉପକାର କରିଥିବାରୁ ଗଭୀର ଆତ୍ମ ସନ୍ତୋଷ ସହ ବାଳକଟି ମନ ଖୁସିରେ ଘରକୁ ଫେରିଗଲା । ଉକ୍ତ ନାଟକର ଦୃଶ୍ୟର ଶେଷ ଏଇଠି । ମାତ୍ର ନାଟକର ଶେଷ ଯେଉଁଠି, ସେଇଠି ଜୀବନର ଆରମ୍ଭ । କଅଁଳା ପିଲାଟିକୁ ଧରି ତାର ସେଇ ମା’ କପରି ଭାବେ ପୁଅର ଭବିଷ୍ୟତ ଗଢ଼ିଥିବ, ଶେଷ ପର୍ଯ୍ୟନ୍ତ ସେ ବାପ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଅନ୍ୟାୟ, ଅବିଚାରର ଉପଯୁକ୍ତ ପ୍ରତିଶୋଧ ନେଇଛି କି ନାହିଁ, ସେ ସବୁ କଳ୍ପନାର ବାହାରେ । ମାତ୍ର ତାହା ହିଁ ନିର୍ଣ୍ଣିତ ଭାବେ ଶିଶୁଟିର ଜୀବନର ଆରମ୍ଭ ।

ସେଇ ତେର ବର୍ଷର ବାଳକ ଆଉ କେହି ନୁହେଁ, ମୁଁ ନିଜେ । କିଶୋର ପ୍ରାଣରେ ସେଦିନ ସେ ଅନୁଭୂତିର ଯେଉଁ ଅମେଜ୍ ଲାଗି ରହିଥିଲା, ତାର ପରିପ୍ରକାଶ ହୋଇଥିଲା ଠିକ୍ ବାରବର୍ଷ ପରେ ମୋ ‘ତୋଫାନ’ ନାଟକ ମାଧ୍ୟମରେ । ମୋ ରଚିତ ‘ଦେବୀ’, ‘ବେନାମୀ’, ‘ଜହର’, ‘ଶିକାରୀ’ ପରେ ଏହି ‘ତୋଫାନ’ ନାଟକ ଥିଲା କଟକ ଅନ୍ନପୂର୍ଣ୍ଣା ଥିଏଟର ‘ବି’ ଗ୍ରୁପ୍‌ର ପଞ୍ଚମ ଅବଦାନ । ହିଂସା, କାମ, ଦ୍ୱନ୍ଦ୍ୱ, ହିକ୍କଣ୍ଣ, ପ୍ରତିଶୋଧ-ପରାୟଣତା ପ୍ରଭୃତି ବିଚିତ୍ର ପରିବେଶ ସହିତ ୧୯୪୯ ମସିହାର ମଧ୍ୟଭାଗରେ ଅଭିନୀତ ଏହି ନାଟକ ଏଭଳି ଜନପ୍ରିୟତା ଲାଭ କରିଥିଲା ଯେ, ଅଗଣିତ ଦର୍ଶକ ଏହାର ଭୂରି ଭୂରି ପ୍ରଶଂସା କରିଥିଲେ । ଓଡ଼ିଶାର ଅଧିକାଂଶ ପୁରପଲ୍ଲୀରେ ‘ତୋଫାନ’ ନାଟକ ବିଶେଷ ସଫଳତାର ସହିତ ଅଭିନୀତ ହୋଇଥିବାର ମୁଁ ଜାଣେ ।

ମିଶନ୍ ସ୍କୁଲ ଗ୍ରୁଡ଼ ହାଇସ୍କୁଲରେ ନାଁ ଲେଖାଇଲା ବେଳକୁ ବାପା ପରେଡ଼ ପଡ଼ିଆରେ ଗୋଟିଏ ଘର କିଣିଥିଲେ । ଘର ବାଡ଼ି ମିଶି ପ୍ରାୟ ସାତଗୁଣ୍ଠ ଥିଲା । ଚାଳଘର ହେଲେ ମଧ୍ୟ ମଜଭୁତ । ଖଞ୍ଜାଟି ଭାରି ପ୍ରଶସ୍ତ । ଘର ପଛପଟେ ବାଡ଼ି, ସାମ୍ନାରେ ପ୍ରକାଣ୍ଡ ହତା । ହତା ଭିତରେ ପିଜୁଳି, ଆମ୍ବ, ଜାମୁ ଓ ବରକୋଳି ଗଛ । ଫାଟକ ନିକଟରେ ଏକ ବିରାଟ ମୁଚୁକୁନ୍ଦ ସାରାବର୍ଷ ଫୁଲରେ ଭରା । ଘର ଭିତରେ ବିଜୁଳିବତୀ, ପଙ୍ଖା ଆଉ ଅଗଣା ଭିତରେ ପାଣିକଳ । ଆମ ଘରଚାକର ସୁଦର୍ଶନ ଘର ପଛପଟ ବାଡ଼ିରେ ଦୁଇ ତିନି ପଟାଳି ଶାଗ, ବାଇଗଣ ଓ ଭେଣ୍ଡି ଗଛ ଲଗାଇଥାଏ । ବର୍ଷାଦିନେ ଜହ୍ନି, କାକୁଡ଼ି ଲଗାଏ । ବୋଉ ନିଜେ ବଗିଚାର ତଦାରଖ କରେ । ମୁଁ ମଧ୍ୟ ବେଳେ ବେଳେ ଗଛରେ ପାଣି ଦେବା, ଭେଣ୍ଡି, ଜହ୍ନି, ବାଇଗଣ ତୋଳିବା କାର୍ଯ୍ୟ କରିଥାଏ ।

ମୁଁ ପଞ୍ଚମ ଶ୍ରେଣୀରେ ପଢୁଥିବା ବେଳେ ଶୁଣିବାକୁ ପାଇଲି, ନାଟ୍ୟାଚାର୍ଯ୍ୟ ବାଳକୃଷ୍ଣ ମହାନ୍ତିଙ୍କ ଯାତ୍ରାଦଳ ଆମ ଦାଣ୍ଡରେ ତମ୍ବୁ ପକାଇ ଟିକେଟ୍‌ରେ ଯାତ୍ରା ପରିବେଷଣ କରିବେ । ବାରିପଦାର ଆଉ କେଉଁ ସ୍ଥାନରେ ସୁବିଧା ନ ହେବାରୁ ଆମରି ହତାରେ କରିବାକୁ ବାପା ଅନୁମତି ଦେଲେ । ସେ ଯାତ୍ରାଦଳର

ମାନେଜର ଥିଲେ ସ୍ୱର୍ଗତ ବାଉରିବନ୍ଧୁ ମହାନ୍ତି । ବାଉରିବନ୍ଧୁ ବାବୁ ତାଙ୍କ ନିଜ କଥା କହିଲାବେଳେ ଆଗେ କହନ୍ତି, "ମୁଁ ଶ୍ରୀ ଅକ୍ଷର ବିବର୍ଜିତ ।" କିନ୍ତୁ ପାଠରେ ନ ହେଲେ ଶାଠରେ ସେ ଧୁରନ୍ଧର ଥିଲେ । କଥା କହିବାର ଅଦ୍ଭୁତ ଚାତୁରୀରେ, ସଂଗଠନ କରିବାର ଅଭୂତପୂର୍ବ ଦକ୍ଷତାରେ ସେ ସମସ୍ତଙ୍କୁ ଆପଣାର କରିପାରୁଥିଲେ । ପରବର୍ତ୍ତୀ ସମୟରେ ସେ ଅନ୍ନପୂର୍ଣ୍ଣା ଥିଏଟରର ଜେନେରାଲ୍ ମାନେଜର ଥିଲେ ଓ ଶେଷ ପର୍ଯ୍ୟନ୍ତ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ପରିଚାଳକ ଥିଲେ । ମୋର ପଞ୍ଚମ ଶ୍ରେଣୀ ପଢ଼ାବେଳେ ମୁଁ ତାଙ୍କୁ ଦେଖିଥିଲି, ପୁଣି ଦେଖାହେଲା କଟକରେ ବହୁବର୍ଷ ପରେ । 'ଏ' ଗ୍ରୁପ୍ ଦ୍ୱାରା ସେ ମୋର 'ଗରିବ' ଓ 'ଜୟମାଲ୍ୟ' ନାଟକ ଅଭିନୀତ କରାଇଥିଲେ । ସ୍ୱୀକାର କରିବାରେ ବାଧା ନାହିଁ ଯେ, ମୋ ମତରେ ମୋର ପ୍ରାୟ ଚାଳିଶ ଖଣ୍ଡ ନାଟକ ମଧ୍ୟରେ 'ଜୟମାଲ୍ୟ' ହେଉଛି ମାଷ୍ଟର୍ ପିସ୍ ।

ତମ୍ବୁ ପଡ଼ିଲା । ଶୁଭ ଦିନ ଦେଖି ଆରମ୍ଭହେଲା ଗୀତାଭିନୟ । ଟିକେଟ୍ କିଣି ବହୁ ସ୍ତ୍ରୀ ପୁରୁଷ ପିଲାଛୁଆ ଯାତ୍ରା ଦେଖିବାକୁ ଆସିଲେ । ଘର ଭିତରେ ଥାଇ ଝରକା ବାଟେ ମୋ ବୋଉ ନାଟକ ଦେଖିଲା । ପ୍ରଥମ ଧାଡ଼ିରେ ବସି ବାପା ଦେଖିଲେ, ଆଉ ତାଙ୍କ ପାଖରେ ଗୋଟାଏ ଆର୍ମଚେୟାର୍‌ରେ ବସି ମୁଁ ବି ଦେଖିଲି··· ସବୁଦିନେ, ଆଖିପିଛୁଳା ନ ପକାଇ । ସୁଶୀଳ-ମାଳତୀ, ବାଣାସୁରଜୟ, ଅମର ବିଳାସ, ବସନ୍ତ ଲତିକା, ଚନ୍ଦ୍ରହାସ ପ୍ରଭୃତି ନାଟକାଭିନୟ ଦେଖି ମୋ ଟିକି ପ୍ରାଣରେ ସେହିଦିନୁ ମମତା ଜାଗିଥିଲା ନାଟକ ପ୍ରତି । ଏବେ ସୁଦ୍ଧା ମୋ କାନରେ ଶୁଭିଯାଉଛି ସତେ ଯେମିତି :—"କହ ସେନାପତେ ! ଆଜ ମୁଁ କେମନ୍ତେ, ସେ ନବ-ମଲ୍ଲିକା ପାଇବ !" ଜୀବନରେ ଏତେ ନାଟକ ରଚନା କରିବ ବୋଲି ମୁଁ କଣ କଳ୍ପନା କରିଥିଲି ସେଦିନ ?···

ଦିନବେଳେ ଆମ ଦାଣ୍ଡ ପିଣ୍ଡାରେ ଯାତ୍ରାପିଲାଙ୍କୁ ନେଇ ତାଙ୍କ ଓସ୍ତାଦ୍ ଗୀତ ଅଭ୍ୟାସ କରାନ୍ତି ହାରମୋନିୟମ୍ ଓ ତବଲା ସଂଗତରେ । ସ୍କୁଲ୍‌ଛୁଟିଦିନ ମାନଙ୍କରେ ମୁଁ ଯାଇ ସେଇ ପିଲାମାନଙ୍କ ସାଥୀରେ ବସେ । ମୋ ପଢ଼ୁଣା ଘର ସାଙ୍ଗ ଶୈଳେନ୍ଦ୍ର ଆଉ ଅବଦୁଲ ବି ସେଠି ଆସି ବସନ୍ତି । ଓସ୍ତାଦ୍ ଘରମାଲିକଙ୍କ ପୁଅ ବୋଲି ମତେ ଖାଲି ଖାତିର କରୁଥାନ୍ତି ଓ ସେଇ ସୁଯୋଗରେ ମୁଁ ତାଙ୍କ ତବଲାକୁ ଦୁମ୍‌ଦାମ୍ କରି ବାଡ଼େଇଲେ ବି ସେ ମୋତେ କିଛି କହନ୍ତି ନାହିଁ । ଓଲଟି ତବଲାକୁ ସୁରକ୍ଷା ଦେବାକୁ ଯାଇ କହନ୍ତି, "ସାନ ବାବୁ ! ତାକୁ ଛାଡ଼ । ମୋ ପାଖକୁ ଆସ, ମୁଁ ହାରମୋନିୟମ୍ ବଜା ଶିଖେଇ ଦେବି ।" ପିଲାମନ ତ, ସୁଅଡ଼ିକୁ ମାଡ଼ିଲା ସିଆଡ଼େ । ତବଲା ଛାଡ଼ି ଧରିଲି ହାରମୋନିୟମ୍ । ସେ ମତେ ଖୁବ୍ ଶିଖେଇଲେ ; ପେଁ ପାଁ କରି ମୁଁ ବି ଖୁବ୍ ବଜେଇଲି । ହେଲେ ସାରାଜୀବନ

ପାଇଁ ବଳେଇବା ଆଉ ହେଉନାହିଁ । ଖାଲି ସେଇ 'ସା ରେ ଗା ମା ପା ଧା ନି ସା', 'ସା ନି ଧା ପା ମା ଗା ରେ ସା' ! ନାଚେ, ଗାଏ, ଅଭିନୟ କରେ, ହେଲେ ବାଦ୍ୟଯନ୍ତ୍ର ବଜାଇବାରେ ସମ୍ପୂର୍ଣ୍ଣ ଅନାଡ଼ି ! 'ଅନ୍ନପୂର୍ଣ୍ଣା' ଓ 'ଜନତା' ଥିଏଟରର ସଙ୍ଗୀତ-ଶିକ୍ଷକମାନେ (ହରଚରଣ ମହାନ୍ତି, ହରି ମହାନ୍ତି ଓ ହରି ପଣ୍ଡା) ମୋ ପାଇଁ ଯେତେ ପରିଶ୍ରମ କଲେ ବି ମୁଁ "ଫାଷ୍ଟବୁକ୍‌ର ସେଇ ଘୋଡ଼ା ଲେଶନ୍ ଠି'ରହିଗଲି" (ମୋ 'ଅତିଥି' ନାଟକର ବଚନିକା) !

ଆଗରୁ କହିଛି, ପଞ୍ଚମ ଶ୍ରେଣୀଠୁ ମୁଁ ବାଗପଦାର 'Victoria Diamond Jublee Library' ରୁ ବହି ସବୁ ଆଣି ବଗିବର ପଢୁଥିଲି । ପାଠ୍ୟ ପୁସ୍ତକ ପଢ଼ିବାରେ ମୋର ଯେତିକ ସମୟ ଯାଉଥିଲା, ପ୍ରାୟ ସେତିକ ସମୟ କଟୁଥିଲା ଏ ସମସ୍ତ ବହି ପଢ଼ିବାରେ । ବହି ପଢ଼ିବାର ସେଇ ଅଭ୍ୟାସ ମୋର ଆଜି ପର୍ଯ୍ୟନ୍ତ ରହିଛି । ବିଭିନ୍ନ ଲାଇବ୍ରେରୀରୁ, ବନ୍ଧୁମାନଙ୍କ ନିକଟରୁ, ତଥା Wheeler ଦୋକାନରୁ ଯେତେ ଭଲ ବହି ପାଏ, ଆଣି ପଢ଼େ । କେତେକ ସେକେଣ୍ଡ୍ ହ୍ୟାଣ୍ଡ୍ ବହି ମଧ୍ୟ କିଣି ଆଣେ । ଓଡ଼ିଆ ଭାଷାରେ ଲିଖିତ ଛ' ମାଣ ଆଠଗୁଣ୍ଠ, ମାମୁଁ, ମାଟିର ମଣିଷ, ଅଦେଖା ହାତ, ଚୁଣ୍ଡିବାଇଦ, ବୋଉ, ନିଯଗ୍ରନ୍ଥି, ଶାସ୍ତି, ମଲାଜହ୍ନ, ମୁକ୍ତାଗଡ଼ର କ୍ଷୁଧା, ଭୂମିକା, ହୁଡ଼ମାଟି, କଣାମାମୁଁ, ନିଶାଣ ଖୁଣ୍ଟ, ଚକ୍ରଗ୍ରୀବ, ପରଜା, ଅମୃତର ସନ୍ତାନ, ନୀଳଶୈଳ, ପ୍ରାୟଶ୍ଚିତ୍ତ, ଚପଲଛନ୍ଦା, ପରପୁରୁଷ, ଯାଜ୍ଞସେନୀ, ଦେବଦାସୀ ପ୍ରଭୃତି ଉଚ୍ଚକୋଟୀର ପୁସ୍ତକ ସହିତ ବଙ୍ଗଳା ଭାଷାର ସ୍ୱୟଂସିଦ୍ଧା, ଦ୍ୱିପୁରୁଷ, ଆରୋଗ୍ୟ ନିକେତନ, ଅଜାନାର ସନ୍ଧାନେ, ଆନନ୍ଦମଠ, ଦୁର୍ଗେଶ ନନ୍ଦିନୀ, ଶ୍ରୀକାନ୍ତ, ଚରିତ୍ରହୀନ, ଦତ୍ତା, ପ୍ରଭୃତି ବିଖ୍ୟାତ ଉପନ୍ୟାସ, କବିଗୁରୁ ରବୀନ୍ଦ୍ରନାଥଙ୍କ ଗୀତାଞ୍ଜଳୀ, ନୌକାଡୁବି, ଗୋରା, ନଜରୁଲ ଇସ୍‌ଲମ୍‌ଙ୍କ ଅଗ୍ନିବୀଣା, ମାଇକେଲ୍ ମଧୁସୂଦନ ଦତ୍ତଙ୍କ ମେଘନାଦ ବଧ, ଯାଯାବରଙ୍କ ଦୃଷ୍ଟିପାତ, ପ୍ରଭୃତି କାବ୍ୟ, କବିତା ଓ ଅନେକ ନାଟକ ଏବଂ ଇଂରାଜୀ କାଳଜୟୀ ଉପନ୍ୟାସ, Hunger, All quiet in the Western Front, A tale of two cities, Don quixote, Mother, In high places, Oliver Twist, Grapes of wrath, Les Miserable, Women of Rome, Combat of the Shadows, Shadow on Ladakh, Farewell to Arms, A passage to India, Adventures of Sherlock Holmes, Good Earth, Gone with the wind, ଓ Guide ପ୍ରଭୃତି ଶହ ଶହ ଉପନ୍ୟାସ, ଗଳ୍ପ, ନାଟକ, କାବ୍ୟ-କବିତା ପଢ଼ିବା ମୋର ନିଶା କହିଲେ ଚଳେ । ପିଲାଦିନୁ ଶିଶୁ ସାହିତ୍ୟରୁ ଆରମ୍ଭ କରିଥିଲି, ପରବର୍ତ୍ତୀ ସମୟରେ classics ପଢ଼ିବାର ଝୁଁକ୍

ହେଲ । ଯେତେ ବହି ପଢ଼ିଛି ତାର କି ସୂଚୀ ବା ମୁଁ ଦେବି ? ଏସବୁ ଥିଲା ମୋ ସାହିତ୍ୟ ରଚନାର ମୂଳ ଉତ୍ସ ! ମୋ ଜୀବନରେ ବାଣପଦାର ପୃଷ୍ଠଭୂମି ଉପରେ ଏକମାତ୍ର ଉପନ୍ୟାସ "ମରୁପଥିକ" ୧୯୪୦ ମସିହାରେ ଲେଖିଥିଲି । ତାହା ବହୁବର୍ଷ ପରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଖଣ୍ଡିଏ ଛପା ବହି ମୋ ପାଖରେ ଅଛି, ବଜାରରେ ଆଉ ମିଳୁନାହିଁ ।

ଆତ୍ମ-କଥନରେ କହିଛି, ମୋ ଜୀବନର ଘଟଣାମାନ ବୃଦ୍ଧ ଆଣୀ ସୂତାପରି ଗୁଡ଼େଇ ଗୁଡ଼େଇ ହୋଇ ରହିଛି । ତେଣୁ ତାରିଖ ମସିହାର କ୍ରମ ଠିକ୍ ନ ରହିବା ସ୍ୱାଭାବିକ । କେବଳ ଖିଅ ଧରି ମୂଳରୁ ଚୂଳଯାଏ ଯିବା ଆବଶ୍ୟକ ।

---

# ଜୀବନ-ପୂର୍ବାହ୍ନ

—ଏକ—

"I slept and dreamt
that life was beauty,
I woke and found
that life was duty."

ମଣିଷ ସ୍ୱପ୍ନ ଦେଖେ । ଅବଚେତନ ମନର ଭାବଶ୍ରାବାଠି କେତେବେଳେ ତାକୁ ଆକାଶରେ ଉଡ଼ାଇନିଏ ତ କେତେବେଳେ ସାଗରର ଅତଳ ଗର୍ଭକୁ ଠେଲିଦିଏ । ଗରିବ ମୂଲିଆ ସ୍ୱପ୍ନ ଦେଖେ, ସେ ଲକ୍ଷପତି ହୋଇ ଟଙ୍କା ଗଦା ଉପରେ ବସିଛି; ଫାଶୀ ଆସାମୀ ସ୍ୱପ୍ନ ଦେଖେ, ଆଇନ୍ ଜାଲରୁ ମୁକ୍ତ ହୋଇ ସେ ତାର ସ୍ତ୍ରୀ ଓ ପୁତ୍ରକନ୍ୟାଙ୍କ ନିକଟକୁ ହସି ହସି ଫେରିଯାଉଛି । ମାତ୍ର, ହାୟ ! ନିଦ ଭାଙ୍ଗିବା ସାଙ୍ଗେ ସାଙ୍ଗେ ସେ ସବୁ ସ୍ୱପ୍ନ ହୁଏ ଅଳୀକ, ତୃଷାର୍ତ୍ତ ମୃଗତୃଷ୍ଣାକୁ ଅଶାକରି ହତାଶ ହେବାପରି । ସକାଳ ହେବାପରେ ଜମି ମାଲିକ ଆସି ମୂଲିଆକୁ ଡାକେ କ୍ଷେତକୁ ନିବାପାଇଁ; ଜେଲ୍ ଓ୍ୱାର୍ଡ଼ର ଆସି ଫାଶୀ ଆସାମୀକୁ ଡାକେ ମରଣ ମୁହଁକୁ ନିବାପାଇଁ । ବଙ୍ଗଳାର ଜଣେ ବିଖ୍ୟାତ କବି ଲେଖିଛନ୍ତି :—

"ନିଶିଦିନ ଆମି ରଚିବ ଅକୁଲ୍ ଶସ୍ୱାନ ରେ···"

ଏ ନିଦ ମୋଟେ ନ ଭାଙ୍ଗନ୍ତା କି ? ମଧୁର ସ୍ୱପ୍ନରେ ବିଭୋର ହୋଇ ମୁଁ ଦିନରାତି ଶୋଇ ରହନ୍ତି କି ? ହା' ରେ ହତଭାଗା, ତୋ ସ୍ୱପ୍ନ ଯଦି ସତ ହୁଅନ୍ତା ! ସ୍ୱପ୍ନ-ତତ୍ତ୍ୱକୁ ନେଇ ଯେଉଁମାନେ ଗବେଷଣା କରୁଛନ୍ତି, ତାଙ୍କ ହିସାବରୁ ଯାହା ଜଣାଯାଏ—ତାହା ପ୍ରାୟତଃ ଦୁର୍ବଳମନା ସ୍ୱପ୍ନଜୀବୀମାନଙ୍କ ମନରେ କ୍ଷଣିକ ଆଶା, ଉଲ୍ଲାସ, ଉନ୍ମାଦନା ଓ ଉଦ୍ଦୀପନା ସୃଷ୍ଟି କରିବାପାଇଁ··· ମିଥ୍ୟା ଉପରେ ସତ୍ୟର ପ୍ରଲେପ ଦେବାପାଇଁ !

ଜୀବନର କୁସୁମିତ ଚଲାପଥ ଉପରେ ଯାଇଁ ଯାଇଁ ଗୋଟାଏ ମୋଡ଼ ଉପରେ ହଠାତ୍ ସେହି ପଥର ଚିହ୍ନବର୍ତ୍ତି ଦେଖିବାକୁ ମିଳେ ନାହିଁ । ଆଖି ଆଗରେ ଦେଖାଦିଏ କଣ୍ଟକିତ ବାଲୁକା-ଶଯ୍ୟା । ଆଗକୁ ନିବାପାଇଁ ସେ ବାଲୁକା-ଶଯ୍ୟା ଉପରେ ଆଗକୁ ଆଗକୁ ଯାଇଥିବା ଅଗଣିତ ପାଦଚିହ୍ନ ଦୃଷ୍ଟିଗୋଚର ହୁଏ, କିନ୍ତୁ

ପଛକୁ ଫେରିବାର ପାଦଚିହ୍ନ ଗୋଟିଏ ହେଲେ ଦେଖିବାକୁ ମିଳେନାହିଁ । ଏହା ହିଁ ଜୀବନର କଠୋର, ବାସ୍ତବ ସତ୍ୟ । ପଛରେ ଛୁଡ଼ି ଆସିଥିବା ଶୈଶବ ଓ କୈଶୋରର ମଧୁର ସ୍ମୃତି କେବଳ ସ୍ମୃତିରେ ହିଁ ରହିଯାଏ । ବାସ୍ତବତାର କଠୋର ଝଡ଼ରେ କେତେ ମଧୁର ସ୍ୱପ୍ନ ଆଉ ସମ୍ଭାବନା ପାଣି ଫୋଟକା ପରି ମିଳାଇଯାଏ । ଏହାହିଁ ଜୀବନର ସଙ୍ଘ । ନିଦ ଭାଙ୍ଗିବା ସଙ୍ଗେ ସଙ୍ଗେ ସ୍ୱପ୍ନର ମୋହ ତୁଟିଯାଏ; କେବଳ କଳ୍ପନା ଭିତରେ ରହିଯାଏ ବିଗତ ରାତ୍ରୀର ଗ୍ଲାନି ଓ ମାୟା । ଆରମ୍ଭ ହୁଏ ନିତିଦିନିଆ ଜୀବନ, କର୍ତ୍ତବ୍ୟର ମନ୍ତ୍ର-ଆହ୍ୱାନ ।

ମାଟ୍ରିକ୍ୟୁଲେଶନ୍ ପରୀକ୍ଷା ଦେବାପରେ ଫଳ ପ୍ରକାଶ ପାଇବା ପୂର୍ବରୁ ଯେଉଁ ଚାରିମାସ ସମୟ ମିଳିଲା, ତାର ଭିତରେ ମୁଁ Type writing ଓ Book keeping ଶିଖିଲି । ସେହି ସମୟ ମଧ୍ୟରେ ସାଥୀମାନଙ୍କ ସହିତ ଖୁବ୍ ନାଚ, କୁଦ ହେଲା, ତାସ୍, କ୍ୟାରମ୍, ଚେସ୍ ଖେଳ ବି ବହୁତ ହେଲା । ହିଂଜଳର ବନ୍ଧରେ ଗାଧୁଆ ଆଉ ବୁଢ଼ାବଳଙ୍ଗ ନଦୀରେ ଘଣ୍ଟା ଘଣ୍ଟା ଧରି ପହଁରା ଓ ବଂଶୀଖେଳ ପ୍ରଭୃତିରେ ସମୟ କଟିଗଲା । ଦିନକର କଥା । ଗୁଜୁରି ମାର୍କେଟ୍ ପାଖରେ ଥିବା ବଡ଼ ପୋଖରୀ ମଝିରୁ ମାଟି କିଏ ଆଣିବ, ଏଥିପାଇଁ ପ୍ରତିଯୋଗିତା ହେଲା । ସମସ୍ତ ମୟୂରଭଞ୍ଜରେ ପହଁରାରେ ପ୍ରଥମ ପୁରସ୍କାର ପାଇଥିବା ଆମର ଜଣେ ସହପାଠୀ ସ୍ୱର୍ଗତଃ ଦୁର୍ଗାମାଧବ ପାଣିଗ୍ରାହୀ ଆମ ସାଙ୍ଗରେ ପୋଖରୀ ମଝିକୁ ଗଲେ । ମୁଁ, ବସନ୍ତ ଓ ମହତାପ ମିଆଁ ପ୍ରତିଯୋଗୀ । ବଡ଼ପୋଖରୀର ବିସ୍ତାର ହୋଇଥାଏ, ଅଧିକ ଗଭୀର କରାଯାଇଥାଏ । ମଝିରେ ଅଥଳ ପାଣି । ତା'ଭିତରେ ବୁଡ଼ି ମାଟି ଯିଏ ଆଣିପାରିବ, ସେ ହେବ ପହିଲା ନମ୍ବର ବୁଡ଼ାଳୀ ! ମହତାପ, ବସନ୍ତ ଓ ମୁଁ ଏକ ସଙ୍ଗେ (ଦୁର୍ଗାମାଧବ "Are you ready ? Get set go !" କହିବା ପରେ) ବୁଡ଼ିଲୁ । (ପରେ ଶୁଣିଲି, ମହତାପ ଅଳ୍ପ ସମୟ ପରେ ଉଠି ଆସିଥିଲା । ବସନ୍ତ ବୁଡ଼ିବା ସଙ୍ଗେ ସଙ୍ଗେ ବାହାରି ଆସିଲା ।) କିନ୍ତୁ Sportsman ମନୋବୃତ୍ତି ନେଇ ମୁଁ କେବଳ ତଳକୁ ଯାଇଥିଲି ମାଟି ଆଣିବାକୁ । ତଳକୁ ତଳକୁ ଯାଉଚି, ଭିତରେ ଅନ୍ଧାର, ସାଇଁ ସାଇଁ ଶବ୍ଦ—ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ଯେତେ ଗଭୀରକୁ ଗଲେ ବି ମାଟି ପାଇଲି ନାହିଁ । ମନେ ମନେ ଭାବିଲି, ଆଉ ତଳକୁ ବୁଡ଼ିଲେ ଦମ୍ ପାଇବ ନାହିଁ, ଉପରକୁ ଆସି ନ ପାରି ବୁଡ଼ି ମରିବ । ନିଃଶ୍ୱାସ ଶେଷପ୍ରାୟ, ପ୍ରାଣବିକଳରେ ଉପରକୁ ଉଠି ଆସିଲି । କିନ୍ତୁ ମୁଣ୍ଡ ପାଣି ଭିତରୁ ବାହାରକୁ ଆସିଲା ନାହିଁ, ଆସିଲା ଦୁଇ ତିନୋଟି ହାତ ଆଙ୍ଗୁଠି । ଦୁର୍ଗାମାଧବ ସେଇ ଆଙ୍ଗୁଠିକୁ ଧରି ଜୋରରେ ଝଟ୍‌କାମାରି ମୋତେ ଉଠାଇ ଆଣିଲା । ତାର ଗୋଟାଏ ହାତ ପାଣି ଉପରେ ଶୁଆଇ ଦେଇ କହିଲା, "ମୋ ହାତ ଉପରେ ପେଟ ଲଗାଇ ଦେ" । ଯାହାହେଉ, ଅର୍ଦ୍ଧ-ଅଚେତ୍

ଅବସ୍ଥାରେ ହାଲିଆ ହୋଇ ଦୁର୍ଗାମାଧବ ସାହାଯ୍ୟରେ କୂଳକୁ ଆସିଲି । ଦୁର୍ଗାମାଧବ କହିଲା, "ହଇରେ ମୂର୍ଖ ! ମହିଚାପ, ବସନ୍ତ ଡରି ମରି ପଳାଇ ଆସିଲେ, ତୁ ଜୀବନକୁ ପାଣି ଛଡ଼େଇ ଏତେ ତଳକୁ ଗଲୁ ! ତୋ ଆଙ୍ଗୁଠି ଦେଖା ଯାଇ ନ ଥିଲେ, କଣ ହୋଇଥାନ୍ତା କହିଲୁ ! ଦୈବାତ୍ ମୁଁ ମହିରେ ତତେ ଅପେକ୍ଷା କରିଥିଲି ।" ସେତେବେଳେ ମୋର ଯାହା ଅବସ୍ଥା, ତା' ଉପଦେଶ ବୃତ୍ତାକ ମତେ ଶୁଭୁ ନ ଥିଲା । ମୁଁ ଏଭଳି ଅବସନ୍ନ ହୋଇ ପଡ଼ିଥିଲି ଯେ, ଘାଟ ପାହାଚ ଉପରେ ଅଧଘଣ୍ଟା ବସିଲା ପରେ ମୋ ମୁହଁରୁ କଥା ବାହାରିଲା । ସେ ଥିଲା ଅସାଧ୍ୟ ସାଧନର ଏକ ଅପଚେଷ୍ଟା ॥

ପରୀକ୍ଷାଫଳ ବାହାରିଲା ବେଳକୁ ମୁଁ ବାରିପଦାରେ ନ ଥିଲି । ଆମ ଗାଁ ଗୁଣିପୁରଠାରେ ଦାଦା ଖୁଡ଼ୀଙ୍କ ପାଖେ ରହୁଥିଲି । କିଛି ଦିନ ପରେ ଦାଦା କୁଆଡ଼ୁ ଶୁଣିଆସି ଫଳ ବାହାରିଛି ବୋଲି କହିଲେ । ସେଦିନ ଗାଁ ଛାଡ଼ି ବାରିପଦା ଆସିଲି । ଜଗତପୁର (ଏବେ କେନ୍ଦ୍ରାପଡ଼ା ରୋଡ଼୍) ଷ୍ଟେସନ ପାଖରୁ ଖଣ୍ଡିଏ 'ସମାଜ' କିଣି ପଢ଼ିଲି । ମୁଁ ପାଶ୍ କରିଥାଏ ଦ୍ୱିତୀୟ ଶ୍ରେଣୀରେ । ଆଜିକାଲିଭଳି ପରି ରୋଲନମ୍ବର୍ ନୁହେଁ, ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କ ନାଁ ସବୁ ଖବର କାଗଜରେ ଛପା ହୋଇଥାଏ । ବାରିପଦାରେ ପହଞ୍ଚିବା ଆଗରୁ ବାପା ମୋ ପାଶ୍ କରିବା ଖବର ପାଇ ସାରିଥାନ୍ତି । ତାଙ୍କ ମନ ଖୁସିଥାଏ । Patna Universityରେ ଖୁବ କମ ସଂଖ୍ୟକ ଛାତ୍ର ପ୍ରଥମ ଶ୍ରେଣୀ ପାଉଥିଲେ । ଆଜିକାଲି ସ୍କୁଲ ଓ ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ହେତୁ ଶହ ଶହ ଛାତ୍ର ପ୍ରଥମ ଶ୍ରେଣୀ ପାଉଛନ୍ତି । ମୋର ଭୂଗୋଳରେ ଶହେରୁ ମାତ୍ର ଚଉତ୍ରିଶ ନମ୍ବର ଥିବାରୁ ମାତ୍ର ଆଠ ନମ୍ବର ପାଇଁ ମୁଁ ପ୍ରଥମ ଶ୍ରେଣୀ ଲାଭ କରିବାରୁ ବଞ୍ଚିତ ହୋଇଥିଲି !

ଯାହାହେଉ, ସୁଯୋଗ ଉଣ୍ଡି "ମୁଁ କଟକ ଯାଇ କଲେଜ୍‌ରେ ପଢ଼ିବି" ବୋଲି ବାପାଙ୍କୁ କହିଲି । ସେ କହିଲେ, "ଦେଖ୍, ମୁଁ ଯାହା ଦରମା ପାଉଛି, ସେଥିରେ ସ୍ତ୍ରୀ ପିଲା ଆଉ ସୁନ୍ଦରକୁ ନେଇ ଘର, ପାଞ୍ଚଜଣଙ୍କୁ ଚଳେଇବା କଷ୍ଟକର; ତତେ କଲେଜ୍‌ରେ ପଢ଼ିବା ପାଇଁ ଏତେ ଟଙ୍କା ଦେବି କୋଉଠୁ ? ତୁ ବରଂ କଟକ ଯା, ଖଣ୍ଡେ ଚାକିରି ଯୋଗାଡ଼ କର ।" ସତେ ତ ! ସେ ଗଲେ, ବୋଉ, ମୋର ସାନ ଭାଇ, ଭଉଣୀ ଦୋଟି, ଆଉ ସୁନ୍ଦର—କେମିତି ଚଳିବେ ? ସେଥିରେ ପୁଣି ଗାଈ ବାଛୁରି ହୋଇ ତିନୋଟି ! ଭାଇ କାଳୀଚରଣକୁ ପାଞ୍ଚବର୍ଷ, ଭଉଣୀ ଶାନ୍ତ ତିନିବର୍ଷର ଛୁଆଟିଏ । ସେମାନେ ତ ପୁଣି ଖାଇ ପିଇ ମଣିଷ ହେବେ, ପାଠ ପଢ଼ିବେ ! ଏଇ ସବୁ କଥା ବିଚାର କରି, ପୋଥିପତ୍ରରେ ଡୋରି ବାନ୍ଧି, ଦିନେ ଶୁଭବେଳା ଦେଖି କଟକ ଅଭିମୁଖେ ରୱାନା ହେଲି । ବାରିପଦାର ଲୀଳାଖେଳା ସରିଗଲା । ପଛରେ ରହିଗଲା ପ୍ରିୟ ହାଇସ୍କୁଲ, ଖେଳ ପଡ଼ିଆ ଆଦି ପିଂକର ବନ୍ଧ ।

ଆଖି ଲୁହରେ ବିଦାୟ ସମ୍ଭାଷଣ ଜଣାଇଲେ ମୋର ଅତିପ୍ରିୟ ସାଙ୍ଗସାଥୀ ମାନେ । ମୟୂରଭଞ୍ଜ ମହାରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ପାତଳ ରେଳ (Light Railway) ମୋତେ ନେଇ ବାରିପଦା ଷ୍ଟେସନ୍ ଛାଡ଼ିଲା ।

ମୋର ଜଣେ ଦାଦା (ବାପାଙ୍କ ଦାଦା ପୁଅ ଭାଇ) ସ୍ୱର୍ଗତଃ ଦୁର୍ଗାଚରଣ ପଟ୍ଟନାୟକ କଟକ କଲେକ୍ଟରେଟ୍‌ରେ ପେସ୍କାର କାମ କରୁଥାନ୍ତି । ବାପା ମୋ ହାତରେ ଖଣ୍ଡିଏ ଚିଠି ତାଙ୍କ ପାଖକୁ ପଠାଇଥିଲେ । ସେଇ ଚିଠି ଉପରେ ଲେଖାଥିବା ଠିକଣା ମୁତାବକ କଟକ ରେଲୱେ ଷ୍ଟେସନରୁ ସିଧା ସିଧା ହାତଟଣା ରିକ୍‌ସାରେ ଆସି ସେଖବଜାରରେ ପହଞ୍ଚିଲି । ସେଇଠି ବଡ଼ବାପାଙ୍କ ଘରେ ଗୁଣିପୁର ମେସ୍ କରି ଦାଦା ରହୁଥାନ୍ତି । ମୁଁ ସେଠାରେ ପହଞ୍ଚିଲା ବେଳକୁ ଦୁର୍ଗାଚରଣ ଦାଦା ଅଫିସ୍‌ରୁ ଆସି ନ ଥିଲେ । ସେଇ ବସାରେ ବଟ ବୋଲି ଯେଉଁ ପୂଝାରୀ ଥିଲା, ସେ କହିଲା, "ଗୋଡ଼ ହାତ ଧୋଇ ଆସ, ଜଳଖିଆ ଟିକିଏ ଖାଇଦିଅ ।" ତାର କଥା ଅନୁସାରେ ସବୁକାମ ସାରିଦେଲି । ବଟ କହିଲା, "କଟକ ଚଣ୍ଡୀ ମନ୍ଦିର ଦେଖିଛ ?" ମୁଁ କହିଲି, "ହଁ, ରିକ୍‌ସାରେ ଆସିଲା ବେଳେ ଦେଖିଛି ।" ବଟ ପୁଣି କହିଲା, "ଭଲ କଥା । ଯାଅ, ବୁଲିଆସିବ, ସେଇବାଟେ ମା'ଙ୍କର ଦର୍ଶନ କରି ବୁଲିଆସିବ । ତୁମ ଦାଦା ସଞ୍ଜ ବେଳକୁ ଅଫିସ୍‌ରୁ ଆସିବେ ।" "ହଉ, ଯାଉଛି" କହି ବାହାରିଲି । ରିକ୍‌ସାରେ ଆସିଲା ବେଳେ ଚଣ୍ଡୀ ପାଖ ହୋଟେଲରେ "ମିଲ୍ ଅଛି କି ? କେତେ ପଡ଼ିବ ?" ବୋଲି ପଚାରିବାରେ ହୋଟେଲ ମାଲିକ କହିଥିଲା, "ବାବୁ, ସାଧା ମିଲ୍ ଛଅ ପଇସା (ଏବେକାର ଦଶ ନୂଆ ପଇସା), ମାଛ ମାଂସ ମିଲ୍ ଦୁଇଅଣା (ଏବେକାର ବାର ନୂ: ପଃ) । ହେଲେ ଏବେ ତ ମିଲ୍ ନାହିଁ, ଓଳଟା ବେଳକୁ ସରିଯାଏ !" ଆଜି ଭାବୁଛି, କେତେ ଶସ୍ତା ଓ ସୁବିଧା ନ ଥିଲା ସତେ !

ବୁଲି ବାହାରିଲି । 'କଟକ ନଗର, ଧବଳ ଟଗର' ବୋଲି ପିଲାଦିନେ ପଢ଼ିଥିଲି । କିନ୍ତୁ ଦେଖିଲି, ପକ୍‌କାଘର ତୁଳନାରେ ଖପରଘର ବେଶି । ନାଲି ମାଟିର ରାସ୍ତାଘାଟ; ଗଳି ଆଉ ଉପଗଳିରେ ଭରା ସହର । କାଣ୍ଡପଡ଼ିଆ ଆଡ଼େ ବୁଲାବୁଲି କରି (ଷ୍ଟାଡ଼ିୟମ୍ ତିଆରି ହୋଇ ନ ଥାଏ) ସଞ୍ଜ ଆଗରୁ ଚଣ୍ଡୀ ମନ୍ଦିରରେ ପହଞ୍ଚିଲି । ଅଧଲାକର (ସେତେବେଳେ ପଇସା ଗୋଟିକ ଦୁଇ ଅଧଲା ବା ତିନି ପାହୁଲା ସହିତ ସମାନ) ଦୀପ କିଣି ଜାଳିଲି ଓ ମୁଣ୍ଡିଆ ମାରିଲି । ଚଣ୍ଡୀ କଟକର ଅଧିଷ୍ଠାତ୍ରୀ ଦେବୀ ବୋଲି ଶୁଣିଥିଲି, ଆଜି ମା'ଙ୍କର ନିରୋଳା ଦର୍ଶନ ଲାଭ କରି ତନୁ ମନ ପବିତ୍ର ହୋଇଗଲା । ମନ୍ଦିରରୁ ଫେରି ଗୁଣିପୁର ମେସ୍‌ରେ ପହଞ୍ଚିଲା ବେଳକୁ ସଞ୍ଜ ଅତୀତ ହୋଇଛି । ରାସ୍ତାରେ ବିଜୁଳିବତୀ ଜଳିଲଣି । Electricity ଯୋଗାଇବା ଦାୟିତ୍ୱ ନେଇଥାନ୍ତି Puri Electricity Supply

Company. ପ୍ରଧାନରାସ୍ତା ମାନଙ୍କରେ କାମ ଚାଲିଥାଏ; କିନ୍ତୁ ଗଳିକୁଞ୍ଚି ମାନଙ୍କରେ ଠାଏ ଠାଏ କାଠଖୁଣ୍ଟ ଉପରେ ଲଣ୍ଠଣ ଭଳି କିରାସିନ ବତି ସବୁଥାଏ। ଟିମ୍ ଟିମ୍ ହୋଇ ସେ ବତି ସବୁ ଦୁଇ ତିନ ଘଣ୍ଟା ଜଳେ, ତେଲ ସରିଲେ ତା'କାମ ସରିଯାଏ। ସାଇକେଲ୍, ହାତଟଣା ରିକ୍ସା, ଘୋଡ଼ାଗାଡ଼ି ସବୁ ଟିଣ୍ ଟିଣ୍ କରି ଯାତ୍ରୀମାନଙ୍କୁ ନେଇଯାନ୍ତି; ପଥଚାରୀ ବିଚାରା ନାଲି ରାସ୍ତାରେ, ଗଳି ଭିତରେ ତଳକୁ ଚାହିଁ ଚାହିଁ ସନ୍ତର୍ପଣରେ ବାଟ ଚାଲେ। ବାରିପଦା ସହରର ତୋଫା ଆଲୁଅରୁ ଆସି କଟକର ଅନ୍ଧାରୀ ଗଳିରେ ରହିବାକୁ ପଡ଼ିବ, ଏ ଭାବନାରେ ମନ ମୋର ବଥେଇ ଉଠିଲା। କିନ୍ତୁ ନିଜର ଭାଗ୍ୟ ଗଢ଼ିବା ପାଇଁ ସ୍ଥାନ-କାଳ-ପାତ୍ରର ବିଚାର କରି ଲାଭ ବା କଅଣ ?...

ଜୀବନରେ ପ୍ରଥମ ଥର ପାଇଁ କଟକ ଆସିଥାଏ। ଦାଦା ମୋତେ ଦେଖି ଭାରି ଖୁସି ହେଲେ। ବାପା ଦେଇଥିବା ଚିଠି ତାଙ୍କୁ ଦେଲି। ପଢ଼ିସାରି କହିଲେ, "ଭଣ୍ଡା, ସ୍କୁଲଖୋଲା ତ ଯେତେବେଳେ ହବ ହବ, ତୁ ଆଗ ଏଇଠି ରହି ସବୁଆଡ଼ ବୁଲିବୁଲି କର। କଟକ ସହର ବାରିପଦା ପରି ଛୋଟ ନୁହେଁ। ବହୁତ ବଡ଼ ସହର। ''ବାଉନ ବଜାର ତେପନ ଗଳି''। ଏଠିକାର ରାସ୍ତାଘାଟ ସାଂଗରେ ତୋର ପରିଚୟ ଆଗେ ହେଇଯାଉ; ତୁ କାଠଯୋଡ଼ି କୂଳ, ସତୀଚଉରା, ଗଡ଼ଗଡ଼ିଆ, ଗଡ଼ଚଣ୍ଡୀ ମନ୍ଦିର, କ୍ୟାଣ୍ଟନମେଣ୍ଟ୍ ରୋଡ୍, ଗୋରାକବର, ବକ୍ସି ବଜାର, ଚୌଧୁରୀ ବଜାର, ରାଣୀହାଟ, ରେଭେନ୍ସା କଲେଜ୍, ମାଲଗୋଦାମ, ଛତାବଜାର, ରେଲଓ୍ୱେ ଷ୍ଟେସନ, ଲେଭଲ୍ କ୍ରସିଂ, କଟକ କଲେକ୍ଟରେଟ୍, ଆଉ ସବୁ ଅଫିସ୍ ଚାରିଆଡ଼ ବୁଲି ଦେଖ୍। ସାଇକେଲ୍ ଚଢ଼ି ଜାଣିଚୁ ତ ?'' ମୋଠୁଁ ଆସ୍ତିବାଚକ ଉତ୍ତର ଶୁଣି ସେ କହିଲେ "ହଉ, ମୋ ସାଇକେଲ୍ ନେଇଯିବୁ। ହୁସିଆର ହୋଇ ଚଳେଇବୁ !''

ଦାଦାଙ୍କ କଥା ମାନି ଦିନ ପନ୍ଦରଟା ଭିତରେ ଚାରିଆଡ଼ ବୁଲି ଦେଖିଲି। ଧୀରେ ଧୀରେ କଟକ ସହର ପ୍ରତି ମୋର ଆକର୍ଷଣ ସୃଷ୍ଟି ହେଲା। ହେଲେ, ଏ କଟକ କାହାର ? ଓଡ଼ିଶାର ଖ୍ୟାତନାମା ଗଜପତି ମହାରାଜ କପିଳେନ୍ଦ୍ରଦେବ, ଯଯାତି କେଶରୀ ନା ମୁକୁନ୍ଦ ଦେବଙ୍କର ନା ତକି ଖାଁ, ମୁର୍ଶିଦ୍ କୁଲି ଖାଁ, ବାଜିରାଓ ନା ଇଂରେଜ ଇଷ୍ଟ୍ ଇଣ୍ଡିଆ କଂପାନିର କଟକ ? ନା, ନା, ସେ କଟକ କାହାର ନୁହେଁ, ଓଡ଼ିଆଙ୍କର ! ନିଜସ୍ୱ ଭାଷା, ସଂସ୍କୃତି, ଐତିହ୍ୟ ଆଉ ମହାନ୍ ପରମ୍ପରା ନେଇ ସମୃଦ୍ଧ ଏହି କଟକ ସହର ! ସହରବାସୀଙ୍କର ପରସ୍ପର ପ୍ରତି ଭାଇଚାରା ତଥା ସୌହାର୍ଦ୍ଦ୍ୟ, ଜାତି ଧର୍ମ ନିର୍ବିଶେଷରେ ଆତ୍ମାର ମିଳନ ହିଁ ଏହାର ବିଶେଷତ୍ୱ ! ନିଶ୍ଚିତ ଭାବେ ଏହା ସମଗ୍ର ଓଡ଼ିଶାର ସଂସ୍କୃତିର ପ୍ରାଣକେନ୍ଦ୍ର !

କିନ୍ତୁ ସେଦିନର କଟକ ଆଉ ଆଜିର କଟକ ଭିତରେ ଆକାଶ ପାତାଳ ତଫାତ୍‌ । ସେତେବେଳେ ଏହା ଓଡ଼ିଶାର ରାଜଧାନୀ ଥିଲା, ଏବେ ହୋଇଛି ଭୁବନେଶ୍ୱର । କଟକର ଲୋକସଂଖ୍ୟା ଥିଲା ମାତ୍ର ତିରିଶ ହଜାର, ବର୍ତ୍ତମାନ ପ୍ରାୟ ପାଞ୍ଚ ଲକ୍ଷ ! ଏବେ ରାସ୍ତା ସବୁ ପିଚୁ ହୋଇଯାଇଛି । କେତେବେଳେ ସେଇ ରାସ୍ତାକୁ ପାଣିକଳବାଲା ଖୋଳି ପକାଉଛନ୍ତି ତ କେତେବେଳେ କଟକ ମ୍ୟୁନିସିପାଲ୍‌ କରପୋରେସନ୍‌ ; କେତେବେଳେ P.W.D. Office ତ କେତେବେଳେ ଟେଲିକମ୍‌ ବିଭାଗ ! ଖୋଳା ଆଉ ପୋତା, ପୋତା ଆଉ ଖୋଳା ! ଏ ହଟଚମଟରେ ରାସ୍ତାର କ୍ଷତି ହେବା ସହିତ କୋଟି କୋଟି ଟଙ୍କା ଖର୍ଚ୍ଚ ! କଟକରେ ପାର୍କମାନ ହୋଇଛି, ମହାନଦୀ ବ୍ୟାରେଜ୍‌ ହୋଇଛି, ଆଉ ଲେଭଲ୍‌ କ୍ରସିଂ ଉପରେ ହୋଇଛି ଏକ ବିରାଟ ଓଭରବ୍ରିଜ୍‌ ! କାଠଯୋଡ଼ି ନଦୀର ବନ୍ଧ ପଛକୁ ଏକ ନୂଆ ବନ୍ଧ ତିଆରି ହୋଇ ଗଢ଼ିଉଠିଛି ଏକ ନୂତନ ସହର—ଅଭିନବ ବିଡ଼ାନସୀ । କଳ କାରଖାନା ସବୁ ପ୍ରତିଷ୍ଠିତ ହୋଇଛି, ଦୋକାନ, ବଜାରର ସଂଖ୍ୟା ଅନେକ ବଢ଼ିଛି । ଘୋଷିତ, ଅଘୋଷିତ ବିଜୁଳି କାଟ ହେଉଛି, ପାଣିକଳମାନଙ୍କରେ ନାନା ରଙ୍ଗର ପାଣି ଆସୁଛି । ମୋଟ ଉପରେ ସହର ଆଜି ଯାହା ଅବସ୍ଥା ଥିଲା, ନଗର ହେବା ପରେ ବହୁ ଆଖିଦୃରୁଶିଆ ପରିବର୍ତ୍ତନ ହୋଇଛି । ଜନ ସଂଖ୍ୟା ବୃଦ୍ଧି ସହିତ ହଜାରେ ବର୍ଷର ଏହି ପ୍ରାଚୀନ ସହରରେ ରାସ୍ତା ଉପରେ ଗାଈ, ଗୋରୁ, କୁକୁର ନିର୍ଭୟରେ ବୁଲୁଛନ୍ତି ଓ ବୁଲାଷଣ୍ଢଙ୍କ ଉତ୍ପାତ ବହୁତ ବୃଦ୍ଧି ପାଇଛି । ତା'ଛଡ଼ା ନାଳ, ନର୍ଦ୍ଦମାରେ ଆବର୍ଜନା ଭର୍ତ୍ତି ହୋଇ ମଶା ହୃଷ୍ଟପୁଷ୍ଟ ହୋଇ ବଂଶ ବୃଦ୍ଧି କରୁଛନ୍ତି । କାଠଯୋଡ଼ି କୂଳରେ ଦୁର୍ଗନ୍ଧ ଯୋଗୁଁ ଆରାମରେ ବସି ଦକ୍ଷିଣା ପବନ ଟିକିଏ ଉପଭୋଗ କରିବା ବିଡ଼ମ୍ବନା ହୋଇଛି । ଭଲ ମନ୍ଦ ତ ସବୁବେଳେ ଲାଗି ରହିଛି, ରହିଥିବ; ସମାଲୋଚନା କରି ଲାଭ କିଛି ନାହିଁ !

ଭୁବନେଶ୍ୱର ରାଜଧାନୀ ହେବାପରେ କଟକରେ ଥିବା ବଡ଼ ବଡ଼ ଅଫିସ୍‌ ସେକ୍ରେଟେରିଏଟ୍‌, ହେଡ୍‌ସ୍‌ ଅଫ୍‌ ଡିପାର୍ଟମେଣ୍ଟର କେତେକ ଅଫିସ୍‌ ସବୁ ସେଠାକୁ ସ୍ଥାନାନ୍ତରିତ ହୋଇଛି । ଜିଲ୍ଲାପ୍ରଶାସନ ଅଫିସ୍‌ ଗୁଡ଼ିକ ଅଛି କଟକରେ, ଦୂରଦର୍ଶନ କେନ୍ଦ୍ର ମଧ୍ୟ କଟକରେ ନାହିଁ । କେବଳ ଅଛି ଓଡ଼ିଶା ହାଇକୋର୍ଟ; ତାକୁ ମଧ୍ୟ ଭୁବନେଶ୍ୱର ଉଠାଇବାକୁ ଚେଷ୍ଟା ଚାଲିଛି, ତୁହାକୁ ତୁହା ପ୍ରସ୍ତାବ ଆସୁଛି । ବହୁ ପୁରାତନ ରେଭେନ୍‌ସା କଲେଜ୍‌ ଓ ହାଇକୋର୍ଟ ବର୍ତ୍ତମାନ କଟକର କିଛିଟା ମହତ୍ତ୍ୱ ରଖିଛି । ଏବେ କଟକ ଦୋକାନ-ବଜାର-କାରବାର-କେନ୍ଦ୍ର ଭାବେ ମାନ୍ୟତା ପାଇବା ଛଡ଼ା ତାର ନିଜସ୍ୱ ଆତ୍ମ-ଅଭିମାନ ଓ ଗରିମା କିଛି ନାହିଁ କହିଲେ ଚଳେ । କେବଳ ମାତ୍ର ସ୍ଥାନୀୟ ବୁଦ୍ଧିଜୀବୀ, ସାହିତ୍ୟିକ ସାମ୍ବାଦିକ

ଓ କଳାକାର ଭୁଲ ଏହାର ମର୍ଯ୍ୟାଦାରକ୍ଷା କରିବାରେ ସମର୍ଥ ହୋଇଛନ୍ତି । କଥା ପ୍ରସଙ୍ଗରେ କଟକ ନଗର ସମ୍ବନ୍ଧରେ ଏଣୁ ତେଣୁ ବହୁତ କଥା ଲେଖିଗଲିଣି । ମୋ ଆତ୍ମ-ଜୀବନୀରେ ଏହାର ଆବଶ୍ୟକତା ନ ଥିଲା; ମାତ୍ର ଯେଉଁଠି ଶ୍ରୀ ରାମଚନ୍ଦ୍ର ମେଡ଼ିକାଲ କଲେଜ ଓ ଡାକ୍ତରଖାନା, ଶ୍ରୀ ରାମଚନ୍ଦ୍ର ଭବନ ଭଳି ଅନୁଷ୍ଠାନ ବିଦ୍ୟମାନ, ଅତୀତରେ ଯେଉଁଠି ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା, ଗାନ୍ଧୀଜୀଙ୍କର ସଭା ଅନୁଷ୍ଠିତ ହୋଇଥିଲା, ଏବଂ ଯାହାର ତାରକସୀ କାମ ପୃଥିବୀ ବିଖ୍ୟାତ, ଅଦ୍ୱିତୀୟ କ୍ରୀଡ଼ା କ୍ଷେତ୍ର ଭାବେ ବାରବାଟୀ ଷ୍ଟାଡ଼ିୟମ୍, ଜବାହାର ନେହେରୁ ଇନ୍‌ଡୋର୍ ଷ୍ଟାଡ଼ିୟମ୍ ଯେଉଁଠି ପ୍ରତିଷ୍ଠିତ; ଏବଂ ଯେଉଁଠି ମୋର କର୍ମମୟ ଜୀବନ ତଥା ନାଟ୍ୟକାର ଜୀବନର ଅଧିକାଂଶ ସମୟ ଅତିବାହିତ, ସେ ବାରବାଟୀ ଦୁର୍ଗର ଐତିହାସିକ ଗୌରବାନ୍ୱିତ ସ୍ୱାକ୍ଷର ବହନ କରିଥିବା ହଜାରେ ବର୍ଷ ତଳର ଅତି ପୁରାତନ ସହର କଟକ ସମ୍ପର୍କରେ କିଛି ନ କହିବା ଅସୁନ୍ଦର ଓ ଅଯୌକ୍ତିକ ହେବ ବିଚାରି ଉପରେ ଲିପିବଦ୍ଧ କରିଅଛି ।

କଟକର ଦୁଇଟି ବଡ଼ ପର୍ବ ହେଉଛି ଦଶହରା ଓ ମହରମ୍ । ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଭାଇମାନେ ଏକାଠି ହୋଇ ଏହି ପର୍ବମାନଙ୍କରେ ଅଂଶ ଗ୍ରହଣ କରନ୍ତି । ମୁଁ ଯେଉଁବର୍ଷ କଟକ ଆସିଲି, ସେହିବର୍ଷଠୁ ମୁଁ ଉଭୟ ଉତ୍ସବରେ ଅର୍ଥାତ୍ ଯାତ୍ରା ଓ ପଟୁଆରରେ ଯୋଗଦେଇ ଆନନ୍ଦ ଲାଭ କରିଛି । ମହରମ୍‌ରେ ସୁନ୍ଦର ଜରି ଓ ଅଭ୍ରକାମର 'ତାଜିଆ' ସବୁ ବାହାରେ, ଜାତି-ଧର୍ମ-ନିର୍ବିଶେଷରେ ସମସ୍ତେ ଯୋଗଦାନ କରନ୍ତି । କେତେ ବର୍ଷହେଲା ମହରମ୍‌ରେ 'ତାଜିଆ' ବାହାରୁ ନାହିଁ କିନ୍ତୁ ଦୁର୍ଗା ଓ ମହାଦେବ ମେଢ଼ ସଂଖ୍ୟା ଯଥେଷ୍ଟ ବଢ଼ିଛି । ସପ୍ତମୀ ପୂଜାଠାରୁ ମେଢ଼ ଭସାଣି ପର୍ଯ୍ୟନ୍ତ ଖୁବ୍ ଧୁମ୍‌ଧାମ୍‌ରେ, ମହା-ସମାରୋହରେ ଏହି ଜାତୀୟ ପୂଜା ଦୁର୍ଗୋତ୍ସବ ପାଳିତ ହୁଏ । ମନ୍ଦିର, ମସଜିଦ୍, ଗୁରୁଦ୍ୱାର ଓ ଗୀର୍ଜାମାନଙ୍କରେ ଯେଉଁଭଳି ଭାବରେ ପୂଜାର୍ଚ୍ଚନା କରାଯାଏ, ସେଥିରେ ଜାତୀୟ ସଂହତିର ଅପୂର୍ବ ଚିତ୍ର ଦେଖି ମୁଁ ଆତ୍ମହରା ହୋଇଯାଏ । ପ୍ରାର୍ଥନା କରେ, "ହେ ଈଶ୍ୱର ! ଯେଉଁ ରୂପରେ ତୁମେ ଥାଅ ପଛକେ, ଏ ମାନବ ଜାତିକୁ ତୁମେ କଲ୍ୟାଣ କର, ସଦ୍‌ବୁଦ୍ଧି ଦିଅ ।" ପୁଣ୍ୟାତ୍ମା, ଉତ୍କଳମଣି ଗୋପବନ୍ଧୁ ଲେଖିଛନ୍ତି :—

"ଦିଅ ଯା' ଦେବାର
ସୁଖ ଅବା ଦୁଃଖ
ଯାହା ଇଚ୍ଛା ହେ ଈଶ୍ୱର,
ତଥି ମଧ୍ୟେ ଯେମନ୍ତେ
ମଙ୍ଗଳ କେବଳ
ଦେଖୁ ଏ ନେତ୍ର ମୋହର ।"

ଭବଙ୍କର ଏହି ମହତ୍ତ୍ଵ ଚିନ୍ତା, ସମଗ୍ର ମାନବଜାତି ଲାଗି ଏହି ମଙ୍ଗଳ କାମନା, ବାସ୍ତବିକ୍ ପ୍ରଣିଧାନଯୋଗ୍ୟ । ତାଙ୍କର ଚିନ୍ତାଧାରା ସହିତ ଏକମତ, ଏକପ୍ରାଣ ହୋଇ ମୋର ମଧ୍ୟ ସକଳ ଧର୍ମର ଗୁରୁ ଓ ସନ୍ଥମାନଙ୍କୁ ନମସ୍କାର । ଏ ଦେଶରୁ ଦୂର ହେଉ କୁସଂସ୍କାର ଆଉ ଧର୍ମାନ୍ଧତା, ବହିଷ୍କୃତ ହୋଇଯାଉ ଜାତିଗତ ଭେଦଭାବ ଓ ସ୍ୱାର୍ଥ-କେନ୍ଦ୍ରିକତାର ଅନୈତିକତାରୁ ଅଦୁମ୍ଭିତା । ଦୁର୍ନୀତି ଓ ଭ୍ରଷ୍ଟାଚାରର ଧ୍ୱଂସହେଉ, ଜୟ ହେଉ ବିଶ୍ୱ-ଅଧିଷ୍ଠିତ ମାନବ ଜାତିର ।

---

—ଦୁଇ—

କଟକ ଆସି ରୁଜୁର କରିବା ପୂର୍ବରୁ ତିନି, ଚାରିଖଣ୍ଡ ନାଟକ ଲେଖିଥିଲି । 'ସ୍ୱଜାତି,' 'ପ୍ରେମପୁଷ୍ପ,' 'ପରିଣତି' ଓ 'ଦାବୀ' । ରୁଜୁର କରିବା ପରେ ପରେ ଲେଖିଲି 'ଅଦୃଷ୍ଟ ଚକ୍ର' । 'ସ୍ୱଜାତି' ଓ 'ପ୍ରେମପୁଷ୍ପ' ନାଟକ ରଚନା ସମ୍ବନ୍ଧରେ କହିବାକୁ ହେଲେ ଆମକୁ ଟିକିଏ ପଛକୁ ଫେରିଯିବାକୁ ହେବ । କାରଣ ସେ ଦୁଇଟି ରଚିତ ହୋଇଥିଲା ବାରିପଦାରେ, ମୋର ଛାତ୍ରାବସ୍ଥାରେ । ବାରିପଦା Band Standରେ ପ୍ରତି ଶନିବାର ସନ୍ଧ୍ୟାବେଳେ ମହାରାଜାଙ୍କ ବ୍ୟାଣ୍ଡପାର୍ଟି (ପରେ ମହାରାଜା ଯାହାକୁ ଓଡ଼ିଶା ପୋଲିସ୍‌କୁ ଦେଇ ଦେଇଥିଲେ) ଗୋଟିଏ ପାର୍କ ମଝିରେ ମଞ୍ଚ ଉପରେ ଘଣ୍ଟାଏ ଦେଢ଼ଘଣ୍ଟା ବଜାଉଥିଲେ । Band Master ଥାନ୍ତି ଜଣେ Russian ସାହେବ । ସେ ସମୟରେ ତାଙ୍କ ମାସିକ ବେତନ ଥିଲା ଦୁଇହଜାର ଟଙ୍କା । ବାଗ୍‌ବାନ ଫୁଲରେ ଭରା ସେଇ ପାର୍କରେ କେତେଗୁଡ଼ିଏ ଲୁହା ବେଞ୍ଚ ପଡ଼ିଥାଏ ବ୍ୟାଣ୍ଡ୍‌ଷ୍ଟାଣ୍ଡକୁ ଘେରି । ସେଇଠାରେ ବସି ବାରିପଦାର ସୌଖୀନ ଲୋକେ ବ୍ୟାଣ୍ଡ୍ ଉପଭୋଗ କରୁଥିଲେ । ଆମ ଘରଠୁ ତାହା ଅଳ୍ପଦୂର ଥିବାରୁ ମୁଁ ପ୍ରାୟ ପ୍ରତି ଶନିବାର ସେଠାରେ ଯାଇ ବସେ । ସେଇଠି ବସି ବସି 'ସ୍ୱଜାତି,' 'ପ୍ରେମପୁଷ୍ପ' ନାଟକ ଓ 'ମରୁପଥିକ' ଉପନ୍ୟାସର ପରିକଳ୍ପନା କରିଥିଲି । ସରସ୍ୱତୀ ପୂଜାରେ ହାଇସ୍କୁଲ ପିଲାମାନେ ମୋର 'ସ୍ୱଜାତି' ନାଟକର ଅଭିନୟ କରିଥିଲେ । ସେହି ନାଟକରେ ମୁଁ ରହିମ୍ ଖାଁ ଭୂମିକାରେ ଅଭିନୟ କରିଥିଲି । ଏହି ନାଟକ ହେଉଛି ଏକ ଐତିହାସିକ ନାଟକ; ମାତ୍ର ଇତିହାସର କୌଣସି ଘଟଣା କିମ୍ବା କୌଣସି ସତ୍ୟ ଉପରେ ଆଧାରିତ ନୁହେଁ । ଏହାର ରଚନାକାଳ ଥିଲା ୧୯୩୮ ମସିହା । ମଞ୍ଚ-ସାଫଲ୍ୟ ଦୃଷ୍ଟିରୁ

'ପ୍ରେମପୁଷ୍ପ' ଓ 'ପରିଣତି' ନାଟକର କିଞ୍ଚିତ ଆଲୋଚନା ଆବଶ୍ୟକ। ଇଂଲଣ୍ଡ ଅଧିପତି ଅଷ୍ଟମ ଏଡ୍‌ଓ୍ୱାର୍ଡ୍ ଓ ଲେଡ଼ି ସିମ୍ପସନ୍‌ଙ୍କ ଆଦର୍ଶ ପ୍ରେମ କାହାଣୀ ଏବଂ ଏଡ଼ୁଓ୍ୱାର୍ଡ୍‌ଙ୍କର ସିଂହାସନ ତ୍ୟାଗ ଘଟଣାକୁ ଭିତ୍ତିକରି 'ପ୍ରେମପୁଷ୍ପ' ନାଟକର ପରିକଳ୍ପନା କରିଥିଲି, ମାତ୍ର ଏହାଥିଲା ସମ୍ପୂର୍ଣ୍ଣ କାଳ୍ପନିକ। ଉକ୍ତ ନାଟକ ଆମ ଗାଁର "ଗୁଣିପୁର ୟଙ୍ଗ୍ ଡ୍ରାମାଟିକ କ୍ଲବ୍" ଦ୍ୱାରା ଦୁଇଥର ଅଭିନୀତ ହୋଇଥିଲା ଓ ସେଥିରେ ମୁଁ ନାୟିକା "ପୁଷ୍ପ" ଭୂମିକାରେ ଅଭିନୟ କରି ସେହି ଅଞ୍ଚଳର ଦର୍ଶକମାନଙ୍କ ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲି। ଆମର ସେହି କ୍ଲବ ସମ୍ବନ୍ଧରେ ମୁଁ ସ୍ଥାନାନ୍ତରରେ ଆଲୋଚନା କରିବି। "ପରିଣତି" ନାଟକ ଅଭିନୀତ ହୋଇଥିଲା କଟକ ଇଂଜିନିୟରିଂ ସ୍କୁଲର ଛାତ୍ରମାନଙ୍କ ଦ୍ୱାରା। ଏହା ଏକ ପୂର୍ଣ୍ଣାଙ୍ଗ ସାମାଜିକ ନାଟକ। "ପରିଣତି" ବା "The finishing Touch" ନାଟକରେ ସେ ସ୍କୁଲର ଛାତ୍ର ଶ୍ରୀମାନ୍ ଗୋବିନ୍ଦ ତେଜ୍ ତାଙ୍କ ଜୀବନର ପ୍ରଥମ (ଖଳନାୟକ) ଅଭିନୟ ବେଶ୍ ସଫଳତାର ସହିତ କରିଥିଲେ। ସେ ଏବେ ଓଡ଼ିଆ ଚଳଚ୍ଚିତ୍ର ଜଗତର ଏକ ଉଜ୍ଜ୍ୱଳ ତାରକା ଓ ସଫଳ ନିର୍ଦ୍ଦେଶକ। ଉଲ୍ଲିଖିତ ପାଣ୍ଡୁଲିପି ନାଟକ ଅଦ୍ୟାବଧି ଛପା ହୋଇନାହିଁ। ଯଦି କେବେ ଗ୍ରନ୍ଥାବଳୀ ପ୍ରକାଶିତ ହୁଏ, ମୋ ପାଖରେ ଗଚ୍ଛିତ ଥିବା ଏହି ପାଣ୍ଡୁଲିପି ଗୁଡ଼ିକ ସେଥିରେ ସନ୍ନିବେଶିତ କରାଯିବାର ଆଶା ଅଛି। "ଆଶା ତ ବୈତରଣୀ ନଦୀ"—ଦେଖାଯାଉ, କଣ ହେଉଛି ?...

୧୯୪୨ ମସିହା ନଭେମ୍ବର ମାସରେ ମୁଁ କିରାଣୀ ଭାବେ କଟକ କଲେକ୍ଟରେଟ୍‌ରେ join କରିଥିଲି। ପ୍ରାୟ ୨୦୦ ପ୍ରାର୍ଥୀ ଇଂରାଜୀ, ଅଙ୍କ, ସାହିତ୍ୟ ଓ type writingରେ ପରୀକ୍ଷା ଦେଇଥିଲୁ; ଖାଲିପଦ ଥିଲା ମାତ୍ର ଦଶୋଟି। ପରୀକ୍ଷାରେ ମୋର type writing ଟିକିଏ ଖରାପ ହୋଇଥିବାରୁ ମୁଁ ପ୍ରଥମ ସ୍ଥାନ ଅଧିକାର କରିପାରିଲି ନାହିଁ, ମାତ୍ର appointment ପାଇଲି। ଚମତ୍କାର କଥା, ଯେଉଁ ନଭେମ୍ବର ୧୩ ତାରିଖରେ ମୋର ଜନ୍ମ, ସେଇ ନଭେମ୍ବର ମାସ ୧୩ ତାରିଖରେ ନିଯୁକ୍ତି ପତ୍ର ପାଇଲି। ସେତେବେଳେ ବଡ଼ ବଡ଼ ଅଫିସର୍ ପ୍ରାୟତଃ ଗୋରା ସାହେବମାନେ ଥିଲେ ମାତ୍ର କଲେକ୍ଟର ଥିଲେ ଶ୍ରୀଯୁକ୍ତ ଲଳିତପ୍ରସାଦ ସିଂହ, I. C. S. ତାଙ୍କ ଘର ବିହାରରେ; କିଛି ବର୍ଷ ପରେ ବିହାରର Chief Secretary ପ୍ରମୋଶନ୍ ପାଇ ସେ ସେଠାକୁ ଚାଲିଯାଇଥିଲେ; ଏବଂ ତାର କେତେ ବର୍ଷ ପରେ ସେ ତ୍ରିପୁରାର ରାଜ୍ୟପାଳ (Governor) ଭାବେ ନିଯୁକ୍ତି ପାଇଥିଲେ।

ମୁଁ କିରାଣି ଭାବେ ଯୋଗଦେବା ସଙ୍ଗେ ସଙ୍ଗେ ମୋତେ Price Control Section ର clerk-cum-typist postରେ ରଖାଗଲା। ସେହି ସମୟରୁ

ରଣ ଓ କଷ୍ଟପିଣ ପାଇଁ କାର୍ଡ଼ ସୃଷ୍ଟିକରାଗଲା । ଆମ ଅଫିସ୍‌ରେ ସବୁ ସମୟରେ ଲୋକମାନେ ଭିଡ଼ ଜମାଇଥାନ୍ତି Ration Card ପାଇବା ପାଇଁ । ଆଗ କିଏ କାର୍ଡ଼ ପାଇବ, ସେଥିପାଇଁ ବହୁ ତର୍କ ବିତର୍କ, ହଟ୍ଟଗୋଳ ଲାଗି ରହୁଥାଏ । Price Control Officer ଭାବେ ଶ୍ରୀଯୁକ୍ତ ହରିବଂଶ ମିଶ୍ର କାର୍ଯ୍ୟ କରୁଥାନ୍ତି ।

ସୁଯୋଗ ଲଭକରି ବେଶି ଫାଇଦା ଉଠାଇବା ପାଇଁ ମାଲଗୋଦାମ ବ୍ୟବସାୟୀ ମାନଙ୍କଠୁ ଆରମ୍ଭ କରି ଖୁଚୁରା ଦୋକାନ ଓ Control dealer ମାନେ Hoarding କରୁଥାନ୍ତି । କଳାପୋତେଇ କାରବାର ଓ କଳାବଜାରର ଦୁଇନମ୍ବର ଧନ୍ଦା ମଧ୍ୟ ଚଳାଇଥାନ୍ତି । ଖାଉଟିମାନେ ପର୍ଯ୍ୟାପ୍ତଭାବେ ହଇରାଣ ହୋଇ ଶେଷରେ ଲିଖିତ ଭାବେ କଲେକ୍ଟର ସାହେବଙ୍କୁ ଜଣାଇଲେ । Collector ଓ District Magistrate L. P. Singh, ସଙ୍ଗେ ସଙ୍ଗେ ସେହି ଅସାଧୁ ବ୍ୟବସାୟୀଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟକ୍ରମ ଆରମ୍ଭ କଲେ । ଲାଲନ୍ ପ୍ରସାଦ ଜଣେ ଟାଣୁଆ ସାଧୁ ଓ ସଚ୍ଚୋଟ ଅଫିସର୍ ଥିଲେ, ଯାହାକୁ ଓଡ଼ିଆରେ କଡ଼ା ହାକିମ ବୋଲି କୁହାଯାଏ । ତାଙ୍କ ନାଁ ଶୁଣିଲେ ଅସାଧୁ ଲୋକେ ଥରହର ହୋଇଯାନ୍ତି । ଖୋଦ୍ ଗୋରା Police Superintendent ହରଗ୍ରୀଭ୍ ସାହେବ ମଧ୍ୟ ତାଙ୍କ orderକୁ ଅମାନ୍ୟ କରିବାକୁ ସାହସ କରନ୍ତି ନାହିଁ । ତତ୍‌କାଳୀନ ଓଡ଼ିଶାର ରାଜ୍ୟପାଳ Sir John Austin Hubback କଲେକ୍ଟର ଲାଲନ୍ ପ୍ରସାଦଙ୍କୁ ତାଙ୍କ କାର୍ଯ୍ୟଦକ୍ଷତା ଲାଗି ବିଶେଷ ଶ୍ରଦ୍ଧା କରୁଥିଲେ । Revenue Commissioner Marood ସାହେବ ମଧ୍ୟ ତାଙ୍କୁ ଖୁବ ଭଲ ପାଉଥିଲେ ।

ଦିନକର କଥା । କଲେକ୍ଟର ହଠାତ୍ ତାଙ୍କ ଚେମ୍ବର୍‌କୁ ମତେ ଡକାଇ ପଠାଇଲେ । ଭାବିଲି, ମୋର ବୋଧହୁଏ କେଉଁଠି କିଛି ଭୁଲ୍ ହୋଇଯାଇଛି, ନହେଲେ ବଡ଼ବାବୁଙ୍କୁ ନ ଡକାଇ ମତେ ଡାକୁଛନ୍ତି କାହିଁକି ? ଏଇ କଥା ଭାବୁ ଭାବୁ ତାଙ୍କ ଚେମ୍ବର ଭିତରକୁ ପଶିଗଲି । "Good Morning Sir !" କହି ତାଙ୍କ ଆଦେଶକୁ ଅପେକ୍ଷା କରି ଛିଡ଼ା ହୋଇରହିଲି । ସେ ଗୋଟିଏ ଫାଇଲ୍ ଉପରୁ ମୁଣ୍ଡ ଉଠାଇ ଟିକେ ଉପରଯାଏ ମତେ ଚାହିଁ ଦେଇଗଲେ । ଗୁରୁଗମ୍ଭୀର କଣ୍ଠରେ ପ୍ରଶ୍ନକଲେ, "Are you the bad typist of the Price Control Section ?" କୌଣସି ଉତ୍ତର ମୁଁ ଖୋଜି ପାଇଲି ନାହିଁ । "Yes Sir" କହିଲେ ଦୋଷ, "No Sir" କହିଲେ ମଧ୍ୟ ଦୋଷ । କଣ କହିବି ? ହଠାତ୍ ଉତ୍ତର ଦେଲି, "I may please be excused Sir !"

ସେ ବୋଧହୁଏ ଏଇ ଉତ୍ତରରେ ସନ୍ତୁଷ୍ଟ ହେଲେ । କହିଲେ, "Don't commit this type of mistake again. Go, try to improve." "Thank you Sir !" କହି Chamber ବାହାରକୁ ଆସି ତୃପ୍ତିର ନିଶ୍ୱାସଟିଏ ମାରିଲି । ମୋ ପିଣ୍ଡରେ ଯେମିତି ପ୍ରାଣ ପଶିଗଲା ।

ଆମ ଗାଁ ଗୁଣିପୁରର "ଖ୍ରୀଷ୍ଟ ଡ୍ରାମାଟିକ କ୍ଲବ୍" ସମ୍ବନ୍ଧରେ ପୂର୍ବରୁ ମୁଁ ସାମାନ୍ୟ ସୂଚନା ଦେଇଛି । ଆମ ଗାଁ ପାଖରେ ବାଲିଆ ନାମରେ ଗୋଟିଏ ଗାଁ ଅଛି । ସେଇଠି "ଖ୍ରୀଷ୍ଟ ଡ୍ରାମାଟିକ୍ କ୍ଲବ୍"ର ଶୁଭ ଦିଆଯାଇଥିଲା । ମୋର ବଡ଼ବାପା ପୁଅ ଭାଇ ଶ୍ରୀଯୁକ୍ତ ବପ୍ରଚରଣ ପଟ୍ଟନାୟକ (ବପ ଭାଇ) ହେଉଛନ୍ତି ଏହାର ପ୍ରତିଷ୍ଠାତା । ମୁଁ ବାରିପଦା ଛାଡ଼ି କଟକ ଆସିବା ପୂର୍ବରୁ ବପ ଭାଇ ସେଇ ବାଲିଆରେ ଦୁଇଖଣ୍ଡି ନାଟକ ମଞ୍ଚସ୍ଥ କରାଇଥିଲେ । ସେ ନାଟକ ଦୁଇଟି ହେଲା ଅଶ୍ୱିନୀ କୁମାରଙ୍କ ରଚିତ 'ସେଓଟ' ଓ ରାମଚନ୍ଦ୍ର ମହାପାତ୍ରଙ୍କ "ସୁଦାମା" । ମାତ୍ର ବପଭାଇଙ୍କ ଅକାଳବିୟୋଗ ଯୋଗୁଁ ଉକ୍ତ କ୍ଲବ୍ ବନ୍ଦ ହୋଇଯାଇଥିଲା । ବଡ଼ବାପା ସ୍ୱର୍ଗତଃ ଆର୍ତ୍ତତ୍ରାଣ ପଟ୍ଟନାୟକ ପୁତ୍ର ଶୋକରେ ଏଭଳି ମର୍ମାହତ ହୋଇପଡ଼ିଥିଲେ ଯେ, ପୁନର୍ବାର ସେ କ୍ଲବ୍‌ର ନାଁ ଧରିବାକୁ କେହି ସାହସ କରିପାରି ନ ଥିଲେ ।

କଲେକ୍ଟୋରେଟ୍‌ରେ ଚାକିରି କରିବା ପରେ ମଝିରେ ମଝିରେ ମୁଁ ଯାଇ ଗାଁରେ ରହୁଥିଲି । ଆର୍ତ୍ତି ବଡ଼ବପାଙ୍କୁ ବୁଝାଇ ସୁଝାଇ ପୁଣି କ୍ଲବ୍‌ର ପୁନରୁଦ୍ଧାର କରିବା ସହିତ ନାଟକ ମଞ୍ଚସ୍ଥ କରିବାପାଇଁ ମୁଁ ବରାବର ତାଙ୍କ ପାଖରେ ବସୁଥିଲି ଓ ସୁବିଧା ସୁଯୋଗ ଉଣ୍ଡି ତାଙ୍କ ହୃଦୟ ପରିବର୍ତ୍ତନ ଲାଗି ଆପ୍ରାଣ ଉଦ୍ୟମ କରୁଥିଲି । ଶେଷରେ ଆଶା ଫଳବତୀ ହେଲା । "ଖ୍ରୀଷ୍ଟ ଡ୍ରାମାଟିକ କ୍ଲବ୍" ଆନୁକୂଲ୍ୟରେ ନାଟକ ସବୁ ପ୍ରତିବର୍ଷ ଗୁଣିପୁର ହାଇସ୍କୁଲ୍ ପାଖ ମେଲଣ ପଡ଼ିଆରେ ଅଭିନୀତ ହେଲା । ବାଲିଆ ଓ ଗୁଣିପୁରର ଆଗ୍ରହୀ ଯୁବକମାନେ ନାଟକରେ ଅଂଶ ଗ୍ରହଣ କରି ନାଟକକୁ ସାଫଲ୍ୟ ମଣ୍ଡିତ କରୁଥିଲେ । ଶ୍ରୀ ଦେବ ପ୍ରସାଦ ଦାଶ, ନନ୍ଦକିଶୋର ଦାସ, ଓ ସାମୁଏଲ ନାୟକଙ୍କ ବଳିଷ୍ଠ ନିର୍ଦ୍ଦେଶନା ହିଁ ନାଟକ ସଫଳତା ପାଇଁ ଏକାନ୍ତ ଭାବେ ଦାୟୀ । ମୋର 'ପ୍ରେମପୁଷ୍ପ' ସ୍ୱର୍ଗତଃ ଅଶ୍ୱିନୀ ବାବୁଙ୍କ 'ଗୋବିନ୍ଦ ବିଦ୍ୟାଧର', ରାମରଂଜନ ମହାନ୍ତିଙ୍କ 'ଗୌଡ଼ ବିଜେତା', 'ହରିଶ୍ଚନ୍ଦ୍ର', କାଳୀଚରଣଙ୍କ 'ଅଭିଯାନ', ଅଦ୍ୱୈତ ପ୍ରସାଦ ମହାନ୍ତିଙ୍କ 'ସାଧବଝିଅ' ରାମଚନ୍ଦ୍ର ମହାପାତ୍ରଙ୍କ "ରଘୁଅରକ୍ଷିତ" ସ୍ୱର୍ଗତଃ ରାମଚନ୍ଦ୍ର ମିଶ୍ରଙ୍କ "ମୂଲିଆ" "ଘରସଂସାର" ଓ "ଭାଇଭାଉଜ" ମୋ ନିଜ ଲେଖା, 'ପ୍ରେମପୁଷ୍ପ', 'ସାଆନ୍ତ ଘର', 'ମାଣିକ ଯୋଡ଼ି', 'ତୋଫାନ' ଓ 'ଅତିଥି' ଓ ଆହୁରି ଅନେକ ନାଟକ ପ୍ରଶଂସାର ସହିତ ମଞ୍ଚସ୍ଥ ହୋଇଥିଲା । ପ୍ରଥମେ ମାଟି

ବୋହୁ ପେଣ୍ଡାଲ୍ ତିଆରି କରି ନାଟକାଭିନୟ କରୁଥିଲୁ । ମାତ୍ର ପରେ ଓଡ଼ିଶା ସରକାରଙ୍କ ସାହାଯ୍ୟ ଓ ଗ୍ରାମବାସୀମାନଙ୍କ ଅକୁଣ୍ଠ ସହଯୋଗ ଓ ସମର୍ଥନ ଯୋଗୁଁ ପକ୍କା ମଞ୍ଚ ଓ ତତ୍ ସଂଲଗ୍ନ ସାଜଘର ଇଟା ସିମେଣ୍ଟରେ ତିଆରି ହୋଇଥିଲା । ପରବର୍ତ୍ତୀ ନାଟକମାନଙ୍କରେ ଆମ ଗାଁର ଝିଅମାନେ ନାରୀ ଭୂମିକାରେ ଅବତୀର୍ଣ୍ଣ ହୋଇ ଅଗଣିତ ଦର୍ଶକଙ୍କ ଶୁଭେଚ୍ଛା ଲାଭ କରିଥିଲେ । ପ୍ରଥମୋକ୍ତ କେତେକ ନାଟକ ଅସ୍ଥାୟୀ ମଞ୍ଚ ଓ ଅନ୍ୟାନ୍ୟ ସମସ୍ତ ନାଟକ ପକ୍କା ରଙ୍ଗମଞ୍ଚ ଉପରେ ଅଭିନୀତ ହୋଇଥିଲା । ସାଲେପୁର, ମାହାଙ୍ଗା, ପଦ୍ମପୁର ପ୍ରଭୃତି ନିକଟବର୍ତ୍ତୀ ଗ୍ରାମର ଲୋକମାନେ ଆସି ଏହି ସବୁ ନାଟକ ଉପଭୋଗ କରୁଥିଲେ । 'ପ୍ରେମପୁଷ୍ପ' ନାଟକର ନାୟିକା ଭୂମିକାରେ ମୁଁ ଅଭିନୟ କରିଥିଲି ଏବଂ ଅନ୍ୟ ନାଟକରେ ମୁଖ୍ୟ ପୁରୁଷ ଭୂମିକାରେ ଅଭିନୟ କରିଥିଲି । ମୋର 'ସାଆନ୍ତ ଘର' ନାଟକରେ ଜୀବନର ଶେଷ ଅଭିନୟ କରିଥିଲି । ସିନ୍, ବାଦ୍ୟ, ଅଙ୍ଗସଜା ପ୍ରଭୃତିରେ ଅନ୍ନପୂର୍ଣ୍ଣା ଥିଏଟରର କେତେକ ଗାୟକ, ଶିଳ୍ପୀ ତଥା ବାଦ୍ୟକାର ଆମ ଗାଁକୁ ଯାଇ ପୂର୍ଣ୍ଣ ସହଯୋଗ କରୁଥିଲେ ବୋଲି ଆମ ନାଟକ ସବୁ ସରସ, ସୁନ୍ଦର ଓ ସଫଳ ହୋଇପାରୁଥିଲା । ସେ ସବୁ ନାଟକ ମଞ୍ଚସ୍ଥ କରିବାରେ ଯେଉଁ ଲୋକମାନେ ବିଶେଷ ସାହାଯ୍ୟ ସହଯୋଗ କରୁଥିଲେ, ସେମାନେ ହେଲେ ଶ୍ରୀ ହରେକୃଷ୍ଣ ପଟ୍ଟନାୟକ, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, ସ୍ୱର୍ଗତଃ ପ୍ରେମାନନ୍ଦ ପଟ୍ଟନାୟକ, ସ୍ୱର୍ଗତଃ ମଥୁରାନନ୍ଦ ପଟ୍ଟନାୟକ, ସ୍ୱର୍ଗତଃ ଦୀନବନ୍ଧୁ ପଟ୍ଟନାୟକ ଏବଂ ସ୍ୱର୍ଗତଃ ସଚ୍ଚିଦାନନ୍ଦ କର ପ୍ରମୁଖ । ଏବେ ବି ଗ୍ରାମ୍ୟ ଡ୍ରାମାଟିକ୍ କ୍ଲବ ରହିଛି ଏବଂ ଗ୍ରାମର ଉତ୍ସାହୀ ଯୁବକମାନେ ମଝେ ମଝେ ନାଟକ ପ୍ରଦର୍ଶନ କରୁଛନ୍ତି । ଏହିପରି ଭାବରେ ଆମେ ପ୍ରତିବର୍ଷ ଦୁଇ ତିନି ଦିନ ପାଇଁ ଦୁଇଟି ନାଟକ ମଞ୍ଚସ୍ଥ କରୁଥିଲୁ ।

କଟକର Collectorate Dramatic Club ସେହି ସମୟରେ କେତେଗୁଡ଼ିଏ ନାଟକ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ମଞ୍ଚସ୍ଥ କରିଥିଲେ । ବିଭିନ୍ନ ଭୂମିକାରେ ଅଂଶଗ୍ରହଣ କରୁଥିଲେ ଉକ୍ତ ଅଫିସ୍‌ର କର୍ମଚାରୀ ବୃନ୍ଦ । ବଂଗଳାରୁ ଓଡ଼ିଆ ଅନୁବାଦ କରି "କଙ୍କାବତୀର ଘାଟ", "ସମ୍ରାଟ ସମୁଦ୍ରଗୁପ୍ତ", "ସ୍ୱଭାବଗତ ନାଟକ" ପ୍ରଭୃତି ବରିଷ୍ଠ ଶିଳ୍ପୀ, ଓ ଅଭିନେତା ଶ୍ରୀଯୁକ୍ତ ବିମଳ ଚନ୍ଦ୍ର ଘୋଷଙ୍କ ନିର୍ଦ୍ଦେଶନାରେ ପରିବେଷିତ ହୋଇଥିଲା । ପ୍ରାୟତଃ ଆମ ଅଫିସ୍‌ର ସବୁ ନାଟକ କବିଚନ୍ଦ୍ର କାଳୀଚରଣଙ୍କ ବାଙ୍କାବଜାର 'ଓଡ଼ିଶା ଆର୍ଟ ଥିଏଟର' ରଙ୍ଗମଞ୍ଚରେ ଅଭିନୀତ ହେଉଥିଲା । ବିମଳ ବାବୁ 'କଙ୍କାବତୀର ଘାଟ" ନାଟକରେ ନାୟିକା "ଗୌରୀ" ଭୂମିକାରେ ଅଭିନୟ କରିବା ପାଇଁ ମୋତେ ହିଁ ବାଛିଲେ । ମୁଁ ତାଙ୍କ ପ୍ରସ୍ତାବରେ ସମ୍ମତ ହେଲି । ନାଟକର ନାୟକ ଭୂମିକାରେ

ତତ୍କାଳୀନ O. A. S. ଅଫିସର ଶ୍ରୀଯୁକ୍ତ ଗଣନାଥ ଦାସ (ପରେ I. A. S. ପାଇ Secretary ଭାବେ ଭୁବନେଶ୍ବରରେ ଅବସ୍ଥାପିତ ହୋଇଥିଲେ) ଅଭିନୟ କରିଥିଲେ । ନାଗା ଭୂମିକାରେ ମୋର ସଫଳତା ପାଇଁ ଆମ ଅଫିସର ସମସ୍ତେ ମୋତେ ଉଚ୍ଛ୍ବସିତ ପ୍ରଶଂସା କରିଥିଲେ । ଗଣନାଥ ବାବୁ ଯେତେବେଳେ ଓଡ଼ିଶା ସରକାରଙ୍କ Tribal and Rural Development ବିଭାଗର Secretary ଥିଲେ, ଉକ୍ତ ବିଭାଗ ମୋ ନାଟକ 'ରାଜନର୍ତ୍ତକୀ' ଭୁବନେଶ୍ବର ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ କରିଥିଲେ । ମୋତେ ନିମନ୍ତ୍ରଣ କରିଥିଲେ ନାଟକ ଦେଖିବା ପାଇଁ । ଶ୍ରୀଯୁକ୍ତ ମୁରଲୀ ପ୍ରସାଦ ମିଶ୍ର (ତତ୍କାଳୀନ ମନ୍ତ୍ରୀ) ଥିଲେ ଉଦ୍‌ଘାଟକ । ସେଇଠି ମନ୍ତ୍ରୀ ମହୋଦୟଙ୍କ ସହିତ ମୋର ପରିଚୟ ଓ ଆଳାପ ହୋଇଥିଲା । ଯେତେବେଳେ ମୁରଲୀ ବାବୁଙ୍କୁ ନାଟକ ଉଦ୍‌ଘାଟନ କରିବାକୁ ମଞ୍ଚ ଉପରକୁ ଆମନ୍ତ୍ରଣ କରାଗଲା, ସେ କହିଲେ, "ନାଟକର ଲେଖକ ମୋ ପାଖରେ ବସିଛନ୍ତି, ମୁଁ ତାଙ୍କୁ ଅନୁରୋଧ କରୁଛି, ସେ ମଞ୍ଚ ଉପରକୁ ଯାଇ ତାଙ୍କ ନିଜ ନାଟକ ଉଦ୍‌ଘାଟନ କରନ୍ତୁ ।" ସେଇଆ ହେଲା । ନାଟକ ଉଦ୍‌ଘାଟନ କରି ତଳକୁ ଆସିଲା ବେଳକୁ ଗଣନାଥ ବାବୁ ମତେ କହିଲେ, "କି ଗୌରୀ, କେମିତ ଅଛ ?"

———

— ଡାର —

ଦିନେ ବିମଳ ବାବୁ ମୋତେ କହିଲେ,—

"ଭଞ୍ଜ, ମୁଁ ଶୁଣୁଛି, ତୁମେ କୁଆଡ଼େ ନାଟକ ଲେଖୁଛ;
ଏ କଥା କଣ ସତ ?"
"ହଁ, ଆଜ୍ଞା, ଲେଖୁଛି । 'ହରଣଗୁଳ' ବୋଲି ଖଣ୍ଡିଏ
ନାଟକର ଲେଖା ଏବେ ଶେଷ କରିଛି ।"
"ବାଃ, ଭାରି ଭଲକଥା । ସେ ନାଟକ କାଲି ମତେ
ଆଣିଦେବ । ମୁଁ ତୁମର Collectorate Dramatic
Club ଦ୍ଵାରା ମଞ୍ଚସ୍ଥ କରାଇବ"
"କାହିଁକି ସାର !" ମୁଁ କହିଲି, "ଆପଣତ ବଙ୍ଗଳା
ନାଟକ ସବୁ ..."

ମୋ ମୁହଁରୁ କଥା ଛଡ଼ାଇ ନେଇ ସେ କହିଲେ,
"ନା, ଆଉ ବଙ୍ଗଳା ନାଟକର ଅନୁବାଦ ନୁହେଁ।
ଏଥର ମୁଁ ମୌଳିକ ଓଡ଼ିଆ ନାଟକ କରିବି। ତୁମେ ଆଗ
ଆଣିଦିଅ, ମୁଁ ଦେଖେ—"

ତାଙ୍କ ଅନୁରୋଧ ରକ୍ଷାକରି ମୋର ଲେଖା "ହରଣଗୃହ" ନାଟକକୁ ତା'ପରଦିନ ବିମଳ ବାବୁଙ୍କୁ ଦେଲି। ଖାରି ଖୁସିହୋଇ ସେ ନାଟକଟିକୁ ନେଲେ। ଦୁଇ, ପାଞ୍ଚଦିନ ପରେ ମତେ ଡକାଇ ନେଇ କହିଲେ, "ଭାଇ, ତୁମ ନାଟକ ଖାରି ଭଲ ହୋଇଛି। ଦିନେ ଦୁଇଦିନ ଭିତରେ ରିହର୍ସେଲ (Rehearsal) ଆରମ୍ଭ କରିବା। ତୁମେ କିନ୍ତୁ ଏଥର ଅଭିନୟ କରିବ ନାହିଁ, prompting କରିବ।" ନିର୍ଦ୍ଦେଶକ ମହାଶୟଙ୍କ ସେଇ ଆଦେଶକୁ ଆଶୀର୍ବାଦ ଭାବେ ଗ୍ରହଣ କରି ତୃପ୍ତିରେ ମୋ ମନ ପୂରି ଉଠିଲା। ଆମ ଅଫିସ କର୍ମଚାରୀମାନେ ମୋ ନାଟକ ଅଭିନୟ କରିବେ, ମୋ ପକ୍ଷରେ ଏହାଠୁ ଗୌରବର ବିଷୟ ଆଉ କଣ ହୋଇପାରେ ?···

ସବୁକୁ ସବୁ ଭଲ ଦିନ ଦେଖି ରିହର୍ସେଲ୍ ଆରମ୍ଭ ହେଲା। କିଏ କେଉଁ ଭୂମିକାରେ ଅଂଶ ଗ୍ରହଣ କରିବ, ତାହା ସ୍ଥିର ହୋଇ ପାର୍ଟ ଲେଖା ଆରମ୍ଭ ହେଲା। ବହିର ଆଉ ଦୁଇଟି କପି ମଧ୍ୟ ତିଆରି ଗଲା। promptingର ପୂରୁ ଦାୟିତ୍ୱ ବହନ କରି ମୁଁ ଅଫିସ୍‌ରୁ ଫେରି ଠିକ୍ ସନ୍ଧ୍ୟା ବେଳେ ଚନ୍ଦ୍ରିଧରି କାଳିକାର ଅମଳ କ୍ଲବ୍‌ରେ ପହଞ୍ଚିଲି। ଅନ୍ୟମାନେ ଯଥା ସମୟରେ ପହଞ୍ଚିଲେ। ଯେଉଁମାନେ ଅଭିନୟରେ ଅଂଶ ଗ୍ରହଣ କରିବା ସ୍ଥିରୀକୃତ ହୋଇଥିଲା, ସେମାନେ ହେଲେ, ନିର୍ଦ୍ଦେଶକ ଶ୍ରୀଯୁକ୍ତ ବିମଳ ଚନ୍ଦ୍ର ଘୋଷ ('ଅମଡ଼ାବାଟ' ଚଳଚିତ୍ରରେ ପିତାର ଚରିତ୍ର), ଖଗେନ୍ଦ୍ର ନାଥ ମିତ୍ର ('ଶ୍ରୀ ଜଗନ୍ନାଥ' ଚଳଚିତ୍ରରେ ରାଜାଙ୍କ ଭୂମିକା), ବିନୟ ବୋଷ୍, ଛକଡ଼ି ଚକ୍ରବର୍ତ୍ତୀ (ହାସ୍ୟରସ ଅଭିନେତା), ଗୋପାଳ ବୋଷ୍, ଓ ସୁରେନ୍ଦ୍ର ନାଥ ଦତ୍ତ ପ୍ରମୁଖ। ଉପରୋକ୍ତ ବ୍ୟକ୍ତିଗଣ "କଙ୍କାବତୀର ଘାଟ", "ସମ୍ରାଟ୍ ସମୁଦ୍ରଗୁପ୍ତ" ଓ 'ରାଜମତ ନାଟକ" ପ୍ରଭୃତିରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ। "ହରଣଗୃହ" ନାଟକ ଯେ ନିଶ୍ଚିତ ସାଫଲ୍ୟ ଅର୍ଜନ କରିବ ଏଥିରେ ସନ୍ଦେହର ଅବକାଶ ନ ଥିଲା। ମାତ୍ର ଚକ ବୁଲିଗଲା। ବଦଳିଗଲା ନାଟକର ଭାଗ୍ୟ।

ଦିନେ ଅଫିସ୍‌ରେ ଯାଇ ପହଞ୍ଚିବା ସାଂଗେ ସାଂଗେ ଖବର ପାଇଲି, 'ହରଣଗୃହ' ନାଟକ ପରିବର୍ତ୍ତେ ଅନ୍ୟ ଏକ ବଙ୍ଗଳା ନାଟକ (ଓଡ଼ିଆ ଅନୁବାଦ) ଅଭିନୀତ ହେବ। ଗ୍ଲାନି ଏବଂ ମନସ୍ତାପରେ ଭରିଗଲା ମୋର ସାରା ତନୁମନ। ମନକୁ ସହସ୍ର ଧିକ୍କାର ଦେଲି। ସାରାଦିନ କାମରେ ମନ ଲାଗିଲା ନାହିଁ। ସବୁ

ଯେମିତ ଓଲଟ ପାଲଟ ହୋଇଗଲା । ଏତେ ଆଶା ନେଇ ସାଫଲ୍ୟର ଯେଉଁ ସୌଧ ମନେ ମନେ ଗଢ଼ୁଥିଲି, ବିଫଳତାର ଝଂକାରେ ତାହା ସତେ ଯେପରି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ସତେ ଯେପରି ମୋର ମାନସ-ସନ୍ତାନର ଅପମୃତ୍ୟୁ ମୋର ଚକ୍ଷୁ-ସମକ୍ଷରେ ଘଟିଗଲା । କିନ୍ତୁ ସେତେବେଳେ ମୁଁ ସ୍ୱପ୍ନ ପାଇ ନ ଥିଲି ଯେ, ମୋ ନାଟକ "ହରଣଚ୍ଛଳ" ଚରମ ସାଫଲ୍ୟର ଦ୍ୱାର-ଦେଶରେ ଦଣ୍ଡାୟମାନ ।

ଅଫିସ୍ ବନ୍ଦ ହେବା ପୂର୍ବରୁ ବିମଳ ବାବୁ ଦିନେ ଆସି ମୋ ପାଖରେ ପହଞ୍ଚିଲେ । କହିଲେ, "ଭଞ୍ଜ, ତୁମର ଏତେ ସୁନ୍ଦର ସୃଷ୍ଟିକୁ ମାତ୍ର ଦିନେ ଦୁଇଦିନ ଅଭିନୟ କରି ନଷ୍ଟ କରିବାକୁ ଇଚ୍ଛା ହେଲା ନାହିଁ । ମୁଁ ତାକୁ ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପ୍‌ରେ ଅଭିନୀତ କରିବାକୁ ଦେଇଛି । ନାଟକଟିକୁ ପଢ଼ି ସେମାନେ ନିଶ୍ଚୟ ମଞ୍ଚସ୍ଥ କରିବେ ବୋଲି ସ୍ୱୀକୃତ ଦେଇଛନ୍ତି । କାଲି ରବିବାର । ମୁଁ ତୁମକୁ ନେଇ ସେଠାକୁ ଯିବି । ଦେଖ, ତୁମ ବହି ସେମାନେ ବ୍ୟବସାୟ ସୂତ୍ରରେ ମାସ ମାସ ଧରି ଅଭିନୀତ କରିବେ । ସେମାନେ ଅର୍ଥ ପାଇବେ, ତୁମେ ପାଇବ ଯଶ ! କଅଣ କହୁଛ ?"

ଆନନ୍ଦରେ ମୋ ମୁହଁରୁ କୌଣସି ଉତ୍ତର ବାହାରିଲା ନାହିଁ । ସେହିଦିନଟି ମୋ ପାଇଁ ଥିଲା ନିଶ୍ଚିତ ଭାବେ ଅବିସ୍ମରଣୀୟ ।

ରବିବାର ଦିନ ସକାଳଓଳି ବିମଳ ବାବୁଙ୍କ ସାଙ୍ଗରେ ମୁଁ ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପକୁ ଗଲି । ତିନକୋଣିଆ ବଗିଚାର ଯେଉଁଠି ଆଗେ 'ହଲମୁକ୍' ସିନେମା ହଲ ଥିଲା, ସେଇଠି 'ବି' ଗ୍ରୁପ୍ ପ୍ରଦର୍ଶିତ ହୋଇଥାଏ । ଓଡ଼ିଶାର ଖ୍ୟାତନାମା ମଞ୍ଚଶିଳ୍ପୀ ତଥା ଅଭିନେତା ସର୍ବଶ୍ରୀ ସାମୁଏଲ ସାହୁ (ବାବି), ପ୍ରିୟନାଥ ମିଶ୍ର (ପିର), ଦୀନବନ୍ଧୁ ଦାସ (ଟିମା), କୃଷ୍ଣଚନ୍ଦ୍ର ପାଣ୍ଡେ, ମାଧବାନନ୍ଦ କର, ବିପିନ ବିହାରୀ ମହାନ୍ତି, ହରି ମହାନ୍ତି, କେଶବ ଚନ୍ଦ୍ର ଶତପଥୀ, ମଧୁସୂଦନ ଦତ୍ତ, ଉମାନାଥ ମିଶ୍ର, ମଧୁସୂଦନ ପଲେଇ ପ୍ରମୁଖଙ୍କ ସହିତ ମୋର ସାକ୍ଷାତ ହେଲା । ଶ୍ରୀ ସାମୁଏଲ ସାହୁ (ବାବି) ଓ ଶ୍ରୀ ପ୍ରିୟନାଥ ମିଶ୍ର 'ବି' ଗ୍ରୁପ୍‌ରେ ମୋର ଅଧିକାଂଶ ନାଟକର ନିର୍ଦ୍ଦେଶକ ଥିଲେ । ବାବି ରାଷ୍ଟ୍ରପତି ପୁରସ୍କାର, ଜୟଦେବ ପୁରସ୍କାର ଓ ଉପେନ୍ଦ୍ର ଭଞ୍ଜ ପୁରସ୍କାରରେ ସମ୍ମାନିତ ହୋଇଥିଲା ବେଳେ ପିର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଓ ଜୟଦେବ ପୁରସ୍କାର ଲାଭ କରିଥିଲେ । ଥିଏଟର ବ୍ୟତୀତ ଚଳଚ୍ଚିତ୍ରରେ ମଧ୍ୟ ଏ ଦୁହିଁଙ୍କର ଅଶେଷ ଅବଦାନ ରହିଅଛି । ଶ୍ରୀମତୀ ମଣିମାଳା, ଶ୍ରୀମତୀ କୁମୁଦିନୀ, ଶ୍ରୀମତୀ ଲୀଳା ଦୁଲାଲୀ, ଶ୍ରୀମତୀ ମାନଦା ସୁନ୍ଦରୀ, ଶ୍ରୀମତୀ ଉମାରାଣୀ(ଟୁକି), ଶ୍ରୀମତୀ ରୁକ୍ମିଣୀ ପ୍ରମୁଖ;

ଶ୍ରୀ କେଳୁ ଚରଣ ମହାପାତ୍ର, ଦେବ ପ୍ରସାଦ ଦାସ ଓ ପଙ୍କଜ ଚରଣ ଦାସ ଏଇ 'ବି' ଗ୍ରୁପ୍‌ରୁ ତାଙ୍କ ଶିଳ୍ପୀ ଜୀବନ ଆରମ୍ଭ କରି ପରବର୍ତ୍ତୀ କାଳରେ ନୃତ୍ୟଗୁରୁ ଭାବେ ଜାତୀୟ ତଥା ଆନ୍ତର୍ଜାତୀୟ ଖ୍ୟାତି ଲାଭ କରିଅଛନ୍ତି । ସେତେବେଳକୁ ୰ ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ ଲିଖିତ 'ମାନେଜର" ନାଟକ ମଞ୍ଚସ୍ଥ କରିସାରି ତାଙ୍କର "ମୂଲିଆ" ନାଟକର ଅଭିନୟ କରୁଥାନ୍ତି । ତୃତୀୟ ଅବଦାନ ଭାବେ ସେମାନେ ମୋର 'ହରଣଚ୍ଛଳ" ନାଟକକୁ ଗ୍ରହଣ କଲେ । ପରେ ପରେ ରିହର୍ସେଲ ମଧ୍ୟ ବିଧିବଦ୍ଧ ଭାବେ ଆରମ୍ଭ ହେଲା ।

ମାତ୍ର ରିହର୍ସେଲ ଅଧାଅଧି ବେଳକୁ ହଠାତ୍ ଦେଖାଗଲା, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କର ବାଙ୍କାବଜାରସ୍ଥ 'ଓଡ଼ିଶା ଥିଏଟର୍ସ୍"ରେ 'ହରଣଚ୍ଛଳ' ନାଟକାଭିନୟର ଶୁଭାରମ୍ଭ କରିବାକୁ ବିଜ୍ଞାପନ ଦେଇଛନ୍ତି, ଦୁଃଖରେ ଭାଙ୍ଗି ପଡ଼ିଲି । "ହରଣଚ୍ଛଳ"ର ହରଣଚ୍ଛଳ ! କି ଦୁର୍ଯୋଗ ! ନାଟକ କ୍ଷେତ୍ରରେ ପୁଣି ଏଭଳି ହଠକାରିତା ହୁଏ ! ଆଶ୍ଚର୍ଯ୍ୟ !

ଅନୁସଂଧାନରୁ ଜଣାପଡ଼ିଲା କାଳୀବାବୁଙ୍କ ଓଡ଼ିଶା ଥିଏଟରସ୍‌ରୁ ଆସି ଉପରୋକ୍ତ ବିଦ୍ରୋହୀ ଶିଳ୍ପୀମାନେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଯୋଗ ଦେଇଥାନ୍ତି । ଦୁଇ ନାଟ୍ୟସଂସ୍ଥା ମଧ୍ୟରେ ବହୁତ ଶତ୍ରୁତା, ବହୁତ ପ୍ରତିଯୋଗିତା । ଏମାନେ କାଳୀବାବୁଙ୍କ ଦୋଷ ଦେଉଥାନ୍ତି ଉପଯୁକ୍ତ ଦରମା ଦେଲେ ନାହିଁ ବୋଲି କାଳୀବାବୁ ଏମାନଙ୍କୁ ହାତରେ ଗଢ଼ି ମଣିଷ କରିଛନ୍ତି ବୋଲି ଅଭିମାନ କରୁଥାନ୍ତି । ତାଙ୍କ ଆତ୍ମ-ଜୀବନୀ 'କୁମ୍ଭାର ଚକ'ରେ ସେ ସବୁ ବିଷୟ ଲେଖିଯାଇଛନ୍ତି । ଯାହା ହେଉ, ମୁଁ ସେ ବାଦ ବିସମ୍ବାଦରେ ଆଦୌ ଜଡ଼ିତ ନ ଥାଇ ମଧ୍ୟ ମୋର 'ହରଣଚ୍ଛଳ' ନାଟକର ଏହିଭଳି ଦୁର୍ଦ୍ଦଶା ହେଲା ! ଦୁର୍ଭାଗ୍ୟ ଆଉ କାହାକୁ କହନ୍ତି !

ଗୋଟିଏ ସଂଧ୍ୟାରେ ବାଙ୍କାବଜାର ଯାଇ କାଳୀବାବୁଙ୍କର ସେ ନାଟକ ଦେଖିଲି । ବିଷୟବସ୍ତୁର ବିଶେଷ ସାମଞ୍ଜସ୍ୟ ନ ଥିଲେ ମଧ୍ୟ ନାଟକର ନାମ କରଣ "ହରଣଚ୍ଛଳ" କରିବା ପଛରେ ତାଙ୍କର ଦୁଇଟି ଉଦ୍ଦେଶ୍ୟ ରହିଥିବାର ଜାଣିଲି । ପ୍ରଥମତଃ ମୋତେ ମୋର ନାଟକର ଆଉ ଗୋଟିଏ ନୂଆ ନାଁ ଦେବାକୁ ହେବ ଓ କଥାବସ୍ତୁରେ କେତେକ ପରିବର୍ତ୍ତନ କରିବାକୁ ପଡ଼ିବ, ଦ୍ୱିତୀୟତଃ ଜଣେ ତରୁଣ ନାଟ୍ୟକାରର ଲେଖନୀ ସ୍ତବ୍ଧ ହୋଇଯିବ ଏଭଳି ଅଘଟଣରେ, ଏଭଳି ଧୋକ୍‌କାରେ । ତାଙ୍କର ପ୍ରଥମ ଉଦ୍ଦେଶ୍ୟ ସାଧିତ ହୋଇଥିଲା ସତ୍ୟ, ଦ୍ୱିତୀୟ ଉଦ୍ଦେଶ୍ୟ ଆଦୌ ଫଳପ୍ରସୂ ହେଲାନାହିଁ । "ହରଣଚ୍ଛଳ" ନାଟକର ନୂତନ ନାମକରଣ କଲି "ଦେବୀ" ଓ ତାହା ଦୀର୍ଘଦିନ ଧରି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ରଙ୍ଗମଞ୍ଚରେ ରାତ୍ରୀ ପରେ ରାତ୍ରୀ ପ୍ରଶଂସାର ସହ

ଅଭିନୀତ ହୋଇ ଚାଲିଲା (୧୯୪୫) । ତାପରେ ମୁଁ ଆଉ ପଛକୁ ଫେରିଚାହିଁ ନାହିଁ । ସେହି ରଙ୍ଗମଞ୍ଚରେ ମୋର "ବେନାମୀ", "ଜହର", "ଶିକାର', 'ତୋଫାନ" 'ଆଲେକ', "ମାଣିକ ଯୋଡ଼ି", "ସାଧବୀ", "ଅଗ୍ନିପରୀକ୍ଷା", "ସାଆନ୍ତଘର", "ବୈରାଗୀର ସଂସାର", "ରାଜନର୍ତ୍ତକୀ" "ପହିଲି ରଜ", "ଜୀବନଜୁଆ" ପ୍ରଭୃତି ଅନେକ ନାଟକ ଗୋଟିଏ ପରେ ଗୋଟିଏ ସଫଳତାର ସହ ଅଭିନୀତ ହେବାକୁ ଲାଗିଲା । ନାଟ୍ୟକାର ଭାବରେ ସାରା ଓଡ଼ିଶାର ଦର୍ଶକ ମହଲରେ ମୋର ସୁନାମ ବ୍ୟାପି ଯିବା ସହିତ, ସେ ସମସ୍ତ ନାଟକ ପୁରପଲ୍ଲୀରେ ଅଭିନୀତ ହୋଇ ଅଗଣିତ ଦର୍ଶକଙ୍କର ଦୃଷ୍ଟି ଆକର୍ଷଣ କଲା । "ଓଡ଼ିଶା ଥିଏଟର୍ସ" ଭାଙ୍ଗିଗଲା, ସ୍ତବ୍ଧ ହୋଇଗଲା କବିଚନ୍ଦ୍ରଙ୍କ ଲେଖନୀ । ଦିନ ଆସିଲା, ଯେତେବେଳେ କି ତାଙ୍କ ରଚିତ ନାଟକ "ରକ୍ତ ମନ୍ଦାର" ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ମଞ୍ଚରେ ହିଁ ଅଭିନୀତ ହେଲା । ଇତିମଧ୍ୟରେ 'ଓଡ଼ିଶା ଥିଏଟର୍ସ'ରୁ ନାମଜାଦା ଶିଳ୍ପୀ ଶ୍ରୀ ଦୁର୍ଲଭ ଚନ୍ଦ୍ର ସିଂହ, ଦୟାନିଧି ଦାସ, ଅଧର ମହାପାତ୍ର, ଶ୍ରୀମତୀ ଲକ୍ଷ୍ମୀପ୍ରିୟା ପ୍ରଭୃତି ଆସି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଯୋଗଦାନ କରିଥିଲେ ।

ଉପରୋକ୍ତ ରଙ୍ଗମଞ୍ଚ ଓ ମଞ୍ଚନାଟକ ସମ୍ବନ୍ଧରେ ସବିଶେଷ ଆଲୋଚନା କରିବା ପୂର୍ବରୁ 'ଅନ୍ନପୂର୍ଣ୍ଣା ଥିଏଟର' ସମ୍ପର୍କରେ କିଞ୍ଚିତ ସୂଚନା ଦେବା ବିଧେୟ । ୰ ସୋମନାଥ ଦାଶ ଅନ୍ନପୂର୍ଣ୍ଣା ଥିଏଟରର ପ୍ରତିଷ୍ଠାତା ଥିଲେ । 'ବଳଙ୍ଗା ଥିଏଟର' ଓ 'ଆର୍ଟ ଥିଏଟର'ର ପାଦ ପ୍ରଦୀପ ଲଭି ଆସିଲା ବେଳକୁ ଉକ୍ତ ମହାଶୟ ୰ ବାଉରି ବନ୍ଧୁ ମହାନ୍ତିଙ୍କ ସହଯୋଗରେ 'ଅନ୍ନପୂର୍ଣ୍ଣା'ର ଭିତ୍ତି ପ୍ରସ୍ତର ସ୍ଥାପନ କଲେ । ଶ୍ରୀକ୍ଷେତ୍ରରେ ତାଙ୍କ ସ୍ଥାୟୀ ରଙ୍ଗମଞ୍ଚରେ ବଶିଷ୍ଟ ଶିଳ୍ପୀମାନଙ୍କୁ ନେଇ ନାଟକ ପ୍ରଦର୍ଶନ ଆରମ୍ଭ ହେଲା । ବଂଗଳା ଭାଷାରୁ ଅନୂଦିତ "ମହାପଥର ଯାତ୍ରୀ" ଓ "P. W. D." ନାଟକ ସହିତ ନାଟ୍ୟାଚାର୍ଯ୍ୟ ଅଶ୍ୱିନୀ କୁମାରଙ୍କ ରଚିତ ନାଟକମାନ ମଞ୍ଚସ୍ଥ କରି ଉକ୍ତ ନାଟ୍ୟସଂସ୍ଥା ବହୁ ପ୍ରଶଂସାଜନକ ହୋଇଥିଲେ । କଟକରେ "ଅନ୍ନପୂର୍ଣ୍ଣା ଥିଏଟର" ନାଟକ ପରିବେଷଣ କରୁଥିବା ସମୟରେ କାଳୀଚରଣଙ୍କ ଓଡ଼ିଶା ଥିଏଟର୍ସରୁ କେତେକ ପ୍ରଥିତଯଶା ଶିଳ୍ପୀ ବାହାରି ଆସି ବାଉରିବନ୍ଧୁ ମହାନ୍ତି (ଜେନେରାଲ୍ ମାନେଜର୍)ଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ଏଇଠୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ଅଥମାରମ୍ଭ ! 'ଏ' ଗ୍ରୁପ୍‌ର ହେଡ୍‌କ୍ୱାର୍ଟର୍ ହେଲା ପୁରୀ, 'ବି' ଗ୍ରୁପ୍‌ର ହେଲା କଟକ । 'ବି' ଗ୍ରୁପର ପରିଚାଳନା ଦାୟିତ୍ୱରେ ରହିଲେ ୰ ଲିଂଗରାଜ ନନ୍ଦ ।

ଅନ୍ନପୂର୍ଣ୍ଣା ଥିଏଟର 'ଏ' ଗ୍ରୁପ୍‌ରେ ମୋର 'ଗରବ' (୧୯୪୯) ଓ "ଜୟମାଲ୍ୟ" (୧୯୫୨) ନାଟକ ଚରମ ସାଫଲ୍ୟର ସହ ଅଭିନୀତ ହୋଇଥିଲା । ସେତେବେଳେ ସର୍ବଶ୍ରୀ ମାଷ୍ଟର ରାମଚନ୍ଦ୍ର ମାଣିଆ, କାର୍ତ୍ତିକ ଚନ୍ଦ୍ର ଘୋଷ

ନାଟ୍ୟକାର ଏବଂ ନିର୍ଦ୍ଦେଶକ), ଲକ୍ଷ୍ମୀନାରାୟଣ ପାତ୍ର, ବେଣୁଧର ମହାନ୍ତି, ସତ୍ୟନାରାୟଣ ପାତ୍ର, କାଶୀନାଥ ସାହୁ, ଦୁଃଖୀରାମ ସ୍ୱାଇଁ (ମୋର 'ଗରିବ' ନାଟକର ନାୟକ ଭାବେ ସେ ତାଙ୍କ ଜୀବନରେ ପ୍ରଥମଥର ପାଇଁ ପେଷାଦାର୍ ରଙ୍ଗମଞ୍ଚରେ ଅଭିନୟ କରିଥିଲେ), ନିରଂଜନ ଶତପଥୀ (ସେ ମଧ୍ୟ ଜୀବନରେ ପ୍ରଥମଥର ପାଇଁ 'ଗରିବ' ନାଟକର ଖଳନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ), ହରିହର ପଣ୍ଡା, ବୁଲ୍‌ବୁଲ୍ (ହାସ୍ୟ-ଅଭିନେତା), ଗଣେଶ୍ୱର ରଥ, ଶ୍ରୀମତୀ ରାଧାରାଣୀ, ଶ୍ରୀମତୀ ବାଳାମଣି, ଶ୍ରୀମତୀ ଭାନୁମତୀ, ଶ୍ରୀମତୀ ପୂର୍ଣ୍ଣିମା, ଶ୍ରୀମତୀ ଭାନୁପ୍ରିୟା, ଓ ଶ୍ରୀମତୀ ବାସନ୍ତୀ, ଶ୍ରୀମତୀ ନିର୍ମଳ, (ବୃଚ) ପ୍ରମୁଖ ପ୍ରଖ୍ୟାତ ଅଭିନେତା ଅଭିନେତ୍ରୀ ଗଣ 'ଏ' ଗ୍ରୁପ୍‌ରେ ସେମାନଙ୍କର ଶ୍ରେଷ୍ଠ ଅଭିନୟ ନୈପୁଣ୍ୟ ପ୍ରଦର୍ଶନ କରୁଥିଲେ । ଉକ୍ତ ଅନୁଷ୍ଠାନର ପରିଚାଳନା ଦାୟିତ୍ୱରେ ଜୀବନର ଶେଷପର୍ଯ୍ୟନ୍ତ ରହିଥିଲେ ୭ ବାଉରିବନ୍ଧୁ ମହାନ୍ତି । ବାରିପଦାରେ ଆମ ହତାରେ ଯେଉଁ ସମୟରେ ସ୍ୱର୍ଗତଃ ନାଟ୍ୟାଚାର୍ଯ୍ୟ ବାଳକୃଷ୍ଣ ମହାନ୍ତିଙ୍କ ଯାତ୍ରାଭିନୟ ହେଉଥିଲା, ଏହି ବାଉରିବନ୍ଧୁ ବାବୁ ତାର ମୁଖ୍ୟ-ପରିଚାଳକ ଥିଲେ । ମୋର ସେହି ପିଲା ଅବସ୍ଥାରୁ ସେ ମୋତେ ଜାଣିଥିଲେ । ଯେତେବେଳେ ପରବର୍ତ୍ତୀ ସମୟରେ ମୋର 'ଗରିବ' ନାଟକ ତାଙ୍କ ନାଟ୍ୟଦଳ ଦ୍ୱାରା ପରିବେଷିତ ହୋଇଥିଲା, ସେ ମୋର ସେହି ବାଲ୍ୟକାଳର ସ୍ମୃତି ଚାରଣ କରିଥିଲେ । ପଦେ କଥାରେ କହିବାକୁ ଗଲେ ସେ ମୋତେ ଏତେ ଶ୍ରଦ୍ଧା କରୁଥିଲେ ଯେ କଟକ, ବାରିପଦା ଓ ବ୍ରହ୍ମପୁରରେ ମୋ ନାଟକର ଅଭିନୟ ରଜନୀକୁ "Author's night" ଭାବେ ଅବହିତ କରି ମୋତେ ଦର୍ଶକମାନଙ୍କୁ ଚିହ୍ନାଇ ଦେଉଥିଲେ । ସେ ଗ୍ରୁପ୍‌ର ଆର୍ଟିଷ୍ଟମାନଙ୍କ ସହିତ 'ନାୟକ' (ଗରିବ ନାଟକର ନାୟକ ସୌରେନ୍) ଭୂମିକାରେ ମୋତେ ଅଭିନୟ କରିବାର ସୁଯୋଗ ଦେଇ ମୋତେ ଯେଉଁଭଳି ଭାବରେ ସମ୍ମାନିତ କରିଥିଲେ, ସେହି "Author's night" ବୃତ୍ତାନ୍ତ ସବୁ ମୋର ଚିରଦିନ ଅପାଶୋରା ରହିବ । ଆଜି ଓଡ଼ିଶାର ସମସ୍ତ ପେଶାଦାରୀ ରଙ୍ଗମଞ୍ଚ ବିଲୁପ୍ତ ପ୍ରାୟ; ମାତ୍ର ରଙ୍ଗମଞ୍ଚ ପାଇଁ ତାଙ୍କର ଶ୍ରମ, ସାଧନା ସବୁଦିନ ଲାଗି ଜାଜ୍ୱଲ୍ୟମାନ ରହିଥିବ ।

କଟକର 'ଜନତା ରଂଗମଞ୍ଚ', 'ରୂପଶ୍ରୀ' ଓ 'କଳାଶ୍ରୀ' ଥିଏଟର ସମ୍ପର୍କରେ ସାମାନ୍ୟ ସୂଚନା ଦେବା ନିତାନ୍ତ ଆବଶ୍ୟକ । ଉପରୋକ୍ତ ତିନୋଟି ନାଟ୍ୟାନୁଷ୍ଠାନ ମଧ୍ୟରୁ କେବଳ "ଜନତା ରଂଗମଞ୍ଚ" (ବାଙ୍କାବଜାରର ଓଡ଼ିଶା ଥିଏଟର୍ସ ଯେଉଁସ୍ଥାନରେ ଥିଲା) ନାତିଦୀର୍ଘକାଳ ନାଟକ ପରିବେଷଣ କରିଆସୁଥିଲେ । ମାତ୍ର ଅନ୍ୟ ଦୁଇଟି ଅନୁଷ୍ଠାନ ଅତି ଅଳ୍ପକାଳ ମଧ୍ୟରେ ଭାଙ୍ଗି ପଡ଼ିଥିଲେ ।

"ଜନତା ରଂଗମଞ୍ଚ"ର ପ୍ରତିଷ୍ଠାଧର ଶିଳ୍ପୀମାନଙ୍କ ମଧ୍ୟରେ ସର୍ବଶ୍ରୀ ନଟବର ସେଣ, ଜୟରାମ ସାମଲ, ନିରଂଜନ ଶତପଥୀ, ପ୍ରଫୁଲ୍ଲ ଶାସ୍ତ୍ରୀ, ଭୋଲାନାଥ ଦାସ, ଶରତ ଚନ୍ଦ୍ର ମହାନ୍ତି, ଶରତ ଚନ୍ଦ୍ର ଶତପଥୀ, ଶ୍ରୀମତୀ କୃଷ୍ଣମଣି, ଶ୍ରୀମତୀ ନର୍ମଦା, ଶ୍ରୀମତୀ ତାରିଣୀ, ଶ୍ରୀମତୀ ସରସ୍ୱତୀ, ପ୍ରମୁଖ ଅଭିନୟ କଳାରେ ଦକ୍ଷତା ପ୍ରଦର୍ଶନ କରିଥିଲେ । ମୋର 'ଅଶୋକସ୍ତମ୍ଭ' ଓ 'ପ୍ରତାପରୁଦ୍ର' ନାଟକ ଜନତା ରଙ୍ଗମଞ୍ଚ ଦ୍ୱାରା ପରିବେଶିତ ହୋଇଥିଲା । 'ପ୍ରତାପରୁଦ୍ର' ନାଟକର ଶୁଭ ଉଦ୍‌ଘାଟନ କରିଥିଲେ ପଶ୍ଚିମ ବଂଗଳାର ପ୍ରସିଦ୍ଧ ମଞ୍ଚାଭିନେତ୍ରୀ ଶ୍ରୀମତୀ ମଲ୍ଲିକା ଦେବୀ ଓ 'ଯୁଗ ଦେବତା' ନାଟକରେ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ପ୍ରଖ୍ୟାତ ଅଭିନେତା ଶ୍ରୀଯୁକ୍ତ ଗୁରୁଦାସ ବନ୍ଦୋପାଧ୍ୟାୟ । ସେମାନେ 'ପ୍ରତାପରୁଦ୍ର' ନାଟକ ଦେଖି ଏଭଳି ଅଭିଭୂତ ହୋଇପଡ଼ିଥିଲେ ଯେ ମୋତେ ବଧାଇ ଜଣାଇବାକୁ ଯେପରି ଭାଷା ଖୋଜି ପାଇ ନ ଥିଲେ । ଗୁରୁଦାସଙ୍କର ଗୋଟିଏ କଥା ମୋର ମନେ ଅଛି । ସେ କହିଥିଲେ, "ଦେଖୁନ୍ ମଶାୟ ! Calcuttaର stageଏର୍ technic ଖୁବ୍ ଉନ୍ନତ ଧରନେର୍, କିନ୍ତୁ Oriya drama Bengali drama ଥେକେ କୋନୋ ଗୁନେ inferior ନୟ ! ଚମତ୍କାର ହୟେଛେ ଆପନାର ବଇ !"

ଯାହା ହେଉନା କାହିଁକି, ସେଦିନର ସେଇ କଥା ହ'ପଦ ମତେ ଯଥେଷ୍ଟ ଉତ୍ସାହିତ କରିଥିଲା ! କଲିକତାର 'Star,' 'Minerva,' 'କାଲିକା', ଥିଏଟରରେ ବଂଗଳା ନାଟକର ଅଭିନୟ ମୁଁ ଅନେକ ଥର ଦେଖିଛି । ଦେଖିଛି ବିଖ୍ୟାତ ନାଟକ "ସାଜାହାନ", "ସେତୁ" ଆଉ "ଅଂଗାର" । "କାଲିକା" ରଙ୍ଗମଞ୍ଚରେ "ଯୁଗଦେବତା" ନାଟକରେ ଗୁରୁଦାସ ବନ୍ଦୋପାଧ୍ୟାୟଙ୍କ ଶ୍ରୀରାମକୃଷ୍ଣ ପରମହଂସ ଓ ରାଣୀ ରାସମଣି ଭୂମିକାରେ ମଲ୍ଲିକା ଦେବୀଙ୍କ ଅଭିନୟ ଏଭଳି ଜୀବନ୍ତ ଓ ଚିତ୍ତାକର୍ଷକ ହୋଇଥିଲା ଯେ, ସାରା ଅଡ଼ିଟୋରିୟମ୍ ଯେପରି ପ୍ରାଣବନ୍ତ ଅଭିନୟର ଯାଦୁକରୀ ମାୟାରେ ଅବଶ ହୋଇଯାଉଥିଲା । "ସେତୁ" ନାଟକର ଶେଷ ଦୃଶ୍ୟରେ ଦର୍ଶକଙ୍କ ଚକ୍ଷୁ-ସମୁଖରେ ଚଳନ୍ତା ରେଲଗାଡ଼ିର ଦୃଶ୍ୟ ଓ 'ଅଙ୍ଗାର୍' ନାଟକରେ ଖଣିଭିତରେ ଜଳରାଶି ପ୍ରବେଶ ସଙ୍ଗେ ସଙ୍ଗେ କ୍ରମକ୍ରମେ ଶ୍ରମିକମାନଙ୍କର ମରଣକାଳୀନ ଆର୍ତ୍ତଚିତ୍କାର ଦୃଶ୍ୟ ଅତ୍ୟନ୍ତ ହୃଦୟସ୍ପର୍ଶୀ ସନ୍ଦେହ ନାହିଁ । କିନ୍ତୁ ନାଟକର ବିଷୟବସ୍ତୁ ଭାଷା, ପରିବେଷଣ ଶୈଳୀ ପ୍ରଭୃତି ଦୃଷ୍ଟିରୁ ବଂଗଳା ନାଟକ ତୁଳନାରେ ଓଡ଼ିଆ ନାଟକ ଯେକୌଣସି ଗୁଣରେ ଊଣା ନୁହେଁ, ଏହା ନିଃସଙ୍କୋଚରେ ପ୍ରକାଶ କରାଯାଇପାରେ ।

---

—ଗୁଈ—

ମୋ ଜନ୍ମ ହେବାର କେତେ ବର୍ଷ ପୂର୍ବେ କି ପରେ ଭାରତରେ ବ୍ରିଟିଶ-ବିରୋଧୀ ଆନ୍ଦୋଳନ ଚାଲିଥିଲା, ସେ ସମ୍ପର୍କରେ ମୁଁ କିଛି ସଠିକ୍ ହିସାବ ରଖିନାହିଁ; କିନ୍ତୁ ୧୯୩୫ ମସିହା ବେଳକୁ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଡାକରେ ସାରା ଦେଶ ଯେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା-ସଂଗ୍ରାମରେ ଝାସ ଦେଇଥିଲେ, ଏଥିରେ ଦ୍ୱିମତ ହେବାର ନାହିଁ। ଗାନ୍ଧିଜୀଙ୍କ ଜୀବନ-ସମ୍ପର୍କିତ ଲେଖାରୁ ମୁଁ ଜାଣିଛି, ସେ ୧୯୨୦ ମସିହାରୁ ହିଁ ଅସହଯୋଗ ଆହ୍ୱାନ ଦେଇଥିଲେ। ୧୯୨୧, ୧୯୨୫ ଓ ୧୯୨୭ ମସିହାରେ ତିନିଥର ଓଡ଼ିଶା ଆସିଥିଲେ। ୧୯୨୧ରେ କାଠଯୋଡ଼ି ନଦୀ ବନ୍ଧ ତଳେ ଏକ ବିରାଟ ସଭା ଆହୂତ ହୋଇଥିଲା ଏବଂ ସେଠାରେ ବିଦେଶୀ ପୋଷାକ ପତ୍ର ଓ ଲୁଗାପଟା ସବୁ ପୋଡ଼ାଯାଇଥିଲା।

ଗଡ଼ଜାତ ରାଜ୍ୟରେ ରହି ବିଦ୍ୟାଶିକ୍ଷା କରିବା ସମୟରେ ଅସହଯୋଗ, ପିକେଟିଂ, କଂଗ୍ରେସ ସମ୍ମିଳନୀ, ପ୍ରଜା ଆନ୍ଦୋଳନ ପ୍ରଭୃତି ବିଷୟରେ ଆମେ ପିଲାମାନେ କିଛି କିଛି ଖବର ପାଉଥିଲୁ। ଫଳରେ ବିଦେଶୀ ଶାସକମାନଙ୍କ ପ୍ରତି ଆମ ମନରେ ବିଦ୍ୱେଷ ଜାଗ୍ରତ ହେଉଥିଲା। ବିଶେଷତଃ ଜାଲିଓ୍ୱାନାବାଗ୍‌ର ନିର୍ମମ ଗଣହତ୍ୟା, ଅସହଯୋଗ କରୁଥିବା କର୍ମୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଇଂରେଜମାନଙ୍କ ବିରୁଦ୍ଧରେ ହୃଦୟରେ ଘୃଣା ଭାବ ସୃଷ୍ଟି କରୁଥିଲା। କିନ୍ତୁ ସଙ୍କୀର୍ଣ୍ଣତାର ଗଣ୍ଡି ଭିତରୁ ବାହାରି ଆଖିଦୃଶିଆ କିଛି କାର୍ଯ୍ୟ କଲାଭଳି ଦୁଃସାହସ ଆମର ନ ଥିଲା। ମାଟ୍ରିକ୍ ପରୀକ୍ଷା ଦେବା ପରେ ସେହି ବର୍ଷ ମୁଁ ଗୋଟିଏ ଇଂରେଜ-ବିରୋଧୀ କବିତା ରଚନା କରିଥିଲି। ତାହା ଏଠାରେ ଉଲ୍ଲେଖ କରୁଛି।

## ତରୁଣର ଅଭିଯାନ

ଚଲ୍‌ରେ ତରୁଣ, ଦାରୁଣ, ମରଣ-
ବହ୍ନି-ଶିଖାରେ ପଶି,
ଚଲ୍‌ରେ ଆଗେଇ ମୁକ୍ତିର ପଥେ
କି ହେବ ଭାଳିଲେ ବସି ?
କି କରିବ ତୋର ଗୋଳା, ବାରୁଦରେ
ସେଥିକି ତୋର କି ଡର

ନିଃଶ୍ୱାସେ ତୋର ଉଡ଼ିଯିବ କେଣେ
ଅନ୍ୟାୟ, ଅବିଚାର !
ସ୍ତୁଲ୍‌ରେ ସ୍ଫୀତ ବକ୍ଷେ,
ମୁକ୍ତିର ପୀଠେ— ଲୋଡ଼ା ନରବଳୀ (!)
ସ୍ତୁଲ୍ ଅନ୍ତିମ ଲକ୍ଷ୍ୟ !
ନବୀନା-ରୂପସୀ ରଙ୍ଗ ଅଧର
ସଲଜ ଅଲପ ହାସ,
ଦୂରକୁ ଯାଉରେ ଭାସି କେଣେ ଆଜ
ଜୀବନର ମଧୁମାସ;
ନ ଲେଖ ହେ କବି ଯୌବନ କବିତା
ଆଜି ତ ନାହିଁ ସେଦିନ
ପ୍ରଳୟ ଝଂକାରେ ବାଜୁ ତବ ସିଙ୍ଗା
ତରୁଣର ଅଭିଯାନ !
ସ୍ୱପ୍ନର ମୋହ ଆଉ—
ଜଡ଼ିତ ନ କରୁ ନିସ୍ତବ୍ଧ ନିଶିର
ବିରହ ବେଦନା ଦାଉ !
ମଶାଣି ମଡ଼ାର ଚେତନା ଆସୁ
ମୁକ୍ତିର ଗଉରବେ,
ସ୍ମରଣର ଧ୍ୱନି ଗଗନ କଂପାଉ
ଗମ୍ଭୀର ଆହବେ !
ଜନତାର ମୁଖେ ଫୁଟିଉଠୁ ଆଜ
ଅଭିଯାନେ ଆଶୀର୍ବାଦ
ଦୁଳଦୁଳ ହର୍ଷେ ନାଚିଉଠୁ ମୋର
ମାଆର ଦୁଇଟି ପାଦ ।
ଶୋଣିତର ଶବାଧାରେ
ମୁକ୍ତିର ଏ ଯେ ମହା-ଆହ୍ୱାନ
ଶୁଭେ ବ୍ରିଟିଶ୍ କାରାଗାରେ !
କର୍ମର ଏ ଯେ ସ୍ତୁରୁସ୍ତର ଆଜ
ଭୂମିର ଉପରେ ଲଢା,
ନ ହେଉ ବ୍ୟର୍ଥ ଅବ୍ୟର୍ଥ ନିଶାଣେ
ହୃଥରେ ବରେଣ୍ୟ ସଦା;

ମୁକ୍ତିର ପଥେ ସ୍ମୃତି—

ଗହ୍ୱରର ଟୀକା-　　　　　　ଲଳାଟ-ଭୂଷଣ-

ହୋଇ ଯାକୁ ଅନ୍ଧକାର !

୧୯୪୫ ମସିହାରେ 'ଜହର' ନାଟକ ଲେଖା ଆରମ୍ଭ ହେଲା । ହିନ୍ଦୁ-ମୁସଲମାନ ଭାଇ ଭାଇ ଓ ଜାତି-ଧର୍ମ ନିର୍ବିଶେଷରେ ଭାରତମାତାର ସନ୍ତାନଗଣ ଭାରତରେ ଇଂରେଜ ଶାସନର ଅବସାନ ଘଟାଇ 'ସ୍ୱରାଜ' ପ୍ରତିଷ୍ଠା କରିବା ଓ ରକ୍ତଲୋଲୁପ ପୁଞ୍ଜିପତି ବିରୁଦ୍ଧରେ ଶ୍ରମିକମାନଙ୍କୁ ଏକଜୁଟ କରିବା ଥିଲା ଏହି ନାଟକର ଲକ୍ଷ୍ୟ । ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପ୍ ମୋର ଉକ୍ତ ନାଟକକୁ ସତ୍‌ସାହସର ସହିତ ଅଭିନୀତ କରାଇଥିଲେ । ମୋ ଅଫିସ୍‌ର କେତେକ ବନ୍ଧୁ କହିଲେ, "ସରକାରୀ ଚାକିରୀ କରି ସରକାର ବିରୁଦ୍ଧରେ ତୁ ଯେଉଁ ନାଟକ ଲେଖିଛୁ, ତୋ'ଚାକିରୀ ତ ନିଶ୍ଚୟ ଯିବ, ତୋତେ ଫାଶୀ କିମ୍ବା ଆଜୀବନ ଜେଲଦଣ୍ଡ ମଧ୍ୟ ମିଳିପାରେ । ସାବଧାନ !" ହସି ହସି ମୁଁ ଉତ୍ତର ଦେଲି, "ଆରେ ଭାଇ, ମୁଁ ତ ବିବାହ କରିନାହିଁ, ଯଦି ଦେଶ ପାଇଁ ସହିଦ୍ ହୋଇଯାଏ କ୍ଷତି କଣ ? ବରଂ ସବୁଦିନକୁ ମୋ ନାଁ ରହିଯିବ ! ଏ ତ ପରମ ସୌଭାଗ୍ୟର କଥା !"

ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର କର୍ମକର୍ତ୍ତାଗଣ ଦୁଃସାହସର ଆହୁରି ପାଦେ ଆଗକୁ ଯାଇ ଓଡ଼ିଶାର ତତ୍‌କାଳୀନ ଗଭର୍ଣ୍ଣର ସାର୍ ହଥର୍ଣ୍ଣ୍ ଲୁଇସ୍‌ଙ୍କୁ ଉକ୍ତ ନାଟକର ଶୁଭ-ଉଦ୍‌ଘାଟନ କରିବାକୁ ଅନୁରୋଧ ଜଣାଇଲେ । ଲାଟ୍‌ସାହେବଙ୍କ ସ୍ୱୀକୃତି ପାଇବା ପରେ 'ଜହର' ନାଟକର ଉଦ୍‌ଘାଟନୀ ଉତ୍ସବ ପାଇଁ ଜୋର୍ ସୋର୍ ଉଦ୍ୟମ ଆରମ୍ଭ ହୋଇଗଲା ।

ସେଦିନର ସଂଧ୍ୟା ଏକ ଅବିସ୍ମରଣୀୟ ସଂଧ୍ୟା । ପ୍ରେକ୍ଷାଳୟ ଭରି ଦର୍ଶକ-ଦର୍ଶୀକା । ଲାଟସାହେବଙ୍କ ଆଗମନକୁ ସମସ୍ତେ ଅପେକ୍ଷା କରିଛନ୍ତି । ଯଥା ସମୟରେ ଆଟପଟାଳି ସହ ଗଭର୍ଣ୍ଣର ଓ ଲେଡ଼ି ଲୁଇସ୍ ପ୍ରେକ୍ଷାଳୟରେ ପ୍ରବେଶ କଲେ । ଡକ୍ଟର ହରେକୃଷ୍ଣ ମହତାବ ସେମାନଙ୍କୁ ସାଦରେ ପାର୍ଶ୍ବେଟି ଆଣି ଆସନରେ ବସାଇଲେ । ଡକ୍ଟର ମହତାବ ମୋତେ ଠିକ୍ ତାଙ୍କ ପଛ ସିଟ୍‌ରେ (ଦ୍ୱିତୀୟ ଧାଡ଼ି) ବସିବାକୁ କହିଥାନ୍ତି । ସମସ୍ତେ ନିରବ । ନାଟକ ଉଦ୍‌ଘାଟନ ଲାଗି ସମବେତ ଜନତା ପ୍ରତୀକ୍ଷମାଣ । ଲୁଇସ୍ ସାହେବ ଯଥାରୀତି ନାଟକ ଉଦ୍‌ଘାଟନ କଲେ ଅଜସ୍ର କରତାଳି ମଧ୍ୟରେ ତା'ପରେ ପରଦା ଅନ୍ତରାଳରୁ ବଜ୍ରନିର୍ଘୋଷ କଣ୍ଠରେ ଶୁଣାଗଲା :—

"୧୯୪୬ ମସିହା । ଭାରତ ଇତିହାସରେ ଅତି ବଶିଷ୍ଟ ସମୟ । ବିଦେଶୀ ଶାସକଗୋଷ୍ଠୀର ଅବିଚାର, ଅତ୍ୟାଚାର ସୀମା ଲଂଘନ କରିଛି । ଦେଶରେ ବିପ୍ଳବ ।

ଅତ୍ୟାଚାରର ଧ୍ୱଂସଶିଖା ଜନ, ମନ, ଧନ ମାନ ସବୁ ବିପନ୍ନ କରୁଛି । ଗୁଳି ଆଉ ସଙ୍ଗୀନ୍‌ର ମୁନରେ ଅଗଣିତ ନିରୀହ ଭାଇ ଭଉଣୀ ସେହି ନିର୍ମମ ଅତ୍ୟାଚାରର ଶିକାର ହୋଇଛନ୍ତି । ଦଳ ଦଳ କରି ଦେଶର ପୂଜ୍ୟ ନେତାମାନଙ୍କୁ ଟାଣି ନିଆଯାଉଛି କାରାଗାରର ଅନ୍ଧାରି ଗୁହା ଭିତରକୁ । ଗରିବ ଚାଷୀ ମୂଲିଆ ଉପରେ ଚାଲିଛି ପୁଞ୍ଜିପତିର ଜୁଲୁମ୍...ସରଳ ପ୍ରଜାମାନଙ୍କ ଉପରେ ଉଠିଛି ସ୍ୱେଚ୍ଛାଚାରୀ ରାଜାର ହିଂସ୍ର, ରକ୍ତପିପାସୁ ତରବାରି ! ଦିଲ୍ଲୀର ଲାଲ୍‌କିଲ୍ଲା ଉପରେ ଜାତୀୟ ପତାକା ଉଡ଼ାଇବାକୁ ଯାଇ ଏଇ ଦେଶର ସୁପୁତ୍ରଙ୍କ ରକ୍ତରେ ଦିଲ୍ଲୀର ମାଟି ଲାଲ୍ ହୋଇ ଉଠିଛି !

ଏଇ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ଭିତରେ 'ଜହର'ର ଜନ୍ମ !'
('ଜହର'—ପଦେ ଅଧେ)

ଘନ ଘନ କରତାଳି ମଧ୍ୟରେ ଆରମ୍ଭ ହେଲା ନାଟକ ! ଦୃଶ୍ୟ ପରେ ଦୃଶ୍ୟ—ତାପରେ ଅଙ୍କ । ନାଟକର ନାୟକ "ଜହର" ମୁହଁରେ ଦିଆଯାଇଥିବା କେତୋଟି ସଂଳାପ ଏଠାରେ ସନ୍ନିବେଶିତ କରୁଛି ।

"ସବୁଦିନେ ମା ତୁମର ଦାସୀ ହୋଇ ନ ଥିଲା । ତୁମେ ତାକୁ ବେଡ଼ି ପିନ୍ଧାଇଛ ! ମା ତୁମର ରାଜରାଣୀ । ଚାଳିଶ କୋଟି ପୁଅଝିଅଙ୍କୁ ଜନ୍ମ ଦେଇଛି ସେ, ଖୁଆଇ ପିଆଇ ମଣିଷ କରିଛି ସେ । ହିନ୍ଦୁ, ମୁସଲମାନ, ବୌଦ୍ଧ, ଶିଖ, ଖ୍ରୀଷ୍ଟିଆନ୍ ସମସ୍ତେ ତାରି ରକ୍ତରେ ଗଢ଼ା । ଅଥଚ ନିଜ ନିଜର ଜାତିଗତ, ଓ ଧର୍ମଗତ ସ୍ୱାର୍ଥନେଇ ଗରିବ ମା'ଆର ସ୍ୱାର୍ଥ ଦରିଆ ଭିତରେ ବୁଡ଼ିଯାଉଛି ।"

"ପୃଥିବୀର ସମସ୍ତ ଶ୍ରେଷ୍ଠ ବିଭବର ଅଧିକାରିଣୀ ହୋଇ ମଧ୍ୟ ମା'ତୁମର ଆଜି ଭିକାରୁଣୀ ! ତାର ବିଶାଳ ସମ୍ପତ୍ତିର ମାଲିକ ସେଇମାନେ...ସାତ ସମୁଦ୍ର ତେରନଈ ପାରିହୋଇ ଯୋଉମାନେ ଆସିଥିଲେ ବୋଇତ ନେଇ ତୁମ ଦେଶରେ ବେପାର କରିବାକୁ ! ଜନ୍ମଭୂମିର ସ୍ୱାର୍ଥ ଟିକକ, ସ୍ୱାଧୀନତା ଟିକକ ଟେକିଦେଲ ତାଙ୍କର ହାତରେ ? ଅକାରଣରେ ଭାଇ ଭାଇ ଭିତରେ ବାଦ କରି ରକ୍ତନଦୀ ବୁହାଇବାକୁ ଲଜ୍ଜା ହୁଏ ନା ? ଚିରଦିନ ଗୋଲାମ୍ ହୋଇ ଦୁର୍ଭିକ୍ଷ-ପ୍ରପୀଡ଼ିତ ଜରାଜୀର୍ଣ୍ଣ ଭୁଗ୍ନ ଶରୀର ନେଇ ଭିକାରୀର ଝୁଲିମୁଣି ଧରି ଅହଂକାର କରିବାକୁ ଲଜ୍ଜା ହୁଏ ନା ?"

"୧୯୪୨ ଅଗଷ୍ଟ ୯ ତାରିଖ ମୋ ଜୀବନର ସ୍ମରଣୀୟ ଦିବସ ! ଭାରତର ବିଭିନ୍ନ ପ୍ରଦେଶରୁ ଯେତେବେଳେ ଦଳ ଦଳ ହୋଇ ନେତାମାନେ ପଥର ପାଚେରି ଘେରା ମନ୍ଦିର ଭିତରକୁ ଚାଲିଛନ୍ତି ସ୍ୱାଧୀନତା

ଲକ୍ଷ୍ମୀକୁ ବନ୍ଦୀ ଆଣିବାକୁ, ଠିକ୍ ସେଇ ମୁହୂର୍ତ୍ତରେ କଲେଜ୍‌ର ମିଲ୍‌ଟନ୍, ବାଇରନ୍‌ଙ୍କ ଗ୍ରନ୍ଥ, ଅନାଗତ ପ୍ରିୟାର ମଧୁସ୍ମୃତିକୁ ଭାଂଗିଦେଇ ମୁଁ ଛୁଟିଲି ସେଇମାନଙ୍କ ପଛରେ ପାଗଳହୋଇ ! ଲୁହାର ବେଡ଼ି ପିନ୍ଧି, ଅନ୍ଧାରି ଗୁହା ଭିତରେ ଗୋରୁକ୍‌ର ମାଡ଼ ଖାଇ ବିଦ୍ରୋହୀ ମନ ମୋର ଚିତ୍କାର କରି ଉଠିଲା— 'ବନ୍ଦେ ମାତରମ୍' ! ···'ଇନକଲାବ୍ ଜିନ୍ଦାବାଦ' !"

ଶ୍ରୀ ସାମୁଏଲ୍ ସାହୁ (ବାବ) 'ଜହର' ଭୂମିକାରେ ଅଭିନୟ କରୁଥିଲେ । ଉତ୍ତେଜିତ କଣ୍ଠରେ ସେ ଯେତେବେଳେ 'ବନ୍ଦେ ମାତରମ୍' 'ଇନକଲାବ୍ ଜିନ୍ଦାବାଦ୍' ଚିତ୍କାର କରି ଉଠିଲେ ; ସେତେବେଳେ ସାରା ପ୍ରେକ୍ଷାଳୟରେ ଦର୍ଶକମାନେ ଛିଡ଼ାହୋଇ ଚିତ୍କାର କଲେ 'ବନ୍ଦେ ମାତରଂ', 'ଇନ୍‌କିଲାବ ଜିନ୍ଦାବାଦ' ! ଦ୍ୱିତୀୟ ଧାଡ଼ିରେ ବସି ମୁଁ ଲୁଇସ୍ ସାହେବଙ୍କୁ ପଛପଟୁ ଚାହିଁଲି । ଉତ୍ତେଜନାରେ ତାଙ୍କର ଦୁଇଟି କାନ ଗାଢ଼ ନାଲି ରଙ୍ଗ ହୋଇଯାଇଥାଏ । ମହତାବବାବୁ କରତାଳି ଦେଉଥାନ୍ତି ଉତ୍‌ଫୁଲ୍ଲ ହୋଇ । ସେଇଠି ମୋର ମନେ ହେଲା, ମୋ ବନ୍ଧୁମାନଙ୍କ ଭବିଷ୍ୟତ୍‌ବାଣୀ ହୁଏତ ସତ୍ୟରେ ପରିଣତ ହେବ । ହୁଏତ କାରାବାସ, ନଚେତ୍ ଫାଶୀ । ଗୁଏଁ ଗୁଏଁ ମୋ ଭିତର ପଞ୍ଜରା ଭେଦି ବାହାରି ଆସିଲା ଉଚ୍ଛ୍ୱାସର, ଉତ୍ତେଜନାର ତୃପ୍ତିର ଏକ ଦୀର୍ଘଶ୍ୱାସ !

ନାଟକର ଶେଷ ଯବନିକା ପତନ ହେଲାପରେ ଲାଟ୍‌ସାହେବ ଉଠିଛି ଯିବାକୁ ବାହାରିଲେ । ହଠାତ୍ ଗଭର୍ଣ୍ଣର ଫେରିପଡ଼ି ଡକ୍ଟର ମହତାବଙ୍କୁ ପଚାରିଲେ, "Who is the writer ?" ମହତାବ ବାବୁ ମତେ ଗଭର୍ଣ୍ଣରଙ୍କ ପାଖକୁ ଆସିବାକୁ ନିର୍ଦ୍ଦେଶ ଦେଲେ ଓ କହିଲେ, "This youngman is the writer of the play." ମୋ ସହିତ ଗାଢ଼ କରମର୍ଦ୍ଦନ କରି ଲୁଇ ସାହେବ କହିଲେ, "Weldone, My boy ! Good luck !" ବହୁ କଳ୍ପନା ଜଳ୍ପନାର ପୂର୍ଣ୍ଣଚ୍ଛେଦ ଏଇଠି ପଡ଼ିଲା । "ଓଡ଼ିଆ ନାଟକର ବିକାଶଧାରା, ଦ୍ୱିତୀୟ ଖଣ୍ଡ"ରେ ଅଧ୍ୟାପକ ହେମନ୍ତ କୁମାର ଦାସ 'ଜହର' ନାଟକ ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରିଛନ୍ତି—

"ପ୍ରାକ୍-ସ୍ୱାଧୀନତା କାଳରେ ସମଗ୍ର ଦେଶରେ ସମାଜ ଜୀବନର ଘଟ-ପରିବର୍ତ୍ତନ କାଳରେ, ଜାତିର ଏହି ଜାତୀୟ ଚେତନାର ମହାମୁହୂର୍ତ୍ତରେ ନାଟ୍ୟକାର ଭଞ୍ଜ କିଶୋର ନିରବ ରହି ପାରିନାହାନ୍ତି । ଅଭିନୟ ମାଧ୍ୟମରେ ସେ ପ୍ରତ୍ୟକ୍ଷ ଭାବେ ଜନଚିତ୍ତରେ ସ୍ୱଦେଶିକତା ଓ ରାଜନୈତିକ ମତବାଦର ପ୍ରଚାର କରିବାକୁ ଆଗେଇ ଆସିଛନ୍ତି । ଦେଶବାସୀଙ୍କୁ ମହତ୍ତ୍ୱ ଐକ୍ୟର ଅନୁଭୂତିରେ ଅନୁପ୍ରେରିତ କରି ଶାନ୍ତିର ସ୍ୱପ୍ନ ଦେଖିଛନ୍ତି ।"

ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଅଣବନ୍ଦୀ ସ୍ୱାଧୀନତା-ସଂଗ୍ରାମୀ (ଯେଉଁମାନେ ଦେଶର ସ୍ୱାଧୀନତା ପ୍ରାପ୍ତି ଲାଗି underground work କରିଥିଲେ)ମାନଙ୍କ ପାଇଁ ସଂଗ୍ରାମୀ ପେନ୍‌ସନ୍ ଲାଗୁ କରିବାର ଯୋଜନା କରିଥିଲେ । ଉକ୍ତ ଯୋଜନା ଅନୁଯାୟୀ ଯେଉଁମାନେ ପ୍ରତ୍ୟକ୍ଷ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ଜେଲ୍‌ଦଣ୍ଡ ଭୋଗ କରିଥିଲେ, ତାଙ୍କ ଛଡ଼ା ଅନ୍ୟ ଯେଉଁମାନେ ପରୋକ୍ଷ ଭାବେ ସ୍ୱାଧୀନତା ଆନ୍ଦୋଳନକୁ ଆଗେଇ ନେବାପାଇଁ ସହଯୋଗ କରିଥିଲେ, ସେମାନଙ୍କୁ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ ଆଖ୍ୟା ଦେଇ ସମ୍ମାନିତ କରିବା କଥା । ମୁଁ ବ୍ରିଟିଶ୍ ସରକାର ଅଧୀନରେ ସର୍ଭିସ୍ କରି ମଧ୍ୟ ସରକାରୀ ବିରୋଧି ଲେଖାସବୁ ଲେଖୁଥିଲି, ଓ ପ୍ରକାଶିତ କରାଉଥିଲି । 'ଜହର' ନାଟକ ତାର ଜ୍ୱଳନ୍ତ ଉଦାହରଣ ! ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ସେ ସମୟରେ ଓଡ଼ିଶାର ଅନ୍ୟାନ୍ୟ ସହରାଞ୍ଚଳ ଓ ପୁରପଲ୍ଲୀ ଅଞ୍ଚଳରେ ଏହି ନାଟକ ମଞ୍ଚସ୍ଥ କରି ଯେପରି ଭାବରେ ଜନସାଧାରଣଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବାକୁ ପ୍ରେରଣା ଦେଉଥିଲେ ଓ "ବନ୍ଦେ ମାତରଂ" "ଇନ୍‌କିଲାବ ଜିନ୍ଦାବାଦ" ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥିଲା ; ତାହା ସେକାଳର ଅନୁଭବୀ ଛଡ଼ା ଅନ୍ୟ କେହି ଜାଣି ପାରିବେ ନାହିଁ । ଇତିହାସ-ପ୍ରସିଦ୍ଧ ରୁଷୋ, ଭଲ୍‌ଟେୟାର୍ ପ୍ରଭୃତି ଲେଖକଗଣ ଫ୍ରାନ୍‌ସ ବିପ୍ଳବକୁ ତାଙ୍କ ଲେଖା ବଳରେ ଯେଉଁଭଳି ପ୍ରଜ୍ୱଳିତ କରିଥିଲେ, ମୋର 'ଜହର' ନାଟକ ଯେ ସ୍ୱାଧୀନତା ଆନ୍ଦୋଳନରେ ସେହିଭଳି ଏକ ମହାନ୍ ଭୂମିକା ଗ୍ରହଣ କରିଥିଲା···ଏହା କହିଲେ ବୋଧହୁଏ ବାହୁଲ୍ୟ ହେବ ନାହିଁ । ମୋର ଏହି underground activities (କବିତା ଓ ନାଟକ ଲେଖା ପ୍ରଭୃତି) ଅନ୍ୟ underground work ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଜେଲ୍ ଯାଇନାହିଁ, ପୋଲିସ୍‌ର ଲାଠି ପିଠିରେ ବାଜି ନାହିଁ, କିନ୍ତୁ ମୋର ସାହିତ୍ୟ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିଛି, ଦେଇଛି ଅଭୂତପୂର୍ବ ପ୍ରେରଣା । ଅନ୍ୟ ଅଣବନ୍ଦୀମାନଙ୍କ ତୁଳନାରେ ମୋର ଏହି ଅବଦାନ ନିଶ୍ଚିତ ଭାବେ ଏକ ବ୍ୟତିକ୍ରମ ! Extra-special ବୋଲି ମୋର ଧାରଣା । କଥା ପ୍ରସଙ୍ଗରେ ଏଠାରେ ଆଉ ଗୋଟିଏ କଥା ଉଲ୍ଲେଖ କରୁଛି । ହୁଏତ ଏହା "ନିଜ ଢୋଲ ନିଜେ ବାଡ଼େଇବା" ପରି ଲାଗିପାରେ । କିନ୍ତୁ ଯାହା ସତ୍ୟ, ତାହାହିଁ ସତ୍ୟ, ସତ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ବନ୍ଧୁମାନଙ୍କ ପରାମର୍ଶ କ୍ରମେ ମୁଁ "ଉତ୍କଳ ସ୍ୱାଧୀନତା ସଂଗ୍ରାମୀ ସଂଘ"ର ଜଣେ ସଦସ୍ୟ ହୋଇଥିଲି ଏବଂ ଶ୍ରୀମତୀ ଗାନ୍ଧୀଙ୍କ ଯୋଜନା ଅନୁସାରେ ସଂଗ୍ରାମୀ ଭତ୍ତା ପାଇବା ପାଇଁ ଓଡ଼ିଶା ସରକାର ତଥା ଭାରତ ସରକାରଙ୍କୁ ଆବେଦନ କରିଥିଲି । ମୋର ଉକ୍ତ ଦରଖାସ୍ତକୁ ଓଡ଼ିଶାର ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ପ୍ରବୀଣ ସାମ୍ବାଦିକ ୰ ଶ୍ରୀହର୍ଷ ମିଶ୍ର recommend

କରିଥିଲେ ଏବଂ ବର୍ଷୀୟାନ୍ ସଂଗ୍ରାମୀ ତଥା ସାମ୍ବାଦିକ ଶ୍ରୀଯୁକ୍ତ ବିଶ୍ୱନାଥ ପରିଡ଼ା ମଧ୍ୟ ସୁପାରିଶ୍ କରିଥିଲେ । ମୋର ଆଶା ଥିଲା, ଭତ୍ତା ପଛକେ ନ ହେଉ, ସ୍ୱାଧୀନତା-ସଂଗ୍ରାମୀର ସମ୍ମାନ ସୂଚକ ତାମ୍ରପତ୍ର ମୋତେ ମିଳିବ । ତାହାହିଁ ମୁଁ ମୋର ଆବେଦନ ପତ୍ରରେ ଲେଖିଥିଲି ।

କିନ୍ତୁ ବର୍ଷ ପରେ ବର୍ଷ ଗଡ଼ିଗଲା, ଏ ଯାବତ୍ ପ୍ରାଦେଶିକ ସରକାର କିମ୍ବା ଭାରତ ସରକାର ଏ ଦିଗରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କଲେ ନାହିଁ । ଯଥାର୍ଥରେ କବି ଯଦୁମଣି କହିଥିଲେ : "ସ୍ୱପ୍ନ ଦେଖିଥିଲେ ଯାହା ହରଷେ"…!

---

—ପାଞ୍ଚ—

୧୯୪୪ ମସିହା । ସେତେବେଳେ ସାରା ପୃଥିବୀରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା (୧୯୩୯-୧୯୪୫) । ଫାସିଷ୍ଟ ଜର୍ମାନୀ, ଇଟାଲୀ ଓ ଜାପାନର ମିଳିତ ଶକ୍ତି ବିରୁଦ୍ଧରେ ମିତ୍ରଶକ୍ତିର ଘମାଘୋଟ ଲଢ଼େଇ ଲାଗିଥାଏ । ଇଂଲଣ୍ଡ, ଫ୍ରାନ୍ସ, ରୁଷିଆ ଓ ଅନେକ ଇଉରୋପୀୟ ରାଷ୍ଟ୍ର 'ମିତ୍ରଶକ୍ତି'ର ଅନ୍ତର୍ଭୁକ୍ତ ହୋଇଥାନ୍ତି । ଜର୍ମାନୀର ଦୁର୍ଦ୍ଧର୍ଷ ନାଜି ଶାସକ ହିଟଲର୍‌ଙ୍କ ଦମ୍ଭୋକ୍ତି, ଇଟାଲୀର ଶାସକ ମୁସୋଲିନିଙ୍କର ଉତ୍କଟ ସମର-ଲିପ୍ସା ପୃଥିବୀର ଜନମାନସକୁ ଆତଙ୍କିତ କରି ରଖିଥାଏ । ଏରୋପ୍ଲେନ୍, ମନୋପ୍ଲେନ୍, ସି-ପ୍ଲେନ୍, ବାଇପ୍ଲେନ୍, ଜାପ୍‌ଲିନ୍, ଟରପେଡୋ, କମାଣ, ମେସିନ୍ ଗନ୍, ବୋମା ପ୍ରଭୃତି ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ର ସାରା ଜଳ ସ୍ଥଳ ଆକାଶପଥକୁ ବିପଦସଙ୍କୁଳ କରି ରଖିଥାଏ । ଚାରିଆଡ଼େ ତାହି ତାହି ଡାକ । କିଏ "ସିଙ୍ଗାପୁର ଦେଇ ଜାପାନୀ ମାଡ଼ି ଆସୁଛନ୍ତି" କହୁଥାଏ ତ, ଆଉ କିଏ କହୁଥାଏ, "ଜର୍ମାନ ଚାରିଆଡ଼େ ବୋମା ପକେଇ ଦେଶଟାକୁ ଜାଳି ପୋଡ଼ିଦେବ" । ଆଉ ବା କିଏ ଆଖିରେ ଦେଖିଲା ପରି କହୁଥାଏ, "କୁଜଙ୍ଗରେ ବୋମା ମାଡ଼ ହୋଇଛି; କୁଢ଼ କୁଢ଼ ଶବ ଟ୍ରକ୍‌ରେ ବୁହା ହେଉଛି" ଇତ୍ୟାଦି । ମୁଁ ଆଖି ନିଜେ ଦେଖିଛି, ଗୋରା ପଲଟନ୍ ଓ ଭାରତୀୟ ସୈନ୍ୟମାନେ ହଜାର ହଜାର ସଂଖ୍ୟାରେ ରେଲଯୋଗେ ଯିବା ଆସିବା କରୁଥାନ୍ତି । ମାତ୍ର ସେମାନଙ୍କ ଲକ୍ଷ୍ୟ ସ୍ଥଳ କେଉଁଠି, ତାହା କହି ପାରିବ ନାହିଁ । ଯାହାହେଉ ନା କାହିଁକି, ମଝି ବ୍ଲାକ୍‌ଆଉଟ୍ ଦେଶ ତମାମ୍ ପ୍ରଚଳିତ ହେଉଥାଏ । ଏପ୍ରକାର ବ୍ଲାକ୍‌ଆଉଟ୍ ଦେଶ ଓ ଜାତି ପକ୍ଷରେ ଅତ୍ୟନ୍ତ କ୍ଷତିକାରକ । କାରଣ ଏହା ସର୍ବସାଧାରଣଙ୍କ ମନୋବଳକୁ ଭାଙ୍ଗିଦେଇ ସୃଷ୍ଟି କରେ ଚରମ ବିଶୃଙ୍ଖଳା !

ଭାରତବର୍ଷର ସୁରକ୍ଷା ତଥା ନିରାପତ୍ତା ଲାଗି ବ୍ରିଟିଶ୍ ସରକାର ବିଶେଷ ଯତ୍ନବାନ ଥିଲେ । ସେମାନେ ଯେଉଁ ବ୍ୟବସ୍ଥା ସବୁ ପ୍ରବର୍ତ୍ତନ କରିଥିଲେ, ତା' ମଧ୍ୟରେ 'A. R. P.' ଅନ୍ୟତମ । A. R. P. ଅର୍ଥାତ୍ "Air Raid Precaution." ଆକାଶପଥରୁ ବୋମା ପଡ଼ିବା ପୂର୍ବରୁ କଉଳ ସତର୍କତା ଗ୍ରହଣ କରିବା ଉଚିତ, ସେ ସମ୍ପର୍କରେ ଉକ୍ତ ଅନୁଷ୍ଠାନ ଗଠିତ ହୋଇ ଯୁବକର୍ମୀ ଓ ସ୍ୱେଚ୍ଛାସେବୀମାନଙ୍କୁ ଉପଯୁକ୍ତ ତାଲିମ୍ ଦିଆଯାଉଥିଲା । ଓଡ଼ିଶାରେ ସର୍ବତ୍ର ତଥା କଟକରେ ମଧ୍ୟ ଏହି Organisation ବାଧ୍ୟବାଧକ ଭାବେ କାର୍ଯ୍ୟ କରୁଥିଲା । ଇଂରାଜୀ 'W' (ଡବ୍ଲ୍ୟୁ) ବା 'M' ଆକାରରେ ପୁରୁଷେ ଉଚ୍ଚର ଟ୍ରେଞ୍ଚ ବା ଗାତ ସବୁ ଖୋଳାଯାଇ ଗୋଳାବର୍ଷଣ ସମୟରେ ଲୋକେ ଆଶ୍ରୟ ନେବାର ବ୍ୟବସ୍ଥା ହୋଇଥିଲା । ରାସ୍ତାରେ ଯାଉଥିଲାବେଳେ ଯଦି ବୋମା ପଡ଼ିବାର ସଙ୍କେତ ଦିଆଯାଇ ସାଇରନ୍ ବାଜେ ଲୋକମାନେ ସେହି ଟ୍ରେଞ୍ଚ୍ ଭିତରେ ପଶିଯିବେ ଏବଂ ଯେଉଁମାନେ ବାହାରେ ରହିଯାଇଥିବେ ଅବା ରାସ୍ତାରେ ଯାଉଥିବେ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା, ସେମାନେ ମୁହଁମାଡ଼ି ସିଧା ମାଟି ଉପରେ ଲମ୍ବ ହୋଇ ଶୋଇଯିବେ, ଦୁଇ କାନରେ ତୂଳା ଖଣ୍ଡା ଲଗାଇବେ ପ୍ରଚଣ୍ଡ ଶବ୍ଦରୁ କାନକୁ ରକ୍ଷା କରିବା ପାଇଁ ଓ ଆକାଶ ପରିଷ୍କାର ହେଲା ବୋଲି ସୂଚନାତ୍ମକ ସାଇରନ୍ ବାଜିବା ପର୍ଯ୍ୟନ୍ତ ଟ୍ରେଞ୍ଚ୍ ଭିତରୁ ବାହାରିବେ ନାହିଁ, ରାସ୍ତାରୁ ଉଠିବେ ନାହିଁ କିମ୍ବା ଅନ୍ୟ ଯେକୌଣସି କାରଣରୁ ହେଉ ପଛକେ ଘର ଭିତରୁ ବାହାରି ଖୋଲା ଯାଗାକୁ ଆସିବେ ନାହିଁ । ତାଲିମ୍ ଦିଆଯାଇ ଏହି ସବୁ ନିୟମ କଡ଼ାକଡ଼ି ଭାବେ ପାଳନ କରାଯାଉଥିଲା ।

ଆମ ଅଫିସ୍ (Collectorate)ରୁ ମୋତେ ମିଶାଇ ସ୍ୱର ପାଞ୍ଚଜଣ ଯୁବକଙ୍କୁ ଉପଯୁକ୍ତ ତାଲିମ୍ ଦିଆଯାଇ ଅବୈତନିକ (Honourary) ପୋଷ୍ଟ ଓ୍ୱାର୍ଡ଼େନ୍ ଭାବେ ବାଧ୍ୟବାଧକଭାବେ ନିଯୁକ୍ତ ଦିଆଯାଇଥିଲା । ଆମର duty ଥିଲା, ଅଫିସରୁ ଫେରି ପାଉଁସିଆଁ (ଝରଣା) ରଙ୍ଗର uniform, ବୁଟ୍ ଜୋତା, ମୋଜା, ହୁଇସିଲ୍, ଓ ହେଲମେଟ୍ ପ୍ରଭୃତିରେ ସଜ୍ଜିତ ହୋଇ ବିଭିନ୍ନ Warden Post ପରିଦର୍ଶନ କରିବା ଓ ନିୟମାନୁଯାୟୀ କାର୍ଯ୍ୟ ହେଉଛି କି ନାହିଁ ତାର ତଦାରଖ କରିବା । ରାତିରେ ପ୍ରାୟତଃ ବେଶି କଟକଣା ଲାଗୁ ହୋଇଥାଏ । ଯାନବାହନର ଆଲୋକ ସବୁ ତଳମୁହାଁ ରହିବ, ବିଡ଼ି, ସିଗାରେଟ୍ ବା ଦିଆସିଲି କେହି ଖୋଲା ଜାଗାରେ ବ୍ୟବହାର କରିବେ ନାହିଁ; କୌଣସି ପ୍ରକାର ଆଲୋକର ଶିଖା ଉପରରୁ ଦେଖାଗଲେ, ତାହା ଜନବହୁଳ ବସ୍ତି ବୋଲି ଜଣାପଡ଼ିବ ଏବଂ ବୋମାମାଡ଼ର (target) ଲକ୍ଷ୍ୟସ୍ଥଳ ହେବ, ସେଥିପାଇଁ କଠୋର ଆଇନ୍ ପ୍ରବର୍ତ୍ତନ କରାଯାଇଥାଏ । ଆମେ Post Warden ମାନେ

ଏସବୁ ଆଇନ୍ କାର୍ଯ୍ୟରେ ଠିକ୍ ଶକ୍‌ପ୍ରୟୋଗ କରାଯାଉଛି କି ନାହିଁ ତାର ଦେଖାଶୁଣା କରୁ ଏବଂ ଆବଶ୍ୟକ ସ୍ଥଳେ ଅପରାଧୀକୁ ପୋଲିସ୍ ଜିମା ଦେଉ । ୧୯୪୫ ମସିହାରେ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ମୁଁ ଏହି ଦାୟିତ୍ୱରେ ରହିଥିଲି ଏବଂ ଲୋକଙ୍କ ଦୃଷ୍ଟିରୁ ନିଷ୍ଠାପର ଭାବେ କାର୍ଯ୍ୟ ସଂପାଦନ କରିଥିଲି । War Service କରିଥିଲି ବୋଲି ମୋ Service Bookରେ ନାଲି ଅକ୍ଷରରେ ସ୍ପଷ୍ଟ ଉଲ୍ଲେଖ କରାଯାଇଥିଲା ।

୧୯୪୫ ମସିହାର ଶେଷଭାଗରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ସମାପ୍ତି ଘଟିଲା ଏବଂ ମିତ୍ରଶକ୍ତିର ବିଜୟ ହେଲା । ଜର୍ମାନୀ, ଇଟାଲୀ ଓ ଜାପାନର ଘଟିଲା ଚରମ ବିପର୍ଯ୍ୟୟ ! ସେହି ଯୁଦ୍ଧରେ ସାରା ପୃଥିବୀରେ ଲକ୍ଷ କୋଟି ଲୋକ ପ୍ରାଣ ହରାଇଲେ, କ୍ଷତବିକ୍ଷତ ହେଲେ ଏବଂ ଚଳଚଞ୍ଚଳ ହୋଇଗଲେ । ଆଧୁନିକ ବିଜ୍ଞାନର ବୈଜ୍ଞାନିକାମସ୍ତ ମୃତ୍ୟୁାସ୍ତ ଉତ୍ପାଦନ ସାରା ବିଶ୍ୱକୁ ଥରହର କରିଦେଲା । ସର୍ବନାଶୀ ସମର ଅଗଣିତ ଶିଶୁଙ୍କୁ ପିତୃହୀନ, ଅନାଥ କରିଦେଲା । ଅସଂଖ୍ୟ ରମଣୀଙ୍କୁ ବିଧବା କରିଦେଲା ଓ ଶୋକାତୁର ଜନନୀମାନଙ୍କୁ କରିଦେଲା ପୁତ୍ରହରା । ଜୟ-ପରାଜୟରେ କେଉଁ ଦେଶର କେତେ ଲାଭ ବା କ୍ଷତି ହେଲା ତା'ର ହିସାବ ଇତିହାସ ହୁଏତ ରଖିଥିବ, ମାତ୍ର ବିକଳାଙ୍ଗ-ପୃଥିବୀର ସମ୍ମିଳିତ ହାହାକାର ମାନବ ଜୀବନକୁ ଧ୍ୱଂସ ପଥରେ ଆଗେଇ ନେବା ସହିତ ଆର୍ଥିକ ମେରୁଦଣ୍ଡକୁ ଦୋହଲାଇ ଦେଇ ଆସନ୍ତା ପିଢ଼ିପାଇଁ ସର୍ବନାଶର ଯେଉଁ ମାରାତ୍ମକ ବୀଜ ବପନ କରିଗଲା ତାର ହିସାବ କିଏ ରଖିଛି ? କିଏ ଜାଣିଛି ମାନବିକତା କେତେଦୂର ଅଧୋଗାମୀ ହୋଇଛି ? ଭଗବାନ କରନ୍ତୁ ପୃଥିବୀରେ ଆଉ ତୃତୀୟ ବିଶ୍ୱଯୁଦ୍ଧର ଘନଘଟା ନ ହେଉ, ନଚେତ୍ ପରମାଣୁ ଶକ୍ତି ନାଗାସାକି ଓ ହିରୋସୀମାରେ ଯେଉଁ ନାରକୀୟ ତାଣ୍ଡବ ସୃଷ୍ଟି କରିଛି, ତାର ପୁନରାବୃତ୍ତି ଘଟିଲେ ଧରାପୃଷ୍ଠରୁ ସମଗ୍ର ମାନବ ଜାତି ନିଶ୍ଚିତ ଭାବେ ନିଶ୍ଚିହ୍ନ ହୋଇଯିବ, ଏଥିରେ ସନ୍ଦେହର ଅବକାଶ ନାହିଁ ! ୧୯୪୫ ଅଗଷ୍ଟ ୬ ତାରିଖରେ ଜାପାନର ଏକ ପ୍ରାଚୀନାଞ୍ଚଳ ନଗରୀ ହିରୋସୀମା ଉପରେ ଓ ଅଗଷ୍ଟ ୯ ତାରିଖରେ ଜାପାନର ଶିଳ୍ପନଗରୀ ନାଗାସାକି ଉପରେ ପରମାଣୁ ବୋମା ନିକ୍ଷିପ୍ତ ହୋଇ ସେ ଦୁଇଟି ନଗରୀକୁ ଧ୍ୱଂସ-ସ୍ତୁପରେ ପରିଣତ କରିଥିଲା । ସହସ୍ର ସୂର୍ଯ୍ୟୋଦୀପ୍ତ ଏକ ପ୍ରକାଣ୍ଡ ଛତାକାର ଧୂମକୁଣ୍ଡଳୀ ଓ କମଳା ରଙ୍ଗର ଅଗ୍ନିବଳୟ କିମିଷକ ମଧ୍ୟରେ ଦୁଇଟି ସହରକୁ ଧୂଳିସାତ୍ କରି ମହାଶ୍ମଶାନ ସୃଷ୍ଟି କରିବା ସହିତ ଗର୍ବୋନ୍ନତ ଜାପାନର ମେରୁଦଣ୍ଡକୁ ଭାଙ୍ଗି ଚୂରମାର କରିଦେଇଥିଲା । ଆମେରିକାର ସେହି ବର୍ବରୋଚିତ କାର୍ଯ୍ୟ ଫଳରେ ଜାପାନର ଲକ୍ଷ ଲକ୍ଷ ଲୋକ ମୃତାହତ ହୋଇଥିଲେ । ପରେ ପରେ ବିଶ୍ୱଯୁଦ୍ଧର ସମାପ୍ତି ଘଟିଥିଲା ।

"ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ ।" ସଂସାରରେ କୌଣସି ମନୁଷ୍ୟର ଜୀବନ ଏକ ସରଳରେଖା ଭଳି ସମାନ ଭାବରେ ଗତି କରେ ନାହିଁ । ସାଗର ସାଥିରେ ମିଶିଯିବା ଆଗରୁ ନଦୀ ଯେପରି ଅଙ୍କାବଙ୍କା ପଥରେ ଖାଲ୍‌ଢିପ ଅତିକ୍ରମ କରି ଆଗେଇ ଯାଏ, ମନୁଷ୍ୟ ଜୀବନର ଗତି ମଧ୍ୟ ଠିକ୍ ସେହିପରି । ଭବିତବ୍ୟ ତା' ପାଇଁ କ'ଣ ସାଇତି ରଖିଛି, ଅଦୃଷ୍ଟ ତା' କପାଳରେ କଣ ଲେଖିଛି, ତାହା ସେ ଜାଣିପାରେ ନାହିଁ । ନିତ୍ୟ-ନିୟମିତ କର୍ତ୍ତବ୍ୟ ପଥରେ ଅଗ୍ରସର ହେଉଁ ହେଉଁ କେତେବେଳେ ସୁଖମୟ ଅବା ଦୁଃଖମୟ ପରିସ୍ଥିତି ଉପୁଜିବ, ସେ ଦିଗକୁ ନଜର ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ତାହା ହିଁ ମୋ ଜୀବନର ନୀତି ଥିଲା । ଭବିଷ୍ୟତ୍ ଚିନ୍ତା କରି କୌଣସି ଦିନ ମୁଁ ବ୍ୟସ୍ତ-ବିବ୍ରତ ହୋଇନାହିଁ । ବାପ୍ପିତାଙ୍କ ଚରଣ ତଳେ ନିଜକୁ ସମର୍ପଣ କରି କର୍ତ୍ତବ୍ୟ ପାଳନରେ ଅଭ୍ୟସ୍ତ ହେବା ହିଁ ମୋର ଶିକ୍ଷା ଆଉ ଦୀକ୍ଷା । କବି ପଦ୍ମଚରଣ ପଟ୍ଟନାୟକ ଲେଖିଛନ୍ତି :—

"ତୁମ ଧୂଳି ଘରେ କରିବି ତପସ୍ୟା
ରକ୍ତାକ୍ତ ଶଯ୍ୟାରେ ଯୋଗ,
ହସିବି କାନ୍ଦିବି ତୁମ ଦତ୍ତ ଧନେ
ହେବ ମୋର ରାଜଯୋଗ ।"

ହେ ପ୍ରଭୁ ! ସୁଖ ଓ ଦୁଃଖ ହେଉଛି ତୁମର ଦତ୍ତ ଧନ । ମାଟିର, ଧୂଳିର ଏଇ ସଂସାରରେ ସେଇ ଧନକୁ ନେଇ ରାଜା ଜନକଙ୍କ ପରି ମୁଁ ତପସ୍ୟାରତ ରହିବି ! ସମଷ୍ଟିଙ୍କ ସହିତ ଉତ୍ତମ ସଂପର୍କ ରଖିବି, ସଭିଙ୍କ ସୁଖଦୁଃଖରେ ଭାଗୀଦାର ହେବି । ଆପଣାର ଓ ଆପଣା ପରିବାରର ହିତ ଚିନ୍ତା କରିବା ସହିତ ମୋର ଆତ୍ମୀୟ ସ୍ୱଜନ, ପଡ଼ୋଶୀ, ବନ୍ଧୁ, ତଥା ସମାଜର ସମୂହ ସ୍ୱାର୍ଥ ସାଧନ ଲାଗି ମଧ୍ୟ ଚିନ୍ତା କରିବି ଓ ଯଥାସମ୍ଭବ କାର୍ଯ୍ୟ କରିବି । କାରଣ, ମୁଁ ଏକାକୀ ଭଲରେ ରହିଲେ ସମସ୍ତେ ଭଲରେ ରହିବେ ନାହିଁ; ସମସ୍ତେ ଭଲରେ ରହିଲେ ହିଁ ମୁଁ ଭଲରେ ରହିବି ! ଏହି ମହାନ୍ ଆଦର୍ଶକୁ ଜୀବନର ଶ୍ରେୟ ଭାବେ ଗ୍ରହଣ କରି କର୍ତ୍ତବ୍ୟ ସଂପାଦନ କଲେ ମନୁଷ୍ୟ ସମାଜ ସୁଖୀ ହେବ, ସମୃଦ୍ଧ ହେବ ।

୧୯୪୫ ମସିହାର ଶେଷଭାଗ । ବାପାଙ୍କ ଚିଠି ପାଇ ସପ୍ତାହେ ଛୁଟି ନେଇ ବାରିପଦା ଗଲି । ବାପାଙ୍କର ଇଚ୍ଛା ଥିଲା - ବୋଉକୁ, ମୋତେ ଆଉ ସାନ ଭଉଣୀ ଦୋ'ଟିକୁ ନେଇ ତୀର୍ଥଯାତ୍ରା କରିବାକୁ । ସେଥିପାଇଁ ସେ ମୋ ଯିବା ଆଗରୁ ଛୁଟି ନେଇ ସାରିଥିଲେ ଓ ଆନୁସଙ୍ଗିକ ବ୍ୟବସ୍ଥା ସବୁ ମଧ୍ୟ କରି ସାରିଥିଲେ । ବିଶ୍ୱସ୍ତ ଭୃତ୍ୟ ଦର୍ଶନକୁ ଘରର ଦାୟିତ୍ୱ ଦେଇ ଆମେ ସମସ୍ତେ କଟକ ଚାଲିଆସିଲୁ । ଦାଦାଙ୍କ ବସାଘରେ ଗୋଟିଏ ରାତି କଟାଇ ତା'ପରଦିନ ସକାଳୁ ଆମର

ଯାତ୍ରା ଆରମ୍ଭ ହେଲା । ପ୍ରଥମେ ପୁରୀରେ ପହଞ୍ଚି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କଲୁ । ଅନ୍ୟାନ୍ୟ ଦେବଦେବୀଙ୍କ ଦର୍ଶନ କରି ମନ ଖୁସିରେ ସମୁଦ୍ର କୂଳେ ବୁଲିଲୁ ।

ପୁରୀରୁ କଟକ ଫେରିବା ବାଟରେ ସାକ୍ଷୀଗୋପାଳ, କୋଣାର୍କ ଓ ଭୁବନେଶ୍ୱର ଦେଖିଲୁ । ପ୍ରଭୁ ଲିଙ୍ଗରାଜଙ୍କ ନିରୋଳା ଦର୍ଶନ ମିଳିଲା । ସବୁ ଠାକୁରଙ୍କ ପାଖରେ ଲୋକଗହଳି ଶିଳ ପିଲାଙ୍କ ପାଇଁ କିଛି ଖେଳନା ଓ ବୋଉର ଶଙ୍ଖା, ସିନ୍ଦୂର ପ୍ରଭୃତି କିଣି କଟକ ଫେରିଆସିଲୁ । କଟକରେ ଦିନେ ଦୁଇଦିନ ବିଶ୍ରାମ ନେଇ ଅନ୍ୟ ସ୍ଥାନକୁ ଯିବାପାଇଁ ଦାଦା ପ୍ରବର୍ତ୍ତାଉଥିଲେ; ହେଲେ ତାଙ୍କ କଥା ବାପା ଶୁଣିଲେ ନାହିଁ । ସେଇ ଖରା ଖରା ଧବଳେଶ୍ୱର ଦର୍ଶନ କରିବାକୁ ବାହାରିଲେ । ଡଙ୍ଗାରେ ବସି କଟକର ଚନ୍ଦ୍ରିକା ଘାଟରୁ ଧବଳେଶ୍ୱର ଗଲୁ । ମୁଣ୍ଡ ଫଟା ଖରା, ଦେହରୁ ଗମ୍ ଗମ୍ ଝାଳ ବୋହିଯାଉଥାଏ । ଯାହାହେଉ, ସେଠାରେ ପହଞ୍ଚି ପ୍ରସାଦ ସେବନ କରି ଭଲରେ ଭଲରେ କଟକ ଫେରିଆସିଲୁ । ସେତେବେଳକୁ ସଂଧ୍ୟା ଆଗତ ପ୍ରାୟ । କେଣ୍ଟେବଜାର ଗଳିର କାଟକୁଣ୍ଡି ଆଲୁଅ ସବୁ ଝିମ୍ ଝିମ୍ ହୋଇ ଜଳିବାକୁ ଆରମ୍ଭ କଲଣି !

ଏବଂ ଏଇଠୁ ଆରମ୍ଭ ହେଲା ଆମ ପାଇଁ ଚରମ ଦୁର୍ଯୋଗର ପ୍ରଥମ ପର୍ବ ! ରାତି ପ୍ରାୟ ନଅଟା ସମୟ ବାପା ଆମାଶୟ ରୋଗରେ ପୀଡ଼ିତ ହେଲେ । ରୋଗର ପ୍ରକୋପ ଦେଖି ଡାକ୍ତରଖାନା ଯିବାପାଇଁ ଦାଦା ଓ ଅନ୍ୟମାନେ ତାଙ୍କୁ ଯେତେ ବୁଝାଇଲେ କାହାରି କଥା ସେ ଶୁଣିଲେ ନାହିଁ । କହିଲେ, "ଘରେ ମତେ ଔଷଧ ଦିଅ । ମଲେ ପଛେ ମରିବି, ମୁଁ ଡାକ୍ତରଖାନାକୁ ଯିବି ନାହିଁ ।" ଡାକ୍ତର ଡାକି ରାତାରାତି ତାଙ୍କର ଚିକିତ୍ସାର ବ୍ୟବସ୍ଥା ହେଲା; ମାତ୍ର ପାହାନ୍ତା ବେଳକୁ ସେ ଆମ ସମସ୍ତଙ୍କୁ ଶୋକସାଗରରେ ଭସାଇ ପରଲୋକ ଗମନ କଲେ । ସଦା ହୃଷ୍ଟପୁଷ୍ଟ ନିରୋଗ ଦୀର୍ଘ ଶରୀର, ଜ୍ୱର ନାହିଁ, ବ୍ୟାଧି ନାହିଁ, ମୃତ୍ୟୁର କୌଣସି ଲକ୍ଷଣ ମଧ୍ୟ ନାହିଁ, ହଠାତ୍ ସେ ଚାଲିଗଲେ । ଆଖିବୁଜିବା ଆଗରୁ ବୋଉଠୁ କେବଳ ଖଣ୍ଡିଏ ପାନ ମାଗି ଖାଇଥିଲେ । ବାସ୍, ସେତିକି । କବିବର ରାଧାନାଥ ତାଙ୍କ 'ଉଷା' କାବ୍ୟରେ ଲେଖିଛନ୍ତି :—

"ସୁଖେ ପଡ଼େ ପୁଣି ଏଭଳି ବିପାକ
ଏଡ଼େ ବେଗରେ ?
କିଏ ଜାଣିଥିଲା ଏ ବଜ୍ର ପଡ଼ିବ
ବିନା ମେଘରେ !"

ବାସ୍ତବିକ୍, ବିଧିର ବିଧାନ ବିଚିତ୍ର ! ରାତି ପାହିବା ସଙ୍ଗେ ସଙ୍ଗେ ସତୀଚଉରା ଶ୍ମଶାନରେ ଶବଦାହର ସମସ୍ତ ବ୍ୟବସ୍ଥା ଦାଦା କରିଦେଲେ । ବୋଉ ମୁଣ୍ଡ

ଦୋଉ଼ କରୁଥାଏ । ପିଲା ଦୋ'ଟି କିଛୁ ନ ବୁଝିଲା ଭଳି ମୋର ବାଟକୁ ଅନେଇ ବସିଥାନ୍ତି ! ହାୟ, ସେ ହୃଦୟ-ବିଦାରକ ଦୃଶ୍ୟ ଏବେ ବି ମୋ ଆଖିଆଗରେ ଝଲସିଉଠେ ! ମନ ସାଗରରେ ଯେଉଁ ତୀର୍ଥଯାତ୍ରା ଆରମ୍ଭ ହୋଇଥିଲା, ତାର ସମାପ୍ତି ଘଟିଲା ମହାଯାତ୍ରାରେ ! କି ବିଡ଼ମ୍ବନା ସତେ ?···

ଶବଦାହ ପରଦିନ ବୋଉ ଓ ସାଇ ଭଉଣୀ (କାଳୀଚରଣ ଓ ଶାନ୍ତ) ଦୋ'ଟିଙ୍କୁ ନେଇ ବାରିପଦାରେ ଆସି ପହଞ୍ଚିଲି । ବାପାଙ୍କ ଅପମୃତ୍ୟୁ ସମ୍ବାଦ କାନକୁ କାନ ହୋଇ ସାରା ସହରରେ ଖେଳିଗଲା । ବାପାଙ୍କୁ ଚିହ୍ନିଥିବା ଲୋକେ ହାୟ, ହାୟ କଲେ । ବନ୍ଧୁ-ବାନ୍ଧବ, ପାଇପଡ଼ୋଶୀ—ସମସ୍ତଙ୍କ ମୁହଁରେ ବିସ୍ମୟ ଓ ଆଶଙ୍କାର ଚିହ୍ନ ! ମୋ ମାମୁଁମାନେ ଆସି ଆମ୍ଭମାନଙ୍କୁ ସାନ୍ତ୍ୱନା ଦେଲେ ଓ ଶୁଦ୍ଧିକ୍ରିୟାର ସମସ୍ତ ଦାୟିତ୍ୱ ବହନ କଲେ । ମଝିଆଁ ମାମୁଁ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଥିଲେ ବାଲିଡ଼ିହା ସର୍ଦ୍ଦାର । ଜମିଜମାର ଅଭାବ ତାଙ୍କର ନ ଥିଲା ! ଲକ୍ଷ୍ମୀ ଠାକୁରାଣୀ ତାଙ୍କ ଉପରେ ଅତି ପ୍ରସନ୍ନାଥିଲେ । ନିର୍ବିଘ୍ନରେ ଶୁଦ୍ଧିକ୍ରିୟା ସମାପ୍ତି ହେଲା । ତାର କିଛୁଦିନ ପରେ ଘର ଭଡ଼ା ଦେଇ ମୁଁ ପିଲାମାନଙ୍କୁ ଧରି ଗ୍ରୁଣିପୁର ଆସିଲି । ସାଇ, ଭଉଣୀଙ୍କ ପଢ଼ାପଢ଼ିର ବ୍ୟବସ୍ଥା ଗାଁରେ ହେଲା । କାଳକ୍ରମେ ବାରିପଦାର ଘର ଓ ବାଲିଡ଼ିହାରେ ଥିବା ସ୍ୱଳ୍ପ ଜମି ମାମୁଁଙ୍କ ପରାମର୍ଶରେ ବିକ୍ରୀ କରିଦେଲି । ଏହିପରି ଭାବରେ ମୟୂରଭଞ୍ଜ (ବାରିପଦା) ସହିତ ମୋର ସମସ୍ତ ସଂପର୍କ ଚିରସ୍ଥାୟୀ ଛିନ୍ନ ହୋଇଗଲା ।

କବିତା, ଉପନ୍ୟାସ ଓ ନାଟକ ଲେଖିବା ସଙ୍ଗେ ସଙ୍ଗେ ମୁଁ ବିଭିନ୍ନ ସମୟରେ କେତେକ ପ୍ରବନ୍ଧ, କ୍ଷୁଦ୍ରଗଳ୍ପ ଓ ଶ୍ରେଷ୍ଠ ନାଟକ ବା ନାଟିକା ରଚନା କରିଥିଲି । ଯେଉଁ ପତ୍ରିକାରେ ସେ ସବୁ ପ୍ରକାଶିତ ହୋଇଥିଲା, ତାର ଗୋଟିଏ copy ମୋ ପାଖରେ ରହିଛି—ମାତ୍ର ପତ୍ରିକାମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କ ଯାତ୍ରା ବନ୍ଦ କରିଛନ୍ତି । ନିମ୍ନରେ ସେ ସମସ୍ତ ଲେଖାର ଏକ ତାଲିକା ଦିଆଯାଉଛି ।

| ପତ୍ରିକାର ନାମ | ଲେଖା | ବିଭାଗ | ପ୍ରକାଶ କାଳ |
|---|---|---|---|
| ୧ । ଦିନେ-ଓଡ଼ିଶା | ଆମ ରଙ୍ଗମଞ୍ଚ | ପ୍ରବନ୍ଧ | ୧୯୫୦ |
| ୨ । ଚନ୍ଦ୍ରଲେଖା | ନିଳମ୍ | କ୍ଷୁଦ୍ରଗଳ୍ପ | ୧୯୫୧ |
| | ଇଶ୍ୱର ଘର | ,, | ୧୯୫୨ |
| ୩ । ଖ୍ରୀଷ୍ଟକଲେଜ ମ୍ୟାଗାଜିନ୍ | ଯାନ ଓ ଜନତା | ,, | ୧୯୫୩ |
| | ସୂର୍ଯ୍ୟୋଦୟ | କବିତା | ୧୯୫୪ |
| | Unseen (ବଂଗଳା) କବିତା | | ୧୯୫୪ |

| | | | |
|---|---|---|---|
| ୪ । କେତେ ଗୀତ ଅଛି କଥା | ଶାଳ ସହର | ଏକାଙ୍କିକା | ୧୯୫୮ |
| ୫ । ଜାନୁ | ଦୁଇଟି କବିତା | କବିତା | ୧୯୬୧ |
| ୬ । ସ୍ରଷ୍ଟା | ମୁଠାଏ ପାଉଁଶର କବିତା | କବିତା | ୧୯୭୭ |
| ୭ । କଲ୍ଲୋଳମ୍ନା | ବାସ୍ନାଣୀ | କ୍ଷୁଦ୍ରଗଳ୍ପ | ୧୯୮୩ |
| ୮ । ମୃଗତୃଷ୍ଣା | ନିଜ ଆଖିରେ ନିଜକୁ | ପ୍ରବନ୍ଧ | ୧୯୮୫ |
| ୯ । ସୂର୍ଯ୍ୟଶିଖା | ଶିଶୁ ନାଟକ ଓ ଅଭିନୟ | ,, | ୧୯୮୬ |
| ୧୦ । ସାନ୍ତ୍ୱନା | ସ୍ମୃତି-ଚାରଣ | ,, | ୧୯୮୬ |
| ୧୧ । ଗ୍ରୀଣିପୁର ଷୋଭନାର୍ | ମୋ ଜୀବନ ଡାଏରୀର କିୟଦଂଶ | ,, | ୧୯୮୮ |
| ୧୨ । ସତୀର୍ଥ | ହେ ମା' ମୋତେ ଶିଶୁ କର | କବିତା | ୧୯୯୩ |
| ୧୩ । ପ୍ରଜାତନ୍ତ୍ର | ମାତୃଭାଷାର ଅଧୋଗତି | ପ୍ରବନ୍ଧ | ୧୯୯୫ |
| ୧୪ । ଓଡ଼ିଆ ମଞ୍ଚ ନାଟକ | ଅତୀତ ଓ ବର୍ତ୍ତମାନ | ପ୍ରବନ୍ଧ | ୧୯୯୬ |
| ୧୫ । ପଥିକ ରୂପ ବଂଶୀ ବାଜୁ | ଓଡ଼ିଆ, ଇଂରାଜୀ, ବଙ୍ଗଳା, ଭଜନ, ଜଣାଣ, ସଙ୍ଗୀତ ଓ କବିତାବଳୀ | କବିତା | ୧୯୩୭-୯୫ (ଅପ୍ରକାଶିତ) |

ଉପରୋକ୍ତ ଏହି ସମସ୍ତ ରଚନାବଳୀ ବ୍ୟତୀତ ବହୁ ନାଟକ, ବେତାର ନାଟିକା, ଦୂରଦର୍ଶନ ନାଟକ, ଓ ଗୀତିନାଟ୍ୟ ପ୍ରଭୃତି ରଚନା କରିଛି । ଏହା ସଂପର୍କରେ ଅନ୍ୟାନ୍ୟ ସମ୍ୟକ୍ ଆଲୋଚନା କରିବା ସହିତ ଏକ ବିସ୍ତାରିତ ସୂଚୀପତ୍ର ଆତ୍ମ-ଜୀବନୀର ଶେଷରେ ସଂଯୁକ୍ତ କରାଯାଇଅଛି । ଜୀବନ ସାରା ଅଦ୍ୟାବଧି ସାହିତ୍ୟ ସାଧନା କରି ଚାଲିଛି । କୌଣସି ଫଳର ଆଶା ରଖିନାହିଁ; କୌଣସି ଗ୍ରୁପ୍‌ରେ ସାମିଲ୍ ହୋଇନାହିଁ, ଲବି କରିନାହିଁ କିମ୍ବା କାହାର ଦୟା ଭିକ୍ଷା କରିନାହିଁ । ହାତ ପତାଇ ମାଗିଛି ଆଉ ଜଣା କରିଛି ସେଇ ସର୍ବମୟ କର୍ତ୍ତାଙ୍କ ନିକଟରେ ଯେ ମୋ ଜୀବନର ନିୟାମକ, ନିୟନ୍ତକ ! ମୋର ବିପୁଳ ସୃଷ୍ଟିସମ୍ଭାର ପଛରେ ଯେଉଁ ଅଦୃଶ୍ୟ ଶକ୍ତିର ଆଶୀର୍ବାଦ ରହିଛି, ତାଙ୍କର ଶ୍ରୀଚରଣ ତଳେ ପ୍ରଣତି ଢାଳି ପ୍ରାର୍ଥନା କରୁଛି, "ହେ ଦୟାମୟ, ହେ ବିଶ୍ୱ ବିଧାତା ! ମୋତେ ଯାହା ଦେଉଛ ଦିଅ, ହେଲେ ମୋ ମନରେ କେବେ ଅହଂକାର ଦିଅନାହିଁ !" "Pilgrim's Progress" କାବ୍ୟରେ ଇଂରେଜ କବି John Bunyan ଲେଖିଛନ୍ତି—"He that is down, needs fear no fall

He that is low, no pride,

He that is humble, ever shall
Have God to be his guide."

ଏହା ହିଁ ମୋର ଧେୟ ହେଉ, ଶ୍ରେୟ ହେଉ !

—ଛଅ—

ବାରପଦା ଗ୍ରହଣ ପରେ ବୋଉ ଓ ମୋ ବଡ଼ ଭଉଣୀ ଗୁଣିପୁର ଆସି ଗାଁରେ ରହିଲେ । ଆମ ବଡ଼ ଦାଦା ୯ ଅଭୟ ଚରଣ ପଟ୍ଟନାୟକ ଭିନ୍ନ ହୋଇ ଅଲଗା ଘରେ ରହୁଥାନ୍ତି । ସାନ ଦାଦା ୯ ବସ୍ତୁ ଚରଣ ପଟ୍ଟନାୟକ ଆମ ସାଙ୍ଗରେ ଏକାଠି ରହୁଥାନ୍ତି । ସାନ ଖୁଡ଼ୀ ବି ରହୁଥାନ୍ତି । ତାଙ୍କର କିଛି ପିଲାପିଲି ନ ଥିବାରୁ ସେ ଆମ୍ଭମାନଙ୍କୁ ହିଁ ତାଙ୍କ ନିଜ ପିଲାଠୁଁ ଅଧିକ ସ୍ନେହ କରୁଥାନ୍ତି । ଗ୍ରେଟ ଗ୍ରେଟ ଜମିଦାରୀ, ପ୍ରଜାପାଟକ, ଚାଷଜମି, ତଥା ଆମ ଘର ଚଳେଇବା କଥା ସବୁ ସେଇ ଦାଦା ବୁଝୁଥାନ୍ତି । ଦରମା ପାଇବା ପରେ ପ୍ରତିମାସରେ ମୁଁ ତାଙ୍କୁ କିଛି କିଛି ଟଙ୍କା ଦିଏ । ସବୁ କାମ ଭଲରେ ଚାଲିଥାଏ ।

ଏଠାରେ ଆମ ଗାଁର ଅବସ୍ଥିତି, ପରିବେଶ ତଥା ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟରେ କିଛି ଲେଖିବି । ସାଲେପୁର ବଜାରଠୁ ଆମ ଗାଁ ଯେତିକି ବାଟ, ଶିଶୁଆ ଡାକବଙ୍ଗଳାଠୁ ମଧ୍ୟ ସେତିକି ବାଟ । ଦୂରତ୍ୱ ପ୍ରାୟ ତିନି କିଲୋମିଟର ହେବ । ଶିଶୁଆରୁ ଆସିଲେ ନାଳବନ୍ଧ ଦେଇ ଆସିବାକୁ ହୁଏ । ସାଲେପୁରରୁ ଆସିଲେ କଚ୍ଚା ରାସ୍ତାରେ ଆସିବାକୁ ପଡ଼େ । ଦେଶ ସ୍ୱାଧୀନ ହେଲା ପରେ ରାସ୍ତା ଘାଟର ପ୍ରଭୂତ ଉନ୍ନତି ଅବଶ୍ୟ ସାଧିତ ହୋଇଛି, ମାତ୍ର ମୁଁ ଯେଉଁ ସମୟର କଥା କହୁଛି, ସେତେବେଳେ ଯାତାୟାତରେ ବହୁ ଅସୁବିଧା ଥିଲା ।

ବ୍ରାହ୍ମଣ, କରଣ, ଖଣ୍ଡାୟତଠୁଁ ଆରମ୍ଭ କରି ହରିଜନ ପର୍ଯ୍ୟନ୍ତ ଛତିଶ ପାଟକ ଆମ ଗାଁରେ ମିଳାମିଶି ଚଳନ୍ତି । ଚାଷଜମି ସବୁ ଉର୍ବର, ଜଳସେଚିତ । ବର୍ଷରେ ଦୁଇ ତିନିଟି ଫସଲ ଅମଦାନି ହୁଏ । ଲୋକେ ଏକପ୍ରକାର ଭଲରେ ଚଳନ୍ତି । ପରସ୍ପର ପ୍ରତି ସ୍ନେହ, ମମତା ଥାଏ । ବାତାବରଣ ମୋଟାମୋଟି ସୌହାର୍ଦ୍ଦ୍ୟପୂର୍ଣ୍ଣ ! ଟିଏ ତେଜରତି ଦୋକାନ । ପ୍ରାଇମେରୀ ସ୍କୁଲ ଏବଂ ମାଇନର୍ ସ୍କୁଲ ଥିଲା, ଏବେ ଅନେକ ବର୍ଷ ତଳୁ ହାଇସ୍କୁଲ ହେଲାଣି । ସେତେବେଳେ ୟୁନିୟନ୍ ପ୍ରେସିଡେଣ୍ଟ୍, ଦଫାଦାର୍ ଓ ଚୌକିଦାର୍ ପ୍ରଭୃତି ଗ୍ରାମର ଭଲମନ୍ଦ ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଥିଲେ । ଏବେ ଗ୍ରାମ-ପଞ୍ଚାୟତ ହେଉଛି ମୁଖ୍ୟ । ଗାଁ ପାଖାପାଖି ହାଟ, ବଜାର, ଦୋକାନ ସବୁ ଏବକୁ ହେଲାଣି ।

ଗାଁ ଭିତରେ ଆମ ଘର "ଶାନ୍ତି କୁଟୀର" ଠିକ୍ ଗୋଟିଏ ଆଶ୍ରମ ପରି । ଘର ଚାରିପାଖେ ନଡ଼ିଆ ଓ ଆମ୍ବ ଗଛ, ଟିକିଏ ଦୂରକୁ ବାଉଁଶ ବୁଦା । ଘର ସାମ୍ନା ପଟେ ନାଳଟିଏ (ବର୍ଷରେ ଛ'ମାସରୁ ଅଧିକ ନାଳରେ ଭର୍ତ୍ତି ପାଣି), ବନ୍ଧ ଆର ପଟେ ଗୁଣ୍ଡିପୁର ସ୍କୁଲ, ପଛପଟେ ଅନାବନା ବାଡ଼ି । କିଆଗଛ, ବେତ, କାନଭୋଜ, କୋଇଲଖିଆ କଣ୍ଟା ଓ ନାନା ଅନାବନା ଗଛଲତାରେ ଭରପୂର । ବାଡ଼ିକୁ ଲାଗି ଗୋଟେ ପୋଖରୀଟିଏ । ଦାଦା ପ୍ରାୟ ପ୍ରତିଦିନ ସେଇ ପୋଖରୀ ବା ନାଳରୁ ଜାଲ ପକାଇ ମାଛ ଧରନ୍ତି । ଘରେ ତରକାରୀ ହୁଏ । ଘର ଆଗ ବାଡ଼ିରେ ସାରୁ, କଖାରୁ, ବାଇଗଣ, ମୂଳା ପ୍ରଭୃତି ଲଗା ଯାଇଥାଏ । ଶାଗ ପଟାଳ ମଧ୍ୟ ଥାଏ । ଘରେ ବଡ଼ି ତିଆରି ହୁଏ । ମୋଟଉପରେ ଆଳୁକୁ ଛାଡ଼ିଦେଲେ ଅନ୍ୟ ପରିବା ପ୍ରାୟ ହାଟ ବଜାରରୁ କିଣାଯାଏ ନାହିଁ । ଗୋଟାଏ ଗୋଟାଏ ବର୍ଷ ଆଳୁ ଫସଲ ମଧ୍ୟ ଦାଦା କରନ୍ତି । ସହର ଅପେକ୍ଷା ଗ୍ରାମମାନଙ୍କରେ ଖାଇବା ପିଇବା ଭାରି ସୁବିଧା । ପାଖରେ ପଇସା ନ ଥିଲେ ବି ଆରାମ୍‌ରେ ଚଳିଯାଇ ହେବ ।

ଛୁଟିଦିନ ମାନଙ୍କରେ ମୁଁ କଟକରୁ ଯାଇ ଗାଁରେ ରହେ । ବିଶେଷତଃ ଶନିବାର ଦିନ ଅଫିସ୍ କାମ ସାରି ସାଇକେଲ୍‌ରେ ଯାଏ, ସୋମବାର ସକାଳୁ ଗାଁରୁ ଆସି ଅଫିସ୍ କରେ । ଏଇ ଛୁଟିଦିନମାନଙ୍କରେ ଗାଁର ସାଙ୍ଗ ବନ୍ଧୁ ସ୍ୱଜନଙ୍କୁ ନେଇ ନାଟକର ରିହର୍ସେଲ ହୁଏ । "ଗ୍ରାମ୍ୟ ଡ୍ରାମାଟିକ୍ କ୍ଲବ"ର ନାଟକ-ଅବଦାନ ସଂପର୍କରେ ମୁଁ ପୂର୍ବରୁ ସୂଚନା ଦେଇଛି । ଏବେ ଶନିବାର ଛୁଟିରେ ଆସି ଶୁଣିବାକୁ ପାଇଲି, ଘରେ ସମସ୍ତେ (ବିଶେଷତଃ ବୋଉ) ମୋ ବାହାଘର କରିବା ପାଇଁ ବ୍ୟସ୍ତ ହୋଇଉଠିଛନ୍ତି । କନ୍ୟା ଖୋଜା ଚାଲିଛି !

ଏଇଠୁ ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ସାଲେପୁର ଥାନା ଅନ୍ତର୍ଗତ ପଦ୍ମପୁର ଗ୍ରାମ ନିବାସୀ ୰ ଯଦୁମଣି ମହାନ୍ତିଙ୍କ ଦ୍ୱିତୀୟା କନ୍ୟା ଉର୍ମିଳାଙ୍କ ସହିତ ମୋର ଶୁଭବିବାହ ଅନୁଷ୍ଠିତ ହେଲା । ବିବାହର ଚାରିବର୍ଷ ବିତିଗଲା ପରେ ଆମର କୌଣସି ସନ୍ତାନ ସନ୍ତତି ନ ହେବାରୁ ବୋଉ ଉର୍ମିଳାଙ୍କୁ ଚିକିତ୍ସା ପାଇଁ କଟକ ନେଇଆସିବାକୁ ମତେ ଉପଦେଶ ଦେଲା । ତା'ର କଥାମାନି ମୁଁ ତାଙ୍କୁ କଟକ ନେଇଆସିଲି ଓ ଶେଖ୍‌ବଜାର ବସାଘର ଛାଡ଼ି ବକ୍ସିବଜାର ବେପାରୀସାହିରେ ଭଡ଼ାଘର ନେଇ ରହିଲି । ସେ ସମୟର ନାମଜାଦା ଲେଡ଼ି ଡାକ୍ତର (ଡାକ୍ତର ଥୋମାସ୍) ଉର୍ମିଳାଙ୍କୁ ପରୀକ୍ଷା କଲେ, ଏବଂ ଔଷଧ ଖାଇବାକୁ ପରାମର୍ଶ ଦେଲେ । ଔଷଧ ଯେ ଏଭଳି କାମ କରିପାରେ, ଏ ଧାରଣା ମୋର ନ ଥିଲା । ଉର୍ମିଳା ସନ୍ତାନ ସମ୍ଭବା ହେଲେ ଏବଂ ଯଥା ସମୟରେ ମୋର ଜ୍ୟେଷ୍ଠ ପୁତ୍ର ପ୍ରଦୀପ୍ତ (ବାବୁଲ) କଟକ ବଡ଼ ଡାକ୍ତରଖାନାରେ ଜନ୍ମଲାଭ କଲା । ପୁଅର ବୟସ



ସହଧର୍ମିଣୀ ଶ୍ରୀମତୀ ସରୋଜିନୀ ପଟ୍ଟନାୟକଙ୍କ ସହିତ ନାଟ୍ୟକାର



ନାଟକ ରଚନା ଅବସ୍ଥାରେ ନାଟ୍ୟକାର ଭଞ୍ଜକିଶୋର



ନାଟ୍ୟକାର ଶ୍ରୀଯୁକ୍ତ କାର୍ତ୍ତିକ ଚନ୍ଦ୍ର ଘୋଷ ଓ ନାଟ୍ୟକାର
୰ ରାମଚନ୍ଦ୍ର ମିଶ୍ରଙ୍କ ସହ



ରାମଚନ୍ଦ୍ର ଭବନରେ ରାଜ୍ୟପାଳ ଶ୍ରୀଯୁକ୍ତ ସତ୍ୟନାରାୟଣ ରେଡ୍ଡୀଙ୍କ
ଦ୍ୱାରା ରାମଚନ୍ଦ୍ର ନାଟକ ସମ୍ମାନ ପ୍ରଦାନ । (ତା ୨୫ । ୩ । ୧୯୮୦)



କବିଚନ୍ଦ୍ର-ସ୍ମୃତି ପୁରସ୍କାର ଦେଉଛନ୍ତି
ମନ୍ତ୍ରୀ ଶ୍ରୀଯୁକ୍ତ ସରଳ କିଶୋର ପଟ୍ଟନାୟକ



ନୂଆଦିଲ୍ଲୀର ପ୍ରଗତି ମଇଦାନ ଠାରେ ବୈଦେଶିକମନ୍ତ୍ରୀ ଶ୍ରୀ ପି. ଭି. ନରସିଂହ ରାଓଙ୍କ ଦ୍ୱାରା 'କୋଣାର୍କ' ନାଟିକା ଲାଗି
ଜାଶତ୍ୱ ପୁରସ୍କାର ପ୍ରଦାନ । ( ତା ୨୫ । ୨ । ୧୯୮୪ )

ଯେତେବେଳେ ମାତ୍ର ଚାରି ମାସ, (ମା ଓ ପୁଅ ସେତେବେଳେ ଗାଁ'ରେ ରହୁଥିଲେ) ହଠାତ୍ ନିମୋନିଆରେ ଊର୍ମିଳାଙ୍କର ମୃତ୍ୟୁ ହେଲା । ଟେଲିଗ୍ରାମ୍ ପାଇ ମୁଁ ଗାଁରେ ଯାଇ ପହଞ୍ଚିଲା ବେଳକୁ ସ୍ଥାନୀୟ ଡାକ୍ତରମାନଙ୍କର ସକଳ ଚେଷ୍ଟା ବିଫଳ ହୋଇ ଜୀବନ-ଦୀପ ଲିଭି ଲିଭି ଆସିଲାଣି ! କଟକ ଡାକ୍ତରଖାନା ଆଣିବା ପ୍ରସ୍ତାବ କାର୍ଯ୍ୟକାରୀ ହେବା ଆଗରୁ କୁନି ପୁଅଟିକୁ ଶୋକସନ୍ତପ୍ତ ପରିବାର ଜିମା ଛାଡ଼ିଦେଇ ଊର୍ମିଳା ଚାଲିଗଲେ ସଂସାରର ପରପାରକୁ ! ସ୍ମୃତି ଚିହ୍ନ କେବଳ ରହିଗଲା ! "ରାମ ନାମ ସତ୍ୟ ହେ"……

ମୋର 'ଜୟମାଲ୍ୟ' ନାଟକକୁ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ ଓ ମାଷ୍ଟର ରାମଚନ୍ଦ୍ର ମାଣିଆ ପ୍ରମୁଖ ବନ୍ଧୁଗଣ ମିଳନାନ୍ତ କରିବାକୁ ପରାମର୍ଶ ଦେଇଥିଲେ । ମାତ୍ର ମୁଁ ମୋ ଦୃଷ୍ଟିକୋଣରୁ ଏହାକୁ ବିୟୋଗାନ୍ତ କରିବାକୁ ମନସ୍ଥ କଲି । ତାହା ହିଁ ହେଲା । ନାଟକର ନାୟକ 'ବ୍ରଜ'ର ପତ୍ନୀ 'ଶିପ୍ରା' ଶେଷରେ ମୃତ୍ୟୁ ମୁଖରେ ପତିତ ହୋଇଛି ଏବଂ ବିଦଗ୍ଧ ପାଠକମାନେ 'ଜୟମାଲ୍ୟ' ଧରି ବ୍ରଜକୁ ଅଭିନନ୍ଦନ ଜଣାଇବାକୁ ଆସି ଏ ଦୃଶ୍ୟ ଦେଖି ମର୍ମାହତ ହୋଇ ପଡ଼ିଛନ୍ତି । ନଇଁ ଆସିଛି ନାଟକର ଯବନିକା ବିଷାଦ ରାଗିଣୀର ମୂର୍ଚ୍ଛନା ସହିତ । ନାଟକକୁ ବିୟୋଗାନ୍ତ କରିବା ଲାଗି ଈଶ୍ୱରଙ୍କ ନିର୍ଦ୍ଦେଶ ବୋଧହୁଏ ପୂର୍ବରୁ ମୋତେ ମିଳିଥିଲା; କାରଣ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ରେ 'ଜୟମାଲ୍ୟ' ନାଟକ ଅଭିନୀତ ହେବାର ଦଶ, ବାରଦିନ ପରେ ଊର୍ମିଳାଙ୍କ ମୃତ୍ୟୁ ହୋଇଥିଲା । ଏହା ମୋ ଜୀବନର ଏକ ଅଦ୍ଭୁତ ବିଡ଼ମ୍ବନା, ଏବଂ ଏହା ହିଁ ମୋ ମନରେ ଈଶ୍ୱର ବିଶ୍ୱାସକୁ ଦୃଢ଼ୀଭୂତ କରିଥିଲା ।

ବିବାହ ଆଉ ବିଚ୍ଛେଦ ମଧ୍ୟରେ ତଫାତ୍ ମାତ୍ର ପାଞ୍ଚ ବର୍ଷ । ଏହି ପାଞ୍ଚ ବର୍ଷ ଭିତରେ ମୋ ଜୀବନ-ନାଟକର ବହୁ ପୃଷ୍ଠା ଓଲଟିଗଲା । ଊର୍ମିଳାଙ୍କ ମୃତ୍ୟୁ ପରେ ଚାରି, ପାଞ୍ଚ ମାସର ଶିଶୁପୁଅଟିକୁ ଚଳାଇବା ବୋଉ ପକ୍ଷରେ ଦିନକୁ ଦିନ ଦୁର୍ବହ ହୋଇ ଉଠିଲା । ଅସ୍ତବ୍ୟସ୍ତ ହୋଇ ଘରକୁ ଆଉ ଗୋଟିଏ ବୋହୂ ଆଣିବା ଲାଗି ସେ ଦାଦାଙ୍କ ସହିତ ବିଚାର କଲା । ଦିନେ ବୋଉ ମତେ କହିଲା, "ଏ ପିଲାକୁ ମୁଁ ଆଉ ଚଳେଇ ପାରିବି ନାହିଁ । ତୋ ପୁଅ ବ୍ୟବସ୍ଥା ତୁ ଏଥର କର । ଏ ସବୁ ଧନ୍ଦା କରିବାକୁ ମୋର ଆଉ କଣ ବଳ ବୟସ ଅଛି ? ଧୈର୍ଯ୍ୟ ବି ନାହିଁ ।" ବୋଉର ଇଂଗିତ ମୁଁ ଠିକ୍ ବୁଝି ପାରିଲି । ମନେ ପଡ଼ିଗଲା ମୁଁ ଶୁଣିଥିବା ମୋ ନିଜ ପିଲାଦିନ କଥା । ସଂସାରର ଗତି ବାସ୍ତବିକ୍ "ଅତୀବ ବିଚିତ୍ରମ୍" । କପାଳ-ଲିଖନ କେବେହେଲେ 'ଆନ' କରିହେବ ନାହିଁ । ଅସମ୍ଭବ । "Man proposes, God disposes"—ଏହା ହିଁ ଏକ ଚିରନ୍ତନ ସତ୍ୟ ।

ଆସ ଗ୍ରାମଠାରୁ ପ୍ରାୟ ଆଠ, ଦଶ କିଲୋମିଟର୍ ଦକ୍ଷିଣକୁ କେନ୍ଦ୍ରାପଡ଼ା କେନାଲ୍ କୂଳରେ "ଆଡୋଡ଼ା" ଗ୍ରାମ ଅବସ୍ଥିତ । ଆଡୋଡ଼ାର ଉତ୍ତରରେ ସେ କେନାଲ୍ ଓ ଦକ୍ଷିଣରେ ଚନ୍ଦ୍ରଭାଗା ନଦୀ । ଉକ୍ତ ଗ୍ରାମର ସ୍ୱର୍ଗତଃ ନଟବର ମହାନ୍ତି ଥିଲେ ଫରେଷ୍ଟ୍ ରେଞ୍ଜର, ତାଙ୍କ ସବା ସାନ ଭାଇ ଶ୍ରୀଯୁକ୍ତ ଅଲେଖ ଚନ୍ଦ୍ର ମହାନ୍ତି ଥିଲେ ଓଭରସିଅର (ଏବେ ସେ ସରକାରୀ ଦାୟିତ୍ୱରୁ ଅବ୍ୟାହତି ନେଇ କଟକର ଉପର ତେଲେଙ୍ଗା ବଜାରରେ ବାସ କରୁଛନ୍ତି) ଓ ଅନ୍ୟ ତିନି ଭାଇ ପରଲୋକ ଗମନ କରିଥିଲେ । ସ୍ୱର୍ଗତଃ ନଟବର ମହାନ୍ତିଙ୍କର କେବଳ ତିନୋଟି ଝିଅ, ଅନ୍ନପୂର୍ଣ୍ଣା, ସରୋଜିନୀ ଓ ଜ୍ୟୋତ୍ସ୍ନାରାଣୀ । ଦୁର୍ଭାଗ୍ୟବଶତଃ ସେ ରେଞ୍ଜର୍ ଥିବା ସମୟରେ ଛେଣ୍ଡିପଦା (ଅନୁଗୋଳ) ଠାରେ ଘୋଡ଼ାରୁ ପଡ଼ିଯାଇ ପ୍ରାଣ ହରାଇଥିଲେ । ଅଗତ୍ୟା ତାଙ୍କ ଧର୍ମପତ୍ନୀ ସ୍ୱର୍ଗତଃ ହରାମଣି ଅପ୍ରାପ୍ତବୟସ୍କା ତିନୋଟି କନ୍ୟାଙ୍କୁ ଧରି ଚାଲି ଆସିଥିଲେ ଆଡୋଡ଼ା । କାଳକ୍ରମେ ତାଙ୍କ ବଡ଼ ଝିଅ ଅନ୍ନପୂର୍ଣ୍ଣା ବିବାହ କଲେ କଟକ ବସ୍ତାଲିଣ ମୌଜା ନିବାସୀ ସ୍ୱର୍ଗତଃ ରାଜକିଶୋର ମହାନ୍ତିଙ୍କ ଜ୍ୟେଷ୍ଠ ପୁତ୍ର ଗଗନ ବିହାରୀଙ୍କୁ । ଗଗନବାବୁ ସରକାରୀ ଚାକିରୀ ଛାଡ଼ି ବାଙ୍କାବଜାରରେ 'University Book Publication' ନାମକ ଏକ ପୁସ୍ତକ ପ୍ରକାଶନ ଓ ବିକ୍ରୟ ସଂସ୍ଥା ଗଢ଼ିଥିଲେ । ସେ ହିଁ ମୋର 'ପହିଲି ରଜ' ନାଟକର ଏକ ନୂତନ ସଂସ୍କରଣ ଏବଂ 'ଜନ୍ମମାଟି' ନାଟକର ପ୍ରଥମ ସଂସ୍କରଣରେ ପ୍ରକାଶନ କରିଥିଲେ । ମାତ୍ର ଅଳ୍ପଦିନ ପରେ ସେ ପ୍ରକାଶନ ସଂସ୍ଥାକୁ ଭାଙ୍ଗି ଦେଇ ତାଙ୍କ ଗ୍ରାମ ବେଣ୍ଟକାରକୁ ଫେରିଗଲେ ଓ ସେଠାରେ ଆରମ୍ଭ କଲେ ତାଙ୍କର ରାଜନୈତିକ ଜୀବନ । ନିସ୍ୱାର୍ଥପର ଭାବେ ଲୋକସେବା କରିବାର ଅଭିମୁଖ୍ୟ ନେଇ ସେ ଗ୍ରାମର ସରପଞ୍ଚ ହେଲେ ଏବଂ ଶେଷପର୍ଯ୍ୟନ୍ତ ଆପଣାର ହିତ ଲାଗି କିଞ୍ଚିତ ମାତ୍ର ଦୃଷ୍ଟି ନ ଦେଇ ପଞ୍ଚାୟତର ବିବିଧ ଉନ୍ନତି ପାଇଁ ଲାଗିପଡ଼ିଲେ । ତାଙ୍କ ମୃତ୍ୟୁ ପରେ କୃତଜ୍ଞ ଗ୍ରାମବାସୀମାନେ ତାଙ୍କର ଏକ ପ୍ରତିମୂର୍ତ୍ତି ଗ୍ରାମର ପ୍ରବେଶ ପଥରେ ସ୍ଥାପନ କରି ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଅଛନ୍ତି ।

ଉକ୍ତ ସ୍ୱର୍ଗତଃ ଗଗନ ବିହାରୀ ମହାନ୍ତି ହେଉଛନ୍ତି ମୋର ବଡ଼ ସାଢ଼ୁ ! ୧୯୫୬ ମସିହା ଡିସେମ୍ବର ମାସରେ ନଟବର ମହାନ୍ତିଙ୍କ ଦ୍ୱିତୀୟା କନ୍ୟା କୁମାରୀ ସରୋଜିନୀଙ୍କ ସହିତ ମୋର ଶୁଭ ପରିଣୟ ଅନୁଷ୍ଠିତ ହୋଇଥିଲା । ସେତେବେଳେ ମୋର ବୟସ ୨୯ ବର୍ଷ । ସବାହରୁ ଓହ୍ଲାଇ ସରୋଜିନୀ ଘରକୁ ଆସିଲେ । ବନ୍ଦାପନା ପ୍ରଭୃତି କାର୍ଯ୍ୟ ଶେଷ ହେଲା । ଏତିକିବେଳେ ନଅ ମାସର ପୁଅ ବାବୁଲିକୁ ସରୋଜିନୀଙ୍କ କୋଳରେ ରଖି ବୋଉ କହିଲା, "ନେ ଲେ ମା, ତୁ ଏଥର ତୋ ପୁଅକୁ ସମ୍ଭାଳ । ମୋର ଏଥର ଛୁଟି !" ବୋଉ ମୁହଁରେ ତୃପ୍ତିର

ହସ । ଛୁଟି କେବଳ ବୋଉର ନୁହେଁ, ମୋତେ ବି ଛୁଟି ମିଳିଗଲା । ପିଲାଟା ପାଇଁ ବୋଉ କିଛୁ କମ୍ ଘାଣ୍ଟି ହୋଇନାହିଁ, ସେଇସବୁ ଭାବି ମୁଁ ବାସ୍ତବିକ୍ ଚିନ୍ତିତ ଥିଲି ! ସପ୍ତାହରେ ଦୁଇ ତିନିଥର କଷ୍ଟକରି ମୋତେ ଗାଁକୁ ଦୌଡ଼ିବାକୁ ପଡୁଥିଲା, ଆଜି ଔଷଧ, କାଲି ଗ୍ରାଇପ୍‌ଓ୍ୱାଟର୍ ଆଉ ହର୍‌ଲିକ୍‌ସ, ଇତ୍ୟାଦି ଅନେକ ଚିନ୍ତା । ବର୍ତ୍ତମାନ ଏକପ୍ରକାର ନିଶ୍ଚିନ୍ତ !

କିନ୍ତୁ ଅନ୍ୟ ଏକ ସମସ୍ୟା ଜୀବନର ଚଲାପଥରେ ଉଙ୍କି ମାରିଲା । ଆମ ଗାଁ'ର କେତେକ ପୁରୁଖାଲୋକ (ସ୍ତ୍ରୀ ଓ ପୁରୁଷ), ତଥା ବନ୍ଧୁବାନ୍ଧବଙ୍କ ଫୁସୁରୁ ଫାସର କଥା ମୋ କାନରେ ବାଜିଲା । କିଏ କହୁଥାଏ, "ବୁଢ଼ୀ ପିନା ନାତିର ସବୁ କଥା କରୁଥିଲା; ଏ ବୋହୂ କ'ଣ କରୁଛି ଦେଖ ।" ଆଉ କେହି କେହି ଟିପ୍‌ପଣୀ କାଟିଲେ, "ହଃ, ସାବତ ମା ଯଦି ନିଜ ମା'ପରି କରନ୍ତା, 'ସାବତ ମା' ବୋଲି କଥାଟା କାହିଁକି ରହନ୍ତା ?" ଆଉ କେହି କେହି ଭବିଷ୍ୟତ୍-ଦର୍ଶୀ ମନ୍ତବ୍ୟ ଦେଲେ, "ଏବେ ଅବଶ୍ୟ ଚିନ୍ତାର କାରଣ କିଛି ନାହିଁ, କିନ୍ତୁ ତାର ନିଜର ପିଲାଛୁଆ ହେଲେ ପ୍ରକୃତ ଅଘଟଣ ହିଁ ଘଟିବ, ଏଥିରେ ଆଉ ସନ୍ଦେହ ନାହିଁ !"

'ପୃଥିବୀରେ ସବୁ ସାବତ ମା' କଣ ଖରାପ ? ଅମଣିଷ, ହୃଦୟହୀନ ? ଆପଣାର ସ୍ୱାମୀ, ପୁତ୍ର, ଘର-ସଂସାର, ମାୟା-ମମତା, ଆଶା-ଆକାଂକ୍ଷା ସବୁ ଧୂଳିସାତ୍ କରି ସୁନାଘରକୁ ଚୂନା କରିବା କ'ଣ ସାବତମା'ମାନଙ୍କର ପରଂପରା— ?' ଏହିଭଳି ଭଳିକି ଭଳି ପ୍ରଶ୍ନ ଯେ ମୋ ମନ ଭିତରେ ଠିକ୍ ଉତ୍ତର ଖୋଜି ନାହିଁ, ତା'ନୁହେଁ । ମୁଁ ବି ଦ୍ୱନ୍ଦ୍ୱ ଭିତରେ ପଡ଼ି ଛଟପଟ ହୋଇଛି । କିନ୍ତୁ ସମସ୍ତଙ୍କୁ ଅବାକ୍ କରିଦେଇ, ନିନ୍ଦୁକଙ୍କ ମୁହଁ ଚିରଦିନ ଲାଗି ବନ୍ଦ କରିଦେଇ, ସରୋଜିନୀ ମାତୃତ୍ୱର ଯେଉଁ ଅଭିନବ ପରାକାଷ୍ଠା ଦେଖାଇଛନ୍ତି, ତାହା ସମସ୍ତ ଜଟିଳ ସମସ୍ୟାର ସହଜ ସମାଧାନ କରିବା ସହିତ ମୋ ଜୀବନକୁ ଏକ ଆନନ୍ଦ-ମଧୁର-ସରଳ ପଥରେ ଆଗେଇ ନେବାରେ ସଂପୂର୍ଣ୍ଣ ସମର୍ଥ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ !

## —ସାତ—

ହାଇସ୍କୁଲରେ ପାଠ ପଢ଼ିଲାବେଳେ ମନେ ମନେ ସ୍ଥିର କରିଥିଲି ମ୍ୟାଟ୍ରିକ୍ ପାଶ୍ ପରେ ଅଇ. ଏ., ବି. ଏ., ଏମ୍. ଏ. ପଢ଼ିବି, ୟୁନିଭରସିଟିର ଅଧ୍ୟାପକ ହେବି, ପିଲାଙ୍କୁ ପାଠ ପଢ଼ାଇବା ସହିତ ସେମାନଙ୍କୁ ଭଲ ମଣିଷ କରି ଗଢ଼ିବାର ମହାନ୍ ଦାୟିତ୍ୱ ବହନ କରିବି ! ଉଚ୍ଚାଭିଳାଷ ବା ambition ସମସ୍ତଙ୍କର ଥାଏ, ମୋର ମଧ୍ୟ ଥିଲା । କିନ୍ତୁ···ଆଶା ମୋର ଆଶାରେ ହିଁ ରହିଗଲା । କରାଣି ହେବାକୁ ବାଧ୍ୟ ହେଲି । ବାପା ତ ମୋତେ ଆଉ ପଢ଼ାଇପାରିଲେ ନାହିଁ; ବରଂ ଶେଷକୁ ଆମ ପରିବାରକୁ ଅଧା-ନଈରେ ଭସାଇ ଚିର-ବିଦାୟ ନେଇଗଲେ ।

ଇଂରାଜୀରେ ଗୋଟିଏ ପ୍ରବାଦ ଅଛି, "Where there is a will, there is a way." ମନ ଭିତରେ ଯେଉଁ ସତ୍‌ଚିନ୍ତା ବାରମ୍ବାର ଗୁଂଜରଣ ସୃଷ୍ଟି କରୁଥାଏ; ଈଶ୍ୱରଙ୍କ ନିର୍ଦ୍ଦେଶରେ କାଳକ୍ରମେ ତାହା କାର୍ଯ୍ୟରେ ପରିଣତ ହୁଏ ! ତାହାହିଁ ଅତି ଅଭୂତପୂର୍ବ ମୋ ଜୀବନରେ ପ୍ରତିଭାତ ହୋଇଥିଲା, ପ୍ରକଟିତ ହୋଇଥିଲା ! କଟକ ଖ୍ରୀଷ୍ଟ କଲେଜ୍ ( ୧୯୪୪ ମସିହାରେ ସ୍ଥାପିତ)ରେ ସକାଳୁ I. A., B. A. Class ହେଉଥିବାର ଖବର ପାଇବାପରେ ମୁଁ ସେଠାରେ ନାମ ଲେଖାଇବାକୁ ମନେ ମନେ ସ୍ଥିର କଲି । ସଂଯୋଜନାଙ୍କୁ ବନ୍ଦୋବସ୍ତ କରିବାର ଛଅ, ସାତ ମାସ ପରେ I. A.ରେ ପ୍ରଥମ ବର୍ଷ ଛାତ୍ର ଭାବେ ନାମ ଲେଖାଇଲି । କଲେକ୍ଟୋରେଟରେ କାର୍ଯ୍ୟ କରିବା ସହିତ ମୋ କଲେଜ ଜୀବନ ଆରମ୍ଭ ହେଲା ବାଧାବନ୍ଧ ଭାବରେ, ନିୟମିତ ଭାବରେ । ମୋ ଜୀବନ-ପୂର୍ବାହ୍ନରେ ସଫଳତାର ଯେଉଁ ନୂତନ ଦିଗନ୍ତ ସୃଷ୍ଟି ହେଲା, ତା'ର ସାମାନ୍ୟ-କଥନ ନିମ୍ନରେ ପ୍ରଦତ୍ତ ହେଉଛି ।

ଆଜି ଜୀବନ-ସଂଧ୍ୟାରେ ପଛକୁ ଫେରି ଚାହିଁଲେ ଯୌବନର ସେହି କର୍ମ-ଚଞ୍ଚଳ ବର୍ଷ ଗୁଡ଼ିକର ପ୍ରତିଛବି ଆଖି ଆଗରେ ଭାସି ଉଠୁଛି । ନିରୋଗ ଶରୀରରେ ସେତେବେଳେ ଭଗବାନ ଏପରି ଶକ୍ତି ଦେଇଥିଲେ, ମନ ଭିତରେ ଏପରି ଉତ୍ସାହ ଭରି ଦେଇଥିଲେ ଯେ, ସବ୍ୟସାଚୀ ଭଳି ଏକାବେଳେକେ ଚାରୋଟି କର୍ମ, କୁଶଳତାର ସହ ସମ୍ପାଦନ କରିପାରୁଥିଲି ! ପ୍ରଥମଟି ହେଲା ଅନ୍ନସଂସ୍ଥାନ ଲାଗି ସରକାରୀ ଚାକିରୀ, ଦ୍ୱିତୀୟଟି କଲେଜ୍‌ରେ ପାଠପଢ଼ା, ତୃତୀୟଟି ବଡ଼ ରୋଜଗାରିଆ ପୁଅ ହିସାବରେ ଘର ଚଳାଇବା ଏବଂ ଚତୁର୍ଥଟି ହେଲା ସାହିତ୍ୟ ସାଧନା—ନାଟକ, ଏକାଙ୍କିକା, ବେତାର ନାଟିକା, କବିତା ଓ

ଛନ୍ଦଗଳ୍ପ ପ୍ରଭୃତି ରଚନା କରିବା ? ଆଜି ଲାଗୁଛି, ଉଦ୍ୟୋଗୀ ପୁରୁଷଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ବିଧାତାର ଆଶୀର୍ବାଦ ମିଳିଥାଏ ଆଶାନୁରୂପ ଫଳପ୍ରାପ୍ତି ଲାଗି !

ଯାହା, ଦଶବର୍ଷ ବ୍ୟତୀତ କରି କଲେଜ୍‌ରେ ନାଁ ଲେଖାଇବା ଫଳରେ ମୋ କଲେଜ୍ ସାଥୀମାନେ ମୋଠୁଁ ବୟସରେ ସାନ ଥିଲେ । ସେମାନେ ମୋତେ ବଡ଼ ଭାଇ ଭାବରେ ଶ୍ରଦ୍ଧା କରୁଥିଲେ ଓ ଜଣେ ଜଣାଶୁଣା ନାଟ୍ୟକାର ବୋଲି ସମ୍ମାନ ମଧ୍ୟ ଦେଉଥିଲେ । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଓ 'ବି' ଗ୍ରୁପ୍‌ରେ ସେତେବେଳକୁ ମୋର ପ୍ରାୟ ଦଶ, ବାର ଖଣ୍ଡି ନାଟକ ଅତ୍ୟନ୍ତ ସୁନାମର ସହିତ ଅଭିନୀତ ହୋଇସାରିଥାଏ ଏବଂ ହେଉଥାଏ ମଧ୍ୟ । ସେଥିପାଇଁ କଲେଜର ଅଧ୍ୟକ୍ଷ, ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀଗଣ ମୋତେ ଶ୍ରଦ୍ଧା କରୁଥିଲେ । ଦ୍ୱିତୀୟ ବର୍ଷରେ ମୋର ସହାଧ୍ୟାୟୀମାନଙ୍କ ଅନୁରୋଧ ଏଡ଼ି ନ ପାରି ମୁଁ ହେଲି କଲେଜ ଛାତ୍ର ୟୁନିୟନ୍‌ର ନାଟ୍ୟ-ସଂପାଦକ । ତୃତୀୟ ବର୍ଷରେ ଭାଇସ୍ ପ୍ରେସିଡେଣ୍ଟ୍ ଓ ଚତୁର୍ଥ ବର୍ଷରେ ଥିଲି କାମଚଳା ପ୍ରେସିଡେଣ୍ଟ୍ ! ନାଟ୍ୟ-ସଂପାଦକ ଥିବା ବର୍ଷ (୧୯୫୭), ମୋର ବେତାର ନାଟିକା "ଭେଟି"କୁ ନାଟ୍ୟରୂପ ଦେଇ କଲେଜ ଛାତ୍ରମାନଙ୍କ ଦ୍ୱାରା ସେହିଠାରେ ମଞ୍ଚସ୍ଥ କରାଇଥିଲି । ନାଟକର ନିର୍ଦ୍ଦେଶନା ଦେଇଥିଲେ ମୋର ନାଟ୍ୟକାର ବନ୍ଧୁ ଶ୍ରୀଯୁକ୍ତ ସାରଦା ପ୍ରସାଦ ନାୟକ (ଚଳଚ୍ଚିତ୍ର) । ପରେ ତାଙ୍କର ପରାମର୍ଶକ୍ରମେ ଉକ୍ତ "ଭେଟି" ନାଟକର କଳେବର ବୃଦ୍ଧି କରି ଏକ ପୂର୍ଣ୍ଣାଙ୍ଗ ନାଟକ "ପରିଶୋଧ" ପ୍ରକାଶ ପାଇଥିଲା, ଯାହାର ସୂତ୍ର-ଲେଖକ ଥିଲେ ଶ୍ରୀଯୁକ୍ତ ସାରଦା ପ୍ରସନ୍ନ ! ଉକ୍ତ "ପରିଶୋଧ" ନାଟକ ତାଙ୍କରି ନିର୍ଦ୍ଦେଶନାରେ "କଳ୍ପନା କଳା ମନ୍ଦିର" ଅନୁଷ୍ଠାନ ଦ୍ୱାରା ସଫଳତାର ସହ କେତେକ ରାତି କଟକରେ ଅଭିନୀତ ହୋଇଥିଲା । ନାଟକର ନାୟକ ଥିଲେ ଆମ କଲେଜର ଛାତ୍ର ୬ ଯଦୁନାଥ ରାଉତରାୟ, ଓ ନାୟିକା ଭୂମିକାରେ ଅଭିନୟ କରିଥିଲେ କୁମାରୀ ଚପଳା ନାୟକ (ଚଳଚ୍ଚିତ୍ର), ବର୍ତ୍ତମାନର ଶ୍ରୀମତୀ ପାର୍ବତୀ ଘୋଷ ! ବାଲୁବଜାରର "ୟୁନିଭରସିଟି ବୁକ୍ ଷ୍ଟୋର୍ସ" ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ହେବା ପରେ 'ପରିଶୋଧ' ନାଟକ ଓଡ଼ିଶାର ପୁରପଲ୍ଲୀରେ ସଫଳ ମଞ୍ଚସ୍ଥ ହୋଇ ଅଗଣିତ ଦର୍ଶକଙ୍କର ପ୍ରଶଂସାଭାଜନ ହୋଇଥିଲା !

୧୯୫୫ ମସିହାରେ ମୁଁ ଯେତେବେଳେ କଲେଜ୍ ୟୁନିୟନ୍‌ର କାମଚଳା ସଭାପତି ଥିଲି, ସେତିକିବେଳେ ଓଡ଼ିଶାରେ ପ୍ରବଳ ବନ୍ୟା ହୋଇଥିଲା । ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ ଆକାଶ ମାର୍ଗରୁ ବନ୍ୟାଞ୍ଚଳ ପରିଦର୍ଶନ କରି ସାରି କଟକ ଲାଲ୍‌ବାଗରେ ଥିବା ଗଭର୍ଣ୍ଣର୍ ହାଉସ୍ (ବର୍ତ୍ତମାନ "ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ଶିଶୁ ଭବନ")ରେ ଅବସ୍ଥାନ କରୁଥିଲେ । ତାଙ୍କରି ଇଚ୍ଛାନୁସାରେ କଟକରେ ଥିବା ସମସ୍ତ କଲେଜର ୟୁନିୟନ୍

ସଭାପତି ଓ ସାଧାରଣ ସଂପାଦକମାନେ ତାଙ୍କୁ ସାକ୍ଷାତ କରିବାକୁ ଗଭର୍ଣ୍ଣର୍ ହାଉସ୍‌କୁ ଯାଇଥିଲେ । ସେହି ଅନୁସାରେ ରେଭେନ୍‌ସା କଲେଜ, ଶ୍ରୀ ରାମଚନ୍ଦ୍ର ମେଡ଼ିକାଲ୍ କଲେଜ୍, ଖ୍ରୀଷ୍ଟ କଲେଜ ଓ ଶୈଳବାଳା ମହିଳା କଲେଜ୍‌ର ସଭାପତି ଓ ସାଧାରଣ ସଂପାଦକ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଲୁ । ମୋ ସହିତ ଆମ କଲେଜ ୟୁନିଅନ୍‌ର ସାଧାରଣ ସଂପାଦକ ଶ୍ରୀ ବିଭୂତି ପଟ୍ଟନାୟକ (ଓଡ଼ିଶାର ପ୍ରଖ୍ୟାତ କଥାଶିଳ୍ପୀ ଓ ଔପନ୍ୟାସିକ) ମଧ୍ୟ ସେଠାକୁ ଯାଇଥିଲେ । ପଣ୍ଡିତ ନେହେରୁଙ୍କ ସାମ୍ନାରେ ଅର୍ଦ୍ଧବୃତ୍ତାକାରରେ ଆମ୍ଭେମାନେ ଅତି ନିକଟରେ ବସିଥିଲୁ । ସାକ୍ଷାତ୍‌କାରର ସମୟ ନିର୍ଘଣ୍ଟ ଥିଲା କୋଡ଼ିଏ ମିନିଟ୍; ମାତ୍ର ପଣ୍ଡିତ ନେହେରୁ କଥାବାର୍ତ୍ତା କରିବାଲାଗି ବତିଶ୍ ମିନିଟ୍ ସମୟ ନେଇଥିଲେ । ପଣ୍ଡିତଜୀଙ୍କର ଗୋଟିଏ ବିଶେଷ ଗୁଣ ଲକ୍ଷ୍ୟ କରି ମୁଁ ମୁଗ୍ଧ ହୋଇଥିଲି । ତାହା ହେଲା, ଆମ୍ଭେମାନେ ଓଡ଼ିଆ ଇଂରାଜୀ ଓ ହିନ୍ଦି ମିଶାମିଶି କରି କଥା କହୁଥିଲୁ ବେଳେ ପଣ୍ଡିତଜୀ କେବଳ ଖାଣ୍ଟି ହିନ୍ଦିରେ କଥାବାର୍ତ୍ତା କରୁଥିଲେ । ଆମର ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନେ ଓଡ଼ିଆରେ କଥା କଥାକେ ଶୁଦ୍ଧ, ଅଶୁଦ୍ଧ ଇଂରାଜୀ ବ୍ୟବହାର କରୁଥିବା ବେଳେ, ସେ ଗୋଟିଏ ମାତ୍ର ଇଂରାଜୀ ଶବ୍ଦ ବ୍ୟବହାର କରି ନ ଥିଲେ । ଏହାହିଁ ବାସ୍ତବିକ୍ ମହାମାନବମାନଙ୍କର ଲକ୍ଷଣ, ଏବଂ ଏକାନ୍ତ ଭାବେ ଅନୁକରଣୀୟ !

ସେହି ଦିବସଟି ଥିଲା ମୋ ଜୀବନର ଏକ ବିଶେଷ ସ୍ମରଣୀୟ ଦିବସ !

ଅନ୍ୟ ଏକ ସ୍ମରଣୀୟ ଘଟଣା ହେଉଛି ଋଷ୍ ଆକାଶଚାରିଣୀ ଭେଲେଣ୍ଟିନା ତେରେସ୍କୋଭାଙ୍କ ଆମ କଲେଜ୍‌କୁ ଆଗମନ । ଆମ ନିମନ୍ତ୍ରଣ ରକ୍ଷା କରି ସେ ତାଙ୍କର ଦୁଇଜଣ ସାଥୀଙ୍କୁ ଧରି ଆସିଲେ ଓ ଆମେ ସେମାନଙ୍କୁ କଲେଜ୍ ମାଳଞ୍ଚରେ ସମ୍ବର୍ଦ୍ଧିତ କରିଥିଲୁ । କେଉଁ କାରଣରୁ ସେ ଓଡ଼ିଶାକୁ ଆସି କଟକରେ ପହଞ୍ଚିଥିଲେ, ତାହା ମୋତେ ଜଣା ନାହିଁ !

୧୯୬୪ ମସିହାର ଏକ ସାର୍ଥକ ସନ୍ଧ୍ୟା ବିଷୟରେ କିଛି ଲେଖୁଛି । ମୋର ସାମାଜିକ ନାଟକ "ଅତିଥି"ର ଶୁଭ-ଉଦ୍‌ଘାଟନ ହୋଇଥିଲା ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପ୍ ରଙ୍ଗମଞ୍ଚରେ । ଏହି ହାସ୍ୟରସ ଭରା, କାରୁଣ୍ୟରେ ରସାଣିତ, ଉତ୍କଣ୍ଠା, ଦ୍ୱନ୍ଦ୍ୱ ଓ ସଂଘର୍ଷରେ ଜର୍ଜରିତ ସଫଳ ଦୃଶ୍ୟକାବ୍ୟ ମାସ ମାସ ଧରି କ୍ରମାଗତ ଭାବେ ଅଭିନୀତ ହୋଇ 'ବି' ଗ୍ରୁପ୍‌ର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ସହିତ ହଜାର ହଜାର କଳାପ୍ରେମୀ, ସାହିତ୍ୟାନୁରାଗୀ, ବିଦଗ୍ଧ ଦର୍ଶକଙ୍କୁ ଉଲ୍ଲସିତ ଓ ଆମୋଦିତ କରିବା ସଂଗେ ସଂଗେ ଏହି ନାଟ୍ୟକାରକୁ ଯଥେଷ୍ଟ ଖ୍ୟାତି, ଜନପ୍ରିୟତା, ସମ୍ମାନ ତଥା ପ୍ରତିଷ୍ଠା ଆଣି ଦେଇଥିଲା । ଉକ୍ତ ଆରମ୍ଭ-ରଜନୀର ଇତିହାସ ଆଜି ମୋତେ କାହାଣୀ ପରି ଲାଗୁଛି ! ସେହିଦିନ ପୂର୍ବାହ୍ନରେ କଲେଜ ଯାଇ ମୁଁ ଆମ

ପ୍ରିନ୍‌ସିପାଲ୍ ଓ ରେଭେରେଣ୍ଡ ବ୍ରଜାନନ୍ଦ ମହାନ୍ତିଙ୍କୁ ସାକ୍ଷାତ କଲି । ସେ ମୋତେ ସାକ୍ଷାତର ଉଦ୍ଦେଶ୍ୟ କ'ଣ ପଚାରିବାରୁ ମୁଁ କହିଲି, "ସାର୍, ଆଜି ସନ୍ଧ୍ୟାରେ ମୋର ଗୋଟିଏ ସାମାଜିକ ନାଟକ ଅନ୍ନପୂର୍ଣ୍ଣା ରଂଗମଞ୍ଚରେ ଅଭିନୀତ ହେବ ।" ମୁହଁରୁ କଥା ଛଡ଼ାଇ ନେଇ ସାର୍ ଖୁସିହୋଇ କହିଲେ, "ବାଃ, ମୁଁ ବହୁତ ଖୁସି । ନାଟକର ନାମ କଅଣ ? 'ଭେଟି' ?"

"ନା, Sir, ଅତିଥି !"

"Very Good. I wish you good luck."

"Thank you, Sir ! ମୁଁ ଆପଣଙ୍କୁ ଆମନ୍ତ୍ରଣ କରିବାକୁ ଆସିଛି । ମିସେସ୍ ମହାନ୍ତି ଓ ପିଲାମାନଙ୍କୁ ନେଇ ଆପଣ ଅବଶ୍ୟ ଯିବେ । ଆପଣ ହେବେ ଉଦ୍‌ଘାଟକ ଓ ମୁଖ୍ୟ ଅତିଥି ।"

"କଅଣ କହୁଛ ଭକ୍ତକିଶୋର ! ତୁମ 'ଅତିଥି' ନାଟକର ମୁଖ୍ୟ ଅତିଥି ! ବାଃ ! କିନ୍ତୁ ତୁମେ ତ ଜାଣ youngman ! I am a stunch christian, ମୁଁ ଏସବୁ ଗୀତ, ନାଚ, ସିନେମା, ଥିଏଟର ..."

"ସାର୍, ଆପଣ ଓଡ଼ିଶାର ଜଣେ ବଶିଷ୍ଟ ଶିକ୍ଷାବିତ୍ ! ଆପଣଙ୍କର ଜଣେ ସ୍ନେହମୁଗ୍ଧ ଛାତ୍ର ଏଥିରେ ଗୌରବାନ୍ୱିତ ହେବା ସହିତ ଗୋଟିଏ ନାଟ୍ୟାନୁଷ୍ଠାନର ମର୍ଯ୍ୟାଦା ବୃଦ୍ଧି ପାଇବ । ମନା କରନ୍ତୁ ନାହିଁ ସାର୍ !"

"ନାଟକରେ ବହୁପ୍ରକାର ଅଶ୍ଳୀଳତା ଓ ଭ୍ରଷ୍ଟାଚାରର ନଗ୍ନ ଚିତ୍ର ସବୁ ଥାଏ, ସେଥିପାଇଁ ମୁଁ ଏଥିକୁ ଅସହାୟ ମନେ କରୁଛି ଭକ୍ତକିଶୋର !"

"କିନ୍ତୁ ଆଜିର ଏଇ ନାଟକ ନିର୍ମଳ ହାସ୍ୟରସଭରା ଏକ ଶିକ୍ଷାମୂଳକ ସାମାଜିକ ନାଟକ ! ନଗ୍ନତାର ପ୍ରଶ୍ନ ନାହିଁ ସାର୍; ଦେଖିଲେ ଜାଣିବେ, ଆପଙ୍କ sentimentକୁ ମୁଁ ଆଘାତ କରିବାକୁ ଚାହେଁନା !"

"ଠିକ୍ ଅଛି । ତୁମ ଅନୁରୋଧ ମୁଁ ଲଙ୍ଘିବ ନାହିଁ । ମିସେସ୍ ମହାନ୍ତିଙ୍କୁ ନେଇ ମୁଁ ଠିକ୍ ସମୟରେ ଯିବି ! ଆରମ୍ଭ କେତେବେଳେ ?"

"ସନ୍ଧ୍ୟା ୭ ଟାରେ । ମୁଁ ଆପଙ୍କ ଘରକୁ ଯାଇ..."

"ନା, ତୁମ ଆସିବା ଦରକାର ନାହିଁ । ମୁଁ ସେଠି ଯାଇ ୭ ଟା ପୂର୍ବରୁ ପହଞ୍ଚିବି ।"

ଏଇଠୁ ବଚନକାର ଶେଷ । ସେ ନାଟକ ଉଦ୍‌ଘାଟନ କଲେ । ମୂଳରୁ ଶେଷ ପର୍ଯ୍ୟନ୍ତ ଉପଭୋଗ କଲେ, ଏବଂ ମୋତେ ଯୀଶୁଖ୍ରୀଷ୍ଟଙ୍କ ନାମରେ ଅଜସ୍ର ଆଶୀର୍ବାଦ ଦେଲେ । କେବଳ ସେତିକି ନୁହେଁ, ତାଙ୍କର ମତାମତ ଖଣ୍ଡେ କାଗଜରେ ଲେଖି କଲେଜରେ ମୋତେ ଦେଲେ । ତାଙ୍କର ସେଇ ଲେଖା ମୁଁ "ଅତିଥି" ନାଟକରେ ଛାପିଛି । ନିମ୍ନରେ ତାର ଉଦ୍ଧୃତ ଲିପିବଦ୍ଧ କରୁଛି ।

## ଶୁଭେଚ୍ଛା

"ମୋର ଶ୍ରଦ୍ଧେୟ ଗ୍ରନ୍ଥ ଏବଂ ଓଡ଼ିଶାର ସୁପରିଚିତ ନାଟକ ଲେଖକ ଶ୍ରୀ ଭକ୍ତକିଶୋର ପଟ୍ଟନାୟକଙ୍କ ଲିଖିତ "ଅତିଥି" ନାଟକର ଅଭିନୟ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଛି । ପାରିବାରିକ ଜୀବନରେ ସରଳ ବିଶ୍ୱାସ ଓ ନିର୍ମଳ ପ୍ରେମର ପବିତ୍ର ଭାବ ଏଥିରେ ପ୍ରଦର୍ଶିତ । ତାହା ସଙ୍ଗେ ସଙ୍ଗେ ବିମଳ ହାସ୍ୟରସମୂଳକ କେତେକ ଦୃଶ୍ୟ ଥିବାରୁ ନାଟକଟି ଶିକ୍ଷାପ୍ରଦ ଓ ଆନନ୍ଦଦାୟକ ମନେହୁଏ । ଭାଷାର ସରସତା ଓ ଭାବର ଗୌରବରେ ନାଟକଟି ସର୍ବସାଧାରଣଙ୍କର ବିଶେଷ ଭାବରେ ଆଦରଣୀୟ ହେବ ବୋଲି ଆଶା କରେ । ମୋର ଏକାନ୍ତ କାମନା ଯେ, ଲେଖକଙ୍କ ଉଦ୍ୟମରେ ଉତ୍କଳର ରଙ୍ଗମଞ୍ଚ ଓ ଉତ୍କଳ ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ସାଧିତ ହେଉ ।"

ଖ୍ରୀଷ୍ଟ କଲେଜ — ସ୍ୱା । ବ୍ରଜାନନ୍ଦ ମହାନ୍ତି
କଟକ, ତା ୭ । ୧୨ । ୫୪ — (ପ୍ରିନ୍‌ସିପାଲ)

ଆରମ୍ଭ ରଜନୀ ପରେ ଓଡ଼ିଶାର ଯେଉଁ ପତ୍ରପତ୍ରିକା ଓ ସମ୍ବାଦପତ୍ର ମାନେ ନାଟକ ସମ୍ବନ୍ଧରେ ସେମାନଙ୍କ ମତାମତ ପ୍ରକାଶ କରିଥିଲେ, ତାହା ହେଉଛି…

"କାଲି ରାତିରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ 'ଅତିଥି' ନାଟକର ଅଭିନୟ ଆରମ୍ଭ ହେଲା । ଶ୍ରୀ ଭକ୍ତକିଶୋର ପଟ୍ଟନାୟକ ହେଉଛନ୍ତି ଏ ନାଟକର ଲେଖକ ଓ ଶ୍ରୀ ପ୍ରିୟନାଥ ମିଶ୍ର ହେଉଛନ୍ତି ଅଭିନୟର ନିର୍ଦ୍ଦେଶକ । ପୁସ୍ତକର ଭାଷା, ସଂଳାପ ଓ ଚରିତ୍ର ବର୍ଣ୍ଣନା ପ୍ରଶଂସନୀୟ । ସମାଜରେ ଲେଖକ ଓ କବିଙ୍କ ପ୍ରତିଭାର ଉପରେ ଅନାଦର ହୁଏ ଏବଂ ପୁସ୍ତକ ପ୍ରକାଶକମାନେ ଅତି ଶସ୍ତା ମୂଲ୍ୟରେ ଉପରେ ନିଲାମ ଧରନ୍ତି, ତା'ହାର ଏକ ପ୍ରାଣସ୍ପର୍ଶୀ ଛବି ଏଥିରେ ପ୍ରଦତ୍ତ ହୋଇଛି । ପଲ୍ଲୀ ଚରିତ୍ର ବର୍ଣ୍ଣନା ମଧ୍ୟ ଜୀବନ୍ତ । ମୋଟ ଉପରେ ଦର୍ଶକ ପ୍ରାଣରେ ବିଶେଷ ପ୍ରଭାବ ପକାଇବାର ଶକ୍ତି ଏ ଅଭିନୟରେ ପ୍ରକାଶ ପାଇଛି ।"

— ଦୈନିକ ସମାଜ । ତା ୨୩ । ୧୧ । ୫୪

"ଆଧୁନିକ ଓଡ଼ିଆ ନାଟ୍ୟ ଜଗତରେ ରଙ୍ଗମଞ୍ଚ ନାଟ୍ୟକାର ହିସାବରେ ଶ୍ରୀ ଭକ୍ତକିଶୋର ପଟ୍ଟନାୟକ ଅପ୍ରତିହତ ! ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ । ତାଙ୍କର ସେହି ପ୍ରତିଷ୍ଠା ଉପରେ ରଚିତ 'ଅତିଥି' ନାଟକଟି ତାଙ୍କର ଖ୍ୟାତିକୁ ଆହୁରି ଦୃଢ଼ କରି ଦେଇଥିବା ମନେ ହୁଏ । ସଂଳାପରେ ବୈଶିଷ୍ଟ୍ୟ, ବିଶେଷ ଧରଣର ଚରିତ୍ର ଚିତ୍ରଣ କରିବାରେ କୁଶଳତା ନାଟ୍ୟକାର ଭକ୍ତକିଶୋରଙ୍କର ଏକ ଅନବଦ୍ୟ ପ୍ରତିଭା । × × × ଚରିତ୍ର ଚିତ୍ରଣର ସମାଲୋଚନା କରିବାକୁ ଗଲାବେଳେ ପ୍ରଥମେ ଆଖି ଆଗରେ ପଡ଼େ କବି ଚରିତ୍ର ।

ବାସ୍ତବକ୍, ଭକ୍ତକିଶୋରଙ୍କର ଏଇ କବି ଚରିତ୍ର ସୃଷ୍ଟି ସାର୍ଥକ ହୋଇଛି । × × ×"

—ରବିବାର ପ୍ରଜାତନ୍ତ୍ର, ତା ୫ । ୧୨ । ୫୪

"ନାଟକର ଲେଖକ ଶ୍ରୀ ଭକ୍ତକିଶୋର ପଟ୍ଟନାୟକ ଏହା ପୂର୍ବରୁ ବହୁ ନାଟକରେ ତାଙ୍କ ରଚନା-ନୈପୁଣ୍ୟର ପରିଚୟ ଦେଇ ସାରିଛନ୍ତି । 'ଅତଥି' ନାଟକରେ ତାଙ୍କର ସେହି ନିପୁଣତା ଆହୁରି ସରସ ସୁନ୍ଦର ହୋଇ ଫୁଟି ଉଠିଛି । ସାଧାରଣ ପ୍ରେମ-ମୂଳକ ଗୋଟିଏ କଥାବସ୍ତୁର ଭିତ୍ତି ଉପରେ ଆଧୁନିକା ନାରୀ, ଗାଁ ଗହଳର କୁଳଲକ୍ଷ୍ମୀ ନାରୀ, ଆଧୁନିକ ଉଚ୍ଚଶିକ୍ଷିତ ଯୁବକ, ଓ ଗାଁ ଗହଳରେ ବାସ କରୁଥିବା ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଯୁବକର ଚରିତ୍ର ଗତ ପାର୍ଥକ୍ୟ , ଏବଂ କବି ଓ ଲେଖକମାନଙ୍କର ଦୁରବସ୍ଥାକୁ ହାସ୍ୟ, କରୁଣ ଆଦି ବିଭିନ୍ନ ରସରେ ରସାଣିତ କରି ଯେଉଁଭଳି ଭାବରେ ନାଟକରେ ଫୁଟାଇ ଅଛନ୍ତି ଏବଂ ବିଭିନ୍ନ ପରିବେଶ ଭିତରେ ଚରିତ୍ର ଗୁଡ଼ିକର କ୍ରମବିକାଶ ଯେପରି ଭାବରେ ଘଟାଇଛନ୍ତି, ତାହା ନାଟକୀୟ ରଚନା ଶୈଳୀ ଦୃଷ୍ଟିରୁ ଯେପରି ସଫଳ ହୋଇଛି, ଦର୍ଶକର ଚିତ୍ତ ବିନୋଦନ ଦୃଷ୍ଟିରୁ ମଧ୍ୟ ସେହିପରି ଆନନ୍ଦ ଓ ଆମୋଦଦାୟକ ହୋଇଛି ।"

—ସାପ୍ତାହିକ ମାତୃଭୂମି ତା ୨୭ । ୧୧ । ୫୪

"ଜୀବନ ପ୍ରତି ନାଟ୍ୟକାରଙ୍କର ରହିଛି ଗଭୀର ଆଶାବାଦ । ବୋଧହୁଏ ଏହି କାରଣରୁ ନାଟ୍ୟକାର ଖୁବ୍ ବେଶି ଦୁଃଖାନ୍ତ ନାଟକ ଲେଖି ନାହାନ୍ତି । ଜୀବନ ତାଙ୍କ ପାଇଁ ହୋଇଛି କର୍ମର ତପସ୍ୟା-କ୍ଷେତ୍ର ! କର୍ମର ସଫଳତାରେ ହିଁ ଜୀବନର ସାର୍ଥକତା । ସବୁରି ଉପରେ ଅବଶ୍ୟ ଭାଗ୍ୟ ରହିଛି । ମାତ୍ର ଭାଗ୍ୟ ଉପରେ ସବୁ ଛାଡ଼ିଦେଲେ ଚଳିବ ନାହିଁ । ଭକ୍ତକିଶୋରଙ୍କର ଏହି ଜୀବନ ଦର୍ଶନ ପାରମ୍ପରିକତା ମଧ୍ୟରୁ ସ୍ପଷ୍ଟ ।"

—ଡକ୍ଟର ହେମନ୍ତ କୁମାର ଦାସ,
"ଓଡ଼ିଆ ନାଟକର ବିକାଶ ଧାରା"

"ପେଷାଦାର ରଙ୍ଗମଞ୍ଚ ପାଇଁ ନିଜର ଏକ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରି ତତ୍କାଳୀନ ଓଡ଼ିଆ ନାଟ୍ୟଜଗତ ଓ ରଙ୍ଗମଞ୍ଚର ଏକ ପ୍ରଚଣ୍ଡ ପ୍ରତିଭା ରୂପେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି ଭକ୍ତକିଶୋର ।"

—ଭିତ୍ତାହାର

"ନାଟ୍ୟାଗ୍ରଣୀ କାଳୀଚରଣଙ୍କ ଲେଖନୀ ପ୍ରାୟ ସ୍ତିମିତ ହେବାପରେ ବର୍ତ୍ତମାନ ଯୁଦ୍ଧ ଯଦି ନାଟ୍ୟସାହିତ୍ୟ ସୃଷ୍ଟିରେ କାହାର ଲେଖନୀ ମୁଖର ହୋଇ

ଛଡ଼ିଥାଏ, ତେବେ ସେ ହେଉଛନ୍ତି ନାଟ୍ୟକାର ଭଞ୍ଜକିଶୋର । ବଂଧୁ ସ୍ରଷ୍ଟା ! ତୁମର କଳ୍ପନା ସାର୍ଥକ ହେଉ, ଚର୍ଚ୍ଚା ବିକଶିତ ହେଉ, ତୁମର ଜୟ ହେଉ ।”

—ଓଡ଼ିଆ ନାଟକ ଓ ନାଟ୍ୟକାର (୧୯୫୪)

“ଭଞ୍ଜ ବାବୁ ! ଆପଣଙ୍କ 'ଅତିଥି' ନାଟକରେ ଜଣେ ଓଡ଼ିଆ କବିର ଚରିତ୍ରଚିତ୍ରଣ ଅବିକଳ ଓ ବେଶ୍ ଜୀବନ୍ତ ହୋଇଛି ।”

—କାଳିନ୍ଦୀ ଚରଣ ପାଣିଗ୍ରାହୀ

ଖ୍ରୀଷ୍ଟ କଲେଜ୍‌ର ଛାତ୍ର ଥିବା ସମୟରେ ଅଧ୍ୟକ୍ଷ ରେଭରେଣ୍ଡ୍ ବ୍ରଜାନନ୍ଦ ମହାନ୍ତିଙ୍କ ବ୍ୟତୀତ ଯେଉଁ ପ୍ରଧ୍ୟାପକ ଓ ଅଧ୍ୟାପକମାନେ ଶିକ୍ଷାଦାନ କରୁଥିଲେ, ସେମାନଙ୍କ ମଧ୍ୟରେ ৺ ଶ୍ରୀଧର ଦାସ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଏମ୍. କେ. ଜାକବ୍, ଏସ୍. ଆର. ମୁଖୋପାଧ୍ୟାୟ, ସୁଧୀରଞ୍ଜନ ବନ୍ଦୋପାଧ୍ୟାୟ, ଶ୍ରୀଯୁକ୍ତ ଭି. ସୁବ୍ରମଣ୍ୟମ୍, ଶ୍ରୀଯୁକ୍ତ ଏମ୍. ଏନ୍. ବସୁ, ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦର୍ଜି, ଶ୍ରୀଯୁକ୍ତ ଅନନ୍ତ ଚରଣ ସାହୁ (ପରବର୍ତ୍ତୀ ସମୟରେ ରେଭେନ୍ସା କଲେଜ୍‌ର ଅଧ୍ୟକ୍ଷ,) ଶ୍ରୀଯୁକ୍ତ ବନମାଳି ମିଶ୍ର, ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ (ଖ୍ରୀଷ୍ଟ କଲେଜର ଅବସର ପ୍ରାପ୍ତ ଅଧ୍ୟକ୍ଷ), ଓ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ମହାନ୍ତି ପ୍ରଭୃତିଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ସେମାନେ ସମସ୍ତେ ଥିଲେ ଛାତ୍ରବତ୍ସଳ, ଗୁଣୀ, ଆଦର୍ଶ ଶିକ୍ଷକ ଓ ଛାତ୍ରମାନଙ୍କର ଉପଯୁକ୍ତ ପରାମର୍ଶଦାତା । ମୋର I. A., ଓ B. A. class ପାଇଁ ମୁଁ ଖଣ୍ଡିଏ ହେଲେ ପାଠ୍ୟପୁସ୍ତକ କ୍ରୟ କରି ନ ଥିଲି । ଅଧ୍ୟାପକମାନେ ଯାହା ପଢ଼ାଉଥିଲେ ବା ବୁଝାଉଥିଲେ ତାକୁ ସବୁ ମୋଟା ମୋଟା ଖାତାରେ ଟିପି (Running Note) ରଖୁଥିଲି ଏବଂ ଆବଶ୍ୟକ ସ୍ଥଳେ ଲାଇବ୍ରେରୀରୁ ବହି ଆଣି ପଢୁଥିଲି । ମୋ ପରୀକ୍ଷା ଫଳ ଯେ ଅତି ଭଲ ହେଉଥିଲା, କହିଲେ ବାହୁଲ୍ୟ ହେବ ନାହିଁ । I. A. ଓ B. A. Pretest ପରୀକ୍ଷାରେ କଲେଜରେ ପ୍ରାୟ ପ୍ରତ୍ୟେକ ବିଷୟରେ ମୁଁ ପ୍ରଥମ ହୋଇଥିଲି ଓ Test ପରୀକ୍ଷା ନ ଦେଇ Final ପରୀକ୍ଷା ଦେଇଥିଲି । ସମଗ୍ର ଓଡ଼ିଶାରେ (ସେ ସମୟରେ ଓଡ଼ିଶାରେ ପ୍ରାୟ ୮ । ୯ ଟି ମାତ୍ର କଲେଜ ଥିଲା) B. A.ରେ ମାତ୍ର ୭।୮ ଜଣ Distinction ପାଇଥିଲେ ବେଳେ ଆମ କଲେଜ୍‌ରୁ ମୁଁ ଏକାକୀ Distinction ପାଇଥିଲି । ସରକାରୀ ଅଫିସ୍‌ରେ କାର୍ଯ୍ୟ କରୁଥିବା ହେତୁ ଅନର୍ସ ରଖି ପାରିଲି ନାହିଁ । କାରଣ ଅନର୍ସ ଶ୍ରେଣୀ ସବୁ ସାଧାରଣତଃ ଦିନ ଏଗାରଟା ପରେ ଆରମ୍ଭ ହେଉଥିଲା । ଅନର୍ସ ରଖିବାପାଇଁ ପ୍ରିନ୍ସିପାଲ ମହୋଦୟଙ୍କୁ ମୋତେ ସାହାଯ୍ୟ କରିବାକୁ ମୁଁ ଯେତେବେଳେ ଅନୁରୋଧ ଜଣାଇଲି, ସେ କହିଲେ, “No, no, Bhanja kishore ! I can't give you the privilege of proxy. Try for

Distinction. It is always better." ତାହା ହିଁ ହେଲ । ମୁଁ Distinction ଲାଭ କରିବାରେ ରେଭେରେଣ୍ଡ୍ ମହାନ୍ତି ଖୁସି ହୋଇଥିଲେ ।

ତୃତୀୟବର୍ଷ college excursionରେ ଯାଇ ଛାତ୍ର ବନ୍ଧୁମାନଙ୍କ ସହିତ ବମ୍ବେ, ଆଗ୍ରା, ପୁନେ, ହାଇଦ୍ରାବାଦ୍, ମହୀଶୂର, ବାଙ୍ଗାଲୋର ପ୍ରଭୃତି ନଗରୀ ପରିଦର୍ଶନ କରିବାର ସୁଯୋଗ ଲାଭ କରିଥିଲି । ତା ଛଡ଼ା ଅନ୍ୟାନ୍ୟ କାର୍ଯ୍ୟରେ କଲିକତା, ଗୟା, ଦିଲ୍ଲୀ ପ୍ରଭୃତି ସ୍ଥାନକୁ ଯାଇ ଜୀବନରେ ବହୁ ଅଭିଜ୍ଞତା ଲାଭ କରିଥିଲି । ଜଣେ କବି ବା ଲେଖକ ପକ୍ଷରେ ଏପରି ଅଭିଜ୍ଞତା ନିଶ୍ଚିତ ଭାବରେ ଲାଭଦାୟକ ! ଦିଲ୍ଲୀ ଆକାଶବାଣୀ ପକ୍ଷରୁ "ଆକାଶବାଣୀ ସଂଗୀତ ସମାରୋହ"ରେ ଯୋଗ ଦେବାଲାଗି ନିମନ୍ତ୍ରିତ ହେବା, କଲିକତା ପ୍ରବାସୀ ଓଡ଼ିଆ ସଂଘ ଆନୁକୂଲ୍ୟରେ ମୋର "ଜହର" ନାଟକ ମଞ୍ଚସ୍ଥ ହେବାରେ ମୁଖ୍ୟ ଅତିଥି ଭାବେ ଆମନ୍ତ୍ରିତ ହେବା, ଓ Song & Drama Division, New Delhi, ଦ୍ୱାରା ମୋର ସାମାଜିକ ନାଟକ "ଅଶୋକସ୍ତମ୍ଭ" ବାଂଗାଲୋର୍‌ର "ରବୀନ୍ଦ୍ର କଳାକ୍ଷେତ୍ର"ରେ ଅଭିନୀତ ହେବା ପରିପ୍ରେକ୍ଷୀରେ ମୋର ସେଥିରେ ଯୋଗଦାନ ଏବଂ ମୋର "କୋଣାର୍କ" ନାଟିକା (Book Trust of India, New Delhi ଦ୍ୱାରା ପ୍ରକାଶିତ) ଜାତୀୟ ସ୍ତରରେ ପ୍ରଥମ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହେବା ଯୋଗୁଁ ଦିଲ୍ଲୀ ଯାତ୍ରା ଏବଂ ୟୁନେସ୍କୋ ପରିଚାଳିତ (ବୃତ୍ତି) ସାମାଜିକ ଶିକ୍ଷା ଲାଗି ଆମେରିକା ଯିବା ଉଦ୍ଦେଶ୍ୟରେ Union Public Service Commissionର ସମ୍ମୁଖୀନ ହେବା ଲାଗି ଦିଲ୍ଲୀ ଯାତ୍ରା ପ୍ରଭୃତି ସମ୍ପର୍କରେ ମୁଁ ଅନ୍ୟତ୍ର ଆଲୋଚନା କରିବି ।

---

—ଆଠ—

ତର୍କବାଗୀଶ, ପଣ୍ଡିତ, ଟୀକାକାରଗଣ ନାଟକର ସଜ୍ଞାଠାରୁ ଆରମ୍ଭ କରି ଆଙ୍ଗିକ, ଆତ୍ମିକ, ଆଧ୍ୟାତ୍ମିକ, ଆକ୍ଷରିକ ଓ ଆଳଙ୍କାରିକ ବ୍ୟାଖ୍ୟା ଯେତେ ଯାହା କରନ୍ତୁ ନା କାହିଁକି; ନାଟକ ଯଦି ମନୋରଞ୍ଜନଧର୍ମୀ ନହେଲା, ପାଠକ ଓ ଦର୍ଶକର ମନକୁ ଯଦି ଛୁଇଁ ନ ପାରିଲା, ତା'ର ହସକାନ୍ଦର ସାଥୀ ଆଉ ସୁଖଦୁଃଖର ଭାଗୀଦାର ହୋଇନପାରିଲା, ତାହେଲେ ସେ ନାଟକ ପଦବାଚ୍ୟ ହୋଇପାରିବ କି ନା, ଏହା ଏକ ପ୍ରଶ୍ନବାଚୀ ! "ଅଧର୍ମର କ୍ଷୟ ଓ ଧର୍ମର ଜୟ" ଯୁଗେ ଯୁଗେ

ସାରସ୍ୱତ ନାଟକ ଏହ ବାର୍ତ୍ତା ପ୍ରଚାର କରି ଆସିଛି, ଶିକ୍ଷାଦାନ ସହିତ ଉଚିତ ମାର୍ଗ ମଧ୍ୟ ଦେଖାଇଛି । ଅଶେଷ ରସରେ ରସାଣିତ ହୋଇ ଏହା ସାଫଲ୍ୟ ଅର୍ଜନ କରିବାରେ କ୍ଷମ ହୋଇପାରିଛି । ସେଥିପାଇଁ କୁହାଯାଇଛି, "କାବ୍ୟେଷୁ ନାଟକମ୍ ରମ୍ୟମ୍" !

ଦିନକର କଥା ମନେପଡ଼ୁଛି । ସେକ୍‌ସ୍‌ବଜାରରୁ ଦେବୀଘର ବାଟଦେଇ ମୁଁ ସୁତାହାଟ ଯାଉଥାଏ । ହଠାତ୍ ଡାହାଣ ପଟ ବାରଣ୍ଡା ଉପରୁ ଜଣେ ଯୁବକ ମୋ ଆଗକୁ ଖସ୍‌କିନା ଡେଇଁପଡ଼ି ମୋ ଡାହାଣ ଗୋଡ଼କୁ ଜାବୁଡ଼ି ଧରିଲା । ସେ କଇଁ କଇଁ ହୋଇ କାନ୍ଦୁଥାଏ । କିଛି ବୁଝି ନପାରି ମୁଁ ଏକାବେଳକେ ତଟସ୍ଥ ହୋଇଗଲି ଓ ତାକୁ ତଳୁ ଉଠାଇ ଏପରି ହେବାର କାରଣ ପଚାରିଲି । ସେ ହଠାତ୍ ପ୍ରଶ୍ନକଲା, "ବାବୁ, ମୋ ଘରକଥା ଆପଣ କେମିତି ଜାଣିଲେ ?"

"ତୁମ ଘର କଥା......ମାନେ ?"

"ଖାଲି ଘର କଥା ତ ନୁହେଁ, ମୋ ଜୀବନ କାହାଣୀ ।"

"କିଛି ବୁଝିପାରୁନି ତୁମ କଥା ।"

"କହୁଚି ବାବୁ, କହୁଚି !" ଲୁହ ପୋଛି ସେ କହିବାକୁ ଲାଗିଲା । "କାଲି ଆପଣଙ୍କ "ବେନାମୀ" ନାଟକ ଅନ୍ନପୂର୍ଣ୍ଣାରେ ଦେଖି ଆସି ଘରେ ରାତସାରା କାନ୍ଦିଛି । ଦୋଗରୁ ଆଜ ଆପଣଙ୍କୁ ଦେଖିଲି । କୁହନ୍ତୁ, କେମିତି ଜାଣିଲେ ମୋ କଥା ?"

ଆଶ୍ୱାସନା ଦେଇ କହିଲି, "ଶୁଣ ଭାଇ, ନାଟକ ହେଉଛି ନାଟକ । କାଳ୍ପନିକ କଥାବସ୍ତୁକୁ ନେଇ ଲେଖାଯାଇଛି । ଆମ ସମାଜ ଜୀବନର ପ୍ରତିଛବି ତାହା ହୋଇଥିବାରୁ ହୁଏତ କାହାର ଜୀବନ କାହାଣୀ ସହିତ ମେଳ ଖାଇପାରେ । ମନକୁ ଛୁଇଁ ପାରେ । ଯାଅ, ଏମିତି ବାଇଆ ପରି ହୁଅନାହିଁ । ମୋ ଲେଖା ଯେ ତୁମକୁ ଭଲ ଲାଗିଛି, ତୁମ ହୃଦୟକୁ ସ୍ପର୍ଶ କରିଛି, ତୁମ ଆଖିରୁ ଲୁହ ଝରାଇ ଦେଇଛି, ଏହା ହିଁ ମୋ ନାଟକର ସାର୍ଥକତା, ନାଟ୍ୟକାରର ଉପଯୁକ୍ତ ପୁରସ୍କାର !"

ମୋତେ ନମସ୍କାର କରି ଲୋକଟି ତା ଘରକୁ ଚାଲିଗଲା । ସେଇ ବାଟରେ ମୁଁ ଅନେକଥର ତାକୁ ଭେଟିଛି । ନମସ୍କାରଟିଏ କରି ଟିକିଏ ହସିଦେଇ ସେ ତା' କାମରେ ଚାଲିଯାଏ ।

ଆଉ ଦିନକର କଥା । ବକ୍‌ସିବଜାରରୁ ଆସି ମୁଁ ସୁତାହାଟ ଖ୍ରୀଷ୍ଟିଆନ୍ ସାହି ଭିତରେ ଭଡ଼ାଘରେ ରହୁଥାଏ । "ଅତିଥି" ନାଟକର ପ୍ରଥମ ଉଦ୍‌ଘାଟନ ରଜନୀର ମଧୁର ସ୍ୱପ୍ନର ଆମେଜ ମୋ ଘୁମନ୍ତ ଚକ୍ଷୁରେ ଲାଗି ରହିଥାଏ । ରାତିର ଅବସାନ ହୋଇନାହିଁ, ବେଳ ପ୍ରାୟ ଘ ୫।୩୦ ମିନିଟ୍ । ହଠାତ୍ ଦରଜାରେ

ଜାଷ୍ଟାର କରାଘାତ ଶୁଭିଲା । ନିଦ ମଳ ମଳ ଆଖି ଆଉ ଟଳ ଟଳ ପାଦ ନେଇ ଆସି କବାଟ ଫିଟାଇଲି । ଯାହା ଦେଖିଲି, ମୁଁ ଏକାବେଳକେ ଅବାକ୍ ! କଟକର ଜଣାଶୁଣା କଳାପ୍ରେମୀ ଆଡ଼ଭୋକେଟ ୬ ଭୁବନାନନ୍ଦ ପଟ୍ଟନାୟକ ରାତି ଦ୍ୱିପହରେ ମୋ ପାଖରେ ଆସି ହାଜର୍ । ମତେ ଦେଖିବାମାତ୍ରେ ଆବେଗରେ ଲୁହ ଛପକାଇ ସେ ସ୍ୱର ଗଦଗଦ୍ କଣ୍ଠରେ କହିଲେ—

"ଭଞ୍ଜବାବୁ ! କାଲି ରାତିରେ 'ଅତିଥି' ମୋତେ ଶୁଆଇ ଦେଇନାହିଁ । କେମିତି ରାତି ପାହିବ, ଆଉ ମୁଁ ଆସି ଆପଣଙ୍କୁ ଦେଖା କରିବି···"

"କାହିଁକି, ଆଜ୍ଞା ?"

"ଆପଣଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଇବାକୁ !"

"ନାଟକ ଏତେ ଭଲ ଲାଗିଲା ?"

"ଭଲ ବୋଲି ଭଲ, ଯାହାକୁ କହନ୍ତି ଭଲ ! ମଣିଷର ମନର କଥା, ହୃଦୟର ପରିପୂର୍ଣ୍ଣ ଆବେଗ ଆଉ ଉତ୍କଣ୍ଠା, ମତେ ଅଭିଭୂତ କରିଦେଇଛି । ବହୁତ ବହୁତ ଶୁଭେଚ୍ଛା !"

"ଆସନ୍ତୁ, ବସନ୍ତୁ ଚା'କପେ ପିଇଯିବେ ।"

"ଧନ୍ୟବାଦ ! ଆଉ ଦିନେ ପିଇବି ।"

ସେ ମୋଠୁଁ ବିଦାୟ ନେଇଗଲେ ।

ମୋ "ଜୀବନ ଜୁଆ" ନାଟକ ଦେଖି ଓଡ଼ିଶା ହାଇକୋର୍ଟର ବରିଷ୍ଠ ଆଡ଼ଭୋକେଟ୍ ତଥା ପ୍ରବୀଣ ଅଭିନେତା (ସୌଖିନ) ଶ୍ରୀଯୁକ୍ତ ଅକ୍ଷୟ କୁମାର ଦାସ (ପିନସ୍ୱଭ୍) ତାଙ୍କର ଅଭିମତ ଜଣାଇଥିଲେ—"ମୋ ମତରେ ଆପଣ ଯେତେ ନାଟକ ଏପର୍ଯ୍ୟନ୍ତ ଲେଖିଛନ୍ତି, "ଜୀବନ ଜୁଆ" ଆପଣଙ୍କର ସର୍ବଶ୍ରେଷ୍ଠ କୃତି ! ଏଥିରେ ଆଉ ଗୋଟିଏ ବଡ଼କଥା ହେଲା flash backରେ ପୁରା ନାଟକଟି ଗଢ଼ି ଉଠିଛି । ଓଡ଼ିଆ ନାଟକରେ flash backର ପ୍ରୟୋଗ—ଏହା ହେଉଛି ସର୍ବପ୍ରଥମ ।"

ଆଉ ଥରେ ବୋର୍ଡ଼ ଅଫ୍ ରେଭେନ୍ୟୁ ଅଫିସ୍ ପାଖରେ ଆଡ଼ଭୋକେଟ୍ ରେବତୀକାନ୍ତ ମିଶ୍ରଙ୍କ ସାଙ୍ଗରେ ମୋର ଦେଖାହେଲା । ସେ ମୋ ହାତରେ ହାତ ମିଶାଇ ଖୁସ୍ ମେଜାଜରେ କହିଲେ, "ବୁଝିଲେ ଭଞ୍ଜବାବୁ । କିଛିଦିନ ତଳେ ଆପଣଙ୍କର "ଅଲେକ" ନାଟକ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ମଞ୍ଚରେ ଦେଖିଥିଲି ।"

"କେମିତି ଲାଗିଲା ?"—ମୁଁ ପଚାରିଲି ।

"ନାଟକ କଥା କିଏ ପଚାରେ ? ଧୂର୍ଜଟୀ ମୁହଁରେ ଆପଣ ଯେଉଁ dialogueଟି ଦେଇଛନ୍ତି, ସେତିକରେ ମୋର ନାଟକ ଦେଖା ସାର୍ଥକ !"

"କୋଉ dialogue, ଆଜ୍ଞା ?"

"ସେଇ ଯୋଉ···ଶୁଣିବେ ? ମୋର ତ ସେ ଧାଡ଼ି ତ'ଟା ମୁଖସ୍ଥ ହୋଇ ଯାଇଛି । ଧୂର୍ଜଟୀ ନାଟକର ଖଳନାୟକ ସପ୍ତେନ (ଅଭିନୟ କରୁଥିଲେ ଶ୍ରୀ ନରଞ୍ଜନ ଶତପଥୀ)ଙ୍କୁ କହୁଛି—"ଦେଖୁଚ ସପ୍ତେନ ବାବୁ ! ରାତୀର ନସ୍ତବ୍ଧତା ଭିତରେ ଗୋଟାଏ ନର୍ଜ୍ଜୀବ light post ପର ଦେଖୁଚ ଅତ୍ୟାଚାର, ଅନାଚାର, ଇତ୍ୟାଚାର ଆଉ ବ୍ୟଭିଚାରର ଦୃଶ୍ୟ !" ଆଜିର ଏ ଯୁଗରେ ଆଲୋକ ଦେଉଥିବା ଜ୍ଞାନ, ସାଧୁ, ସଜ୍ଜନ ନସ୍ପୃହ ଲାଇଟ୍‌ପୋଷ୍ଟ ପରି ସମାଜର ସବୁ ଭ୍ରଷ୍ଟାଚାର ଦେଖି ମଧ୍ୟ ନରବଦ୍ରଷ୍ଟା ହୋଇ ରହୁଛନ୍ତି । ପାଟି ଫିଟାଇବାର ଉପାୟ ନାହିଁ । ସତରେ ଭଞ୍ଜବାବୁ, ଏ light postର ଅସହାୟତା କଥା ଆପଣଙ୍କ ମୁଣ୍ଡରେ ପଶିଲା କେମିତି ?"···

ଦର୍ଶକ ପ୍ରାଣକୁ ସ୍ପର୍ଶ କଲାଭଳି ଶତ ନାଟକର ଯେପରି ରହୁଛି, ସାହିତ୍ୟର ଅନ୍ୟାନ୍ୟ ଦୃଷ୍ଟିରେ ସେପରି ଅଛି କି ନା, ଅନୁଭବୀ ପାଠକ ବା ଦର୍ଶକ ତାହା ବୁଝିପାରିବେ ।

ସୁତାହାଟ ଖ୍ରୀଷ୍ଟିୟାନ୍ ପଡ଼ାରେ ମୁଁ ଯେତେବେଳେ ଘରଭଡ଼ା ନେଇ ରହିଲି, ସେତେବେଳେ ଏକମାତ୍ର ହିନ୍ଦୁ ପରିବାର ବୋଲି ସେଠାକାର କେତେକ ବାସିନ୍ଦା ନାସିକା କୁଞ୍ଚନ କଲେ (୧୯୬୬ ମସିହା) । ସ୍ୱାଧୀନ ଭାରତରେ ଧର୍ମନିରପେକ୍ଷତା ଆମର ମୂଳମନ୍ତ୍ର ହୋଇଥିବା ହେତୁ ଏ ପ୍ରକାର ଆଚରଣ ମତେ କିଞ୍ଚିତ କ୍ଷୁବ୍ଧ କରିଥିଲା । ସେଠାକାର ଅଳ୍ପବୟସ୍କ ବାଳକ ଓ କିଶୋରମାନେ ଆମ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କରୁଥିଲେ ହେଁ ବୟସ୍କ ବ୍ୟକ୍ତିମାନେ ସେମାନଙ୍କୁ ଉତ୍ସାହିତ କରୁନଥିଲେ । କିନ୍ତୁ ଆମର ସହନଶୀଳତା ସେମାନଙ୍କୁ ମୁଗ୍ଧ କରିଥିଲା ବୋଧହୁଏ । ମହାତ୍ମା ତୁଳସୀ ଦାସ କହିଛନ୍ତି :—

"ସବ୍‌ମେ ରସିଏ, ସବ୍‌ମେ ବସିଏ,
ସବ୍‌କା ଲିଜିଏ ନାମ,
"ହାଁ ଜି "ହାଁ ଜି" କରତେ ରହିଏ
ବଇଠେ ଆପନା ଠାମ୍ !"

ସେତେବେଳେ ରାମଭକ୍ତ ସନ୍ଥଙ୍କର ଉକ୍ତ ଉକ୍ତି ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲା । ପିଲମାନଙ୍କ ଟାହି ଟାପରା ସତ୍ତ୍ୱେ ମୁଁ ସେମାନଙ୍କୁ ଭଲ ପାଇଲି । ତାଙ୍କ ଖେଳରେ ମିଶିବାକୁ ଚେଷ୍ଟା କଲି ଏବଂ ତାଙ୍କ ଗୁରୁଜନମାନଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେବାରେ କୁଣ୍ଠିତ ହେଲିନାହିଁ । ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ନେଇ ମୋ ନାଟକ ଦେଖାଇଲି । ଅଳ୍ପଦିନ ଭିତରେ ସେମାନଙ୍କ ମନୋଭାବ ବଦଳିଗଲା । ସେମାନେ ମୋତେ ତାଙ୍କ ପରିବାରର ଜଣେ ସଦସ୍ୟ

ଭାଲ ଗ୍ରହଣ କଲେ । ନାଟ୍ୟ ମଣ୍ଡଳରେ ମୋ ସ୍ତ୍ରୀ (ସରୋଜିନୀ)ଙ୍କର ମଧ୍ୟ ଆଦର ହେଲା । ୧୯୫୩ ମସିହାରେ ଶାରୀରିକ ଅସୁସ୍ଥତା ହେତୁ ସରୋଜିନୀ ବାବୁଲିକୁ ନେଇ ମୋ ସହିତ କଟକରେ ରହୁଥିଲେ । ସେଇ ସୁତାହାଟରେ ଥାଇ ମୁଁ I. A. ଓ B. A. ପରୀକ୍ଷା ଦେଇଥିଲି । ସୁତାହାଟ ନିବାସୀ ୰ ସାମୁଏଲ ନାୟକ (ଦେଭାର), ପ୍ରସିଦ୍ଧ ଫୁଟବଲ ଖେଳାଳି ଶ୍ରୀଯୁକ୍ତ ଗୋଲକ ଚନ୍ଦ୍ର ସାମଲ (ବୁଲୁ), ଓ ଶ୍ରୀଯୁକ୍ତ ରଞ୍ଜନ ପାଣି (ଦେଭାର) ପ୍ରଭୃତି କେତେକ ବ୍ୟକ୍ତିଙ୍କ ସହିତ ମୋର ଘନିଷ୍ଠ ବନ୍ଧୁତା ସ୍ଥାପିତ ହୋଇଥିଲା । ଦେଭାର ଶିଳ୍ପୀ ତଥା ନାଟ୍ୟକାର ସାମୁଏଲ ବାବୁ ଗୋଟାଏ ବର୍ଷ ଆମ ଗାଁକୁ ଯାଇ "କେଶରୀ ଗଙ୍ଗ" ନାଟକର ନିର୍ଦ୍ଦେଶନା ଦେଇଥିଲେ । ଗ୍ରୀଷ୍ଟପୁରର ଅଧିକାଂଶ ଯୁବକ ସାମୁଏଲ ବାବୁଙ୍କର ଶିଳ୍ପୀମାନସ ତଥା ଉଦ୍ରୋଚିତ ବ୍ୟବହାରରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଆଜି ସେ ନାହାନ୍ତି, ହେଲେ ତାଙ୍କର "ଜୋଷ୍ଣୀ", ବାଘିଫୁଲ" ପ୍ରଭୃତି ଦେଭାର ନାଟିକାର ଉଚ୍ଚକୋଟୀର ଲେଖାର ଗ୍ରାଣ୍ଡେଶ୍ୱରୀ ଅନୁବାଦନ ମୋ ସ୍ମୃତିପଟରେ ଚିରନ୍ତନ ଜାଗ୍ରତ ରହିଛି ଓ ରହିଥିବ ।

ବି. ଏ. ପାଶ୍ କରିବା ପରେ କଟକ (୧୯୫୬) କଲେକ୍ଟୋରେଟ୍‌ରୁ ବଦଳି ନେଇ ମୁଁ D.P.I. ଅଫିସରେ Writer-cum-Translater ଭାବେ ଯୋଗଦାନ କରିଥିଲି । ସେତେବେଳେ D.P.I. Office କଟକ (କାଠଯୋଡ଼ି ହଷ୍ଟେଲ)ରେ ଥିଲା ଏବଂ D. P. I. ଥିଲେ ଡକ୍ଟର ବଳଭଦ୍ର ପ୍ରସାଦ । ସେ ପ୍ରମୋଶନ ପାଇ ବିହାର ଚାଲିଯିବା ପରେ ରେଭେନ୍ସା କଲେଜର ତତ୍କାଳୀନ ପ୍ରିନ୍ସିପାଲ୍ ୰ ବାମାଚରଣ ଦାସ D. P. I. ହୋଇ ଆସିଲେ ଓ ୧୯୫୭ ମସିହାରେ ମୁଁ ପ୍ରୌଢ଼ଶିକ୍ଷା ବିଭାଗର ପ୍ରଡ଼କସନ୍ ଅଫିସର୍ ଭାବେ ନିଯୁକ୍ତ ପାଇଲି । ସେଠାରେ କାର୍ଯ୍ୟରତ ଥିବା ସମୟରେ କବି ଡକ୍ଟର ମାୟାଧର ମାନସିଂ ଓ ତାଙ୍କ ପରେ ସବୁଜକବି ଶ୍ରୀଯୁକ୍ତ ବୈକୁଣ୍ଠ ନାଥ ପଟ୍ଟନାୟକ (ଉଭୟେ ସ୍ୱର୍ଗତଃ) Adult Education Officer ଭାବେ ଯୋଗଦାନ କରିଥିଲେ । ସେମାନଙ୍କ ସାନ୍ନିଧ୍ୟ ଲାଭ କରି ମୁଁ ବିଶେଷ ପ୍ରଭାବିତ ହୋଇଥିଲି, ଏବଂ ଉତ୍ସାହିତ ହୋଇଥିଲି । ପ୍ରୌଢ଼ଶିକ୍ଷା ବିଭାଗ ଆନୁକୂଲ୍ୟରେ ମୋର "କୁଳବୋହୂ", "ଏ ଯୁଗର ଝିଅ", "ଗୋଟିଏ ମା, କୋଟିଏ ସନ୍ତାନ" ପ୍ରଭୃତି ନାଟକ ଓ "ଜାଗରଣ", "ସୁଖୀ ସଂସାର" ପ୍ରଭୃତି ନାଟିକା ପ୍ରକାଶ ପାଇଥିଲା । "ସାମାଜିକ ଶିକ୍ଷାର ନକ୍ସା" ଓ ବଡ଼ମାନଙ୍କ ଲାଗି "କୁଇ ଭାଷାରେ ଓଡ଼ିଆ ଅକ୍ଷର ଶିକ୍ଷା" ମଧ୍ୟ ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ "ଅନେକ ପଥେ", "ଓଡ଼ିଆ ବର୍ଣ୍ଣ ପରିଚୟ" ପ୍ରଭୃତି ବିଭିନ୍ନ ଲେଖକମାନଙ୍କ ବହୁ ରଚନା ମୋ ସାହାଚର୍ଯ୍ୟରେ ମୁଦ୍ରିତ ଓ ପ୍ରକାଶିତ ହୋଇ ଓଡ଼ିଶାର ପ୍ରୌଢ଼ଶିକ୍ଷା କେନ୍ଦ୍ରମାନଙ୍କୁ ପଠାଇ ଦିଆଯାଉଥିଲା ।

D. P. I. Office ରେ କେତେକ ସହକର୍ମୀଙ୍କୁ ନେଇ ଏକ ସାଂସ୍କୃତିକ ସଂସଦ ଗଠନ କରିବାର ଯେଉଁ ପରିକଳ୍ପନା କରାଯାଇଥିଲା, ତାହା ରୂପ ନେଲା D. P. I. Office କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେଲା ପରେ । ଶିକ୍ଷା ବିଭାଗ ସାଂସ୍କୃତିକ ସଂସଦର ନିର୍ବାଚିତ ସଭାପତି ଭାବେ (Founder President) ମୁଁ ବହୁବର୍ଷ କାର୍ଯ୍ୟଭାର ସମ୍ଭାଳିଥିଲି । ଉକ୍ତ ସଂସଦ ଦ୍ୱାରା ମୋର "ତୋଫାନ" ଓ "ଆକାଶ ଯେଉଁଠି ମାଟି ଛୁଏଁ" ନାଟକ ଦୁଇଟି ସାଫଲ୍ୟର ସହିତ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ଅଭିନୀତ ହୋଇଥିଲା । ନିର୍ଦ୍ଦେଶନା ଦେଇଥିଲେ ଓଡ଼ିଶାର ସୁପ୍ରସିଦ୍ଧ ମଞ୍ଚ, ବେତାର ଓ ଚଳଚ୍ଚିତ୍ର ଶିଳ୍ପୀ ଶ୍ରୀଯୁକ୍ତ ପ୍ରିୟନାଥ ମିଶ୍ର (ପିଉ) । ଉକ୍ତ "ଆକାଶ ଯେଉଁଠି ମାଟି ଛୁଏଁ" ନାଟକର ଉଦ୍‌ଘାଟକ ଭାବେ ଓଡ଼ିଶାର ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ବନମାଳି ପଟ୍ଟନାୟକ ଓ ମୁଖ୍ୟ ଅତିଥି ଭାବେ ଯୋଗଦାନ କରିଥିଲେ ପ୍ରଖ୍ୟାତ କବି ୭ ଅନନ୍ତ ପଟ୍ଟନାୟକ । ପ୍ରାରମ୍ଭିକ ସୂଚନାରେ କୁହାଯାଇଛି—

"କେନ୍ତୁ କିଏ ପଢ଼ୁଛି ନାରୀ ନିର୍ଯ୍ୟାତନାର କାହାଣୀ ? ପ୍ରତିକାର ବା କରୁଛି କିଏ ? ପତିତା ନାରୀକୁ ନେଇ ଅଶ୍ଳୀଳ ସାହିତ୍ୟ (Pronography) କେତେ ଗଢ଼ି ଉଠୁଛି ପୁଣି ପ୍ରକାଶ ପାଉଛି କେତେ ନିମ୍ନପ୍ରାଣ ସମବେଦନା ! କେତେ ରସିକ କବି ସେମାନଙ୍କୁ ନେଇ ମନଖୁସିଆ ରାଗିଣୀ ତୋଳି ପାରିଛନ୍ତି, ଅବା କେହି ଧର୍ମାତ୍ମା, ଧର୍ମବକ ସେମାନଙ୍କୁ ଠେଲି ଦେଇଛନ୍ତି ସମାଜର କୋଟା ସେପାଖ ମଶାଣିର ସେଇ ମେଞ୍ଚାଏ ଅନ୍ଧାର ଭିତରକୁ । ସେଇଠି ସେମାନେ ରାତିର ଚରକୁଣି ପରି ଅସହାୟ କ୍ରନ୍ଦନ କରନ୍ତି ଅଥବା ଖୁବ୍ ବେଶି ହେଲେ ଜୁଳୁଜୁଳିଆ ପୋକ ପରି ଆପଣାର ଜୀବିତ ବାକି ରହିଥିବା ଆଲୋକକୁ ବହୁଦୂରରେ ଥିବା ସମାଜର ଆଖି ଆଗକୁ ଆଣିବାକୁ ଚେଷ୍ଟା କରନ୍ତି, ମାତ୍ର ସଭ୍ୟତାର ହାଇପାଓ୍ୱାରଡ଼ ବଲ୍‌ବରେ ଯେଉଁମାନେ ଅନ୍ଧାରକଣା, ତାଙ୍କୁ ସେ ଜୁଳୁଜୁଳୁ ଆଲୁଅ କଣ ଦିଶୁଛି ?"

ଉକ୍ତ ନାଟକର ପ୍ରଥମ ଦୃଶ୍ୟରେ ଥିବା ଆବହ ସଙ୍ଗୀତଟି ଏଠାରେ ଉଦ୍ଧାର କରୁଛି ।

(ଗୀତ)

'ଆକାଶ ଯେଉଁଠି ମାଟିଛୁଏଁ—
ସ୍ୱପ୍ନ ସେଇଠି ଶୁଏ,
କୁହେଳି କାଟି, ଆଲୋକ ଭେଟି
ସୂର୍ଯ୍ୟ ସେଇଠି ଉଏଁ ।

ଗଗନ ପବନ ହସେ
ସୃଷ୍ଟିର ପରକାଶେ
ବହ୍ନିଗିର ଜଳଗାନ
ମିଶଇ ତହିଁ ବତାସେ
ଜୀବନ ସେଇଠି ଜାଗେ,
ମରଣ ମଥା ନୁଆଁଏ !"

---

— କଥା —

ଇତି ମଧ୍ୟରେ କଟକର ଅଲିଶାବଜାର ସ୍ଥିତ ମଙ୍ଗଳା ପାଖରେ ଦୁଇଗୁଣ୍ଠ ଜମି କିଣି ମୁଁ ଗୋଟାଏ ଘର ତିଆରି କରିସାରିଥିଲି ଓ ପିଲାମାନଙ୍କୁ ନେଇ ସେଇଠି ରହୁଥିଲି (୧୯୫୮-୫୯) । ଏହି ସମୟରେ U. N. E. S. C. O. ତରଫରୁ ଭାରତୀୟମାନଙ୍କ ପାଇଁ କେତୋଟି ବୃତ୍ତି ଘୋଷିତ ହୋଇଥିଲା । (୧୯୬୨ ମସିହା) ତଦନୁସାରେ Social Education (ପ୍ରୌଢ଼ଶିକ୍ଷା)ରେ ଆମେରିକା ଯାଇ M. A ପଢ଼ିବା କଥା ଥିଲା । ପଢ଼ିବା ପାଇଁ ଦେଢ଼ବର୍ଷ ଓ ଛଅମାସ world tour. ବିଦେଶମାନଙ୍କରେ ପୌଢ଼ଶିକ୍ଷା କିପରି ଅଗ୍ରଗତି କରୁଛି, ତାହା ଅନୁଧ୍ୟାନ କରିବା ଥିଲା world tourର ଉଦ୍ଦେଶ୍ୟ । ସର୍ତ୍ତଥିଲା ଯେଉଁ candidate କୃତକାର୍ଯ୍ୟ ହୋଇ ଆମେରିକାରୁ ଫେରିବ, ସେ ସାଙ୍ଗେ ସାଙ୍ଗେ Class I Postରେ Service କରିବ । ସେ ଭାରତରେ ଅନୁପସ୍ଥିତ ଥିବା ଦୁଇବର୍ଷ ତାର ପରିବାରକୁ ପ୍ରତିମାସର ବେତନ ପ୍ରଦାନ (ଯଦି ସେ ସରକାରୀ କର୍ମଚାରୀ ହୋଇଥାଏ) କରାଯିବ । ସେଠାରେ ଥିବା ପର୍ଯ୍ୟନ୍ତ ୟୁଏନେସ୍କୋ ପ୍ରତି candidateକୁ ମାସିକ ୮୦୦ ଡଲାର ଭତ୍ତା ଦେବେ । ଓଡ଼ିଆ ଶିକ୍ଷା ବିଭାଗ Social Educationର ପ୍ରୋଡ଼କସନ୍ ଅଫିସର୍ ଥିବା ଯୋଗୁଁ ଏବଂ ଅନ୍ୟାନ୍ୟ ସର୍ତ୍ତାବଳୀ ଯଥାଯଥ ଭାବେ ପୂରଣ କରୁଥିବାରୁ ମୋ ଦରଖାସ୍ତ ଦିଲ୍ଲୀକୁ ପଠାଯାଇ ଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ସ୍ୱତନ୍ତ୍ର ଅନୁମୋଦନ ସୁପାରିଶ ଲାଭ କରି ଯଥା ସମୟରେ ମୋ ଦରଖାସ୍ତ Secretary, Educarion Department, New Delhiଙ୍କ ନିକଟକୁ ପ୍ରେରିତ ହୋଇଥିଲା ।

କିଛୁଦିନ ପରେ ଇଣ୍ଟରଭିୟୁ ପାଇଁ ମୋ ପାଖକୁ ଚିଠି ଆସିଲା । Govt. of India, Ministry of Education, Letter No. F-9- /61 Sch. 9 for UNESCO fellowship for study in Production of Reading materials Dt 2nd Nov. 1961. ବହୁତ ଆଶା ଓ ଆକାଂକ୍ଷା ନେଇ ମୁଁ ଏକାକୀ ଦିଲ୍ଲୀ ଯାତ୍ରା କଲି । ସେଠାରେ ପହଞ୍ଚି ଠିକ୍ ସମୟରେ ମୁଁ ବୋର୍ଡର ସମ୍ମୁଖୀନ ହେଲି । ଉକ୍ତ ବୋର୍ଡର ଚେୟାରମ୍ୟାନ ଥିଲେ ଡକ୍ଟର ଶ୍ରୀମାଳି । U.N.E.S.C.O.ର ଦୁଇଜଣ ମେମ୍ବର' ମଧ୍ୟ ବୋର୍ଡରେ ଥିଲେ । ଭାରତର ବିଭିନ୍ନ ପ୍ରଦେଶରୁ ପ୍ରାୟ ୧୨ ଜଣ ପରୀକ୍ଷାର୍ଥୀଙ୍କର ଇଣ୍ଟରଭ୍ୟୁ ନିଆଗଲା । ଯୋଗ୍ୟତା ବଳରେ ନିଯୁକ୍ତ ହେବାର ଭରସା ନେଇ ମୁଁ କଟକ ଫେରିଲି । ନାଟ୍ୟକାର ବନ୍ଧୁ ଶ୍ରୀଯୁକ୍ତ ଗୋପାଳ ଛୋଟରାୟ, ଓ ଡ଼ ରାମଚନ୍ଦ୍ର ମିଶ୍ର ଓ ଅନ୍ୟ ଶୁଭେଚ୍ଛୁ ବନ୍ଧୁବର୍ଗ ମୋତେ ବଧାଇ ଜଣାଇବା ସଙ୍ଗେ ସଙ୍ଗେ ଆମେରିକା ଯାତ୍ରା ଉଦ୍ଦେଶ୍ୟରେ ପ୍ରସ୍ତୁତ ହେବାଲାଗି ପରାମର୍ଶ ଦେଲେ । ପ୍ରସ୍ତୁତ ପର୍ବ ଚାଲିଲା । କେବଳ ଦିଲ୍ଲୀରୁ ଆଦେଶର ପ୍ରତୀକ୍ଷା ! କିନ୍ତୁ ହାୟ୍, ମୋର ସବୁ ମଧୁର ସମ୍ଭାବନାରେ ଯବନିକା ଟାଣିଦେଇ ଚିଠି ଆସିଲା "Regret". କାରଣ ଠିକ୍ ସେହି ସମୟରେ ଚୀନ ଭାରତ ଆକ୍ରମଣ କରିବା ଯୋଗୁଁ ଭାରତରେ ଜରୁରୀକାଳୀନ ପରିସ୍ଥିତି (Emergency) ଘୋଷଣା କରାଗଲା । ବିଦେଶରେ M. A. ପଢ଼ିବା, World Tour କରିବା ଓ Class I Post ପାଇବାର ସବୁ ତୃଷ୍ଣା ପଣ୍ଡ ହେଲା ମରୀଚିକାରେ । ସବଂଗିଲା ଚୀନ ଭାରତର ଶତ୍ରୁ ହେବା ସଙ୍ଗେ ସଙ୍ଗେ ମୋ ଜୀବନର ପହିଲି ନମ୍ବର ଶତ୍ରୁ ହେଲା !

ଅନ୍ୟ ଗୋଟିଏ ଘଟଣା । ଶ୍ରୀ ବିଦ୍ୟାଧର ମହାନ୍ତି ଓ ମୁଁ All India Radioରେ Programme Executive ଚାକିରି ଲାଭ ଉଦ୍ଦେଶ୍ୟରେ ସାଙ୍ଗ ହୋଇ ଦିଲ୍ଲୀ ଯାଇଥିଲୁ ଓ Union Public Service Commissionରେ ଇଣ୍ଟରଭ୍ୟୁ ଦେଇଥିଲୁ । ଅଫିସରୁ ମୋ ଦରଖାସ୍ତ forward କରାଯାଇଥିଲା । ବହୁ ବେତାର ନାଟକ ମୁଁ ଲେଖିଥିଲି ଏବଂ ଅଫିସ୍ ଅଭିଜ୍ଞତା ମଧ୍ୟ ମୋର ଯଥେଷ୍ଟ ଥିଲା । ଇଣ୍ଟରଭ୍ୟୁରେ ମୁଁ ଭଲ କରିଥିଲେ ସୁଦ୍ଧା, ପୋଷ୍ଟ୍ ଗୋଟିଏ ଏବଂ ଶ୍ରୀ ମହାନ୍ତିଅ ହରିଜନ candidate ଥିବାରୁ ଚାକିରି ତାଙ୍କୁ ହିଁ ମିଳିଲା । ସରକାରୀ ଖର୍ଚ୍ଚରେ ଦିଲ୍ଲୀ ଯିବା ଆସିବା ମୋର ସାର ହେଲା ।

ଭାରତ ସ୍ୱାଧୀନତା ଲାଭ କରିବାର ବର୍ଷକ ପରେ ଓଡ଼ିଶାରେ ଆରମ୍ଭ ହେଲା ବେତାର-ଯୁଗ (୧୯୪୮) । କଟକ ବକ୍ସି ବଜାର 'ସମାଜ' ଅଫିସ ନିକଟରେ ମଧୁପୁର କୋଠିରେ All India Radioର କାର୍ଯ୍ୟାରମ୍ଭ ହେଲା । ସମ୍ବାଦପାଠ,

ସଙ୍ଗୀତ, ନାଟକ ଓ ଅନ୍ୟାନ୍ୟ ବିଷୟରେ ପ୍ରୋଗ୍ରାମ ସବୁ ପ୍ରସ୍ତୁତ ହେବାକୁ ଲାଗିଲା । ସେତେବେଳେ ମୁଷ୍ଟିମେୟ ଓଡ଼ିଆ ଅଫିସରଙ୍କ ଛଡ଼ା ପ୍ରାୟତଃ ଅନ୍ୟ ଅଫିସର ଥିଲେ ବଙ୍ଗାଳି ।

ତହେଁ All India Radioର ପ୍ରଖ୍ୟାତ ସମ୍ବାଦ-ପାଠକ ଶ୍ରୀଯୁକ୍ତ ଯତୀନ ଦାସ ମୋ ପାଖକୁ ଆସି ବେତାର ନାଟିକା ଲେଖିବାକୁ ଅନୁରୋଧ କଲେ । ଅଲ୍ପଦିନ ଭିତରେ ଲେଖାସାରି ମୁଁ ତାଙ୍କୁ ଯେଉଁ ବେତାର-ନାଟିକା ଦେଇଥିଲି, ତାର ନାଁ ଥିଲା "ସଂସ୍କାର" । ସେହି ନାଟିକା ଏଭଳି ଉଚ୍ଚସ୍ତରର ଥିଲା ଯେ, ଉତ୍ସାହିତ ହୋଇ ମୁଁ ପଛକୁ ପଛ ବେତାର ନାଟିକା ଲେଖି ଚାଲିଲି । ଫଳରେ ବହୁ ବର୍ଷ ଧରି "କଣ୍ଠା ମୁକୁଟ", "ଅଚ୍ଛବର ଭଗବାନ", "ଜନ୍ମାନ୍ତର" "ଶ୍ରୀ ଗୁଣ୍ଡିଚା", "ସାଚଦୀ", "ଦଶଭୁଜା", "ବାଣହରଣ", "ନଷ୍ଟନୀଡ଼", "ପ୍ରତିଦାନ", "ପ୍ରାୟଶ୍ଚିତ୍ତ", "ସାନ ମା", "କର୍ତ୍ତୁ", "ପ୍ରତାପରୁଦ୍ର", "ଦାନଦର୍ପୀ" "ଜୟଶ୍ରୀ", "ଧନୀ ସୌଦାଗର", "ଘରଣୀ" (series), "ଚକ ଘୂରୁଥାଏ" (series), "ଭେଟି", "ମାଇଲ ଖୁଣ୍ଟ", "ସୁଲତାନା ରେଜିୟା" "ସଂହିତା" "ବରକନ୍ୟା", "ଖାନ୍ ତଲାସ", "ଅଗ୍ନି ପତଙ୍ଗ", "ଦିଗ୍ଦର୍ଶନ" ଓ "ରସଗୋଲା" ପ୍ରଭୃତି ମୋର ଅନେକ ନାଟିକା ପ୍ରସ୍ତୁତ ଓ ପ୍ରସାରିତ ହୋଇଥିଲା ।

୧୯୫୮ ମସିହାରେ "ଆକାଶବାଣୀ ସାହିତ୍ୟ ସମାରୋହ" ରେ ଯୋଗ ଦେବାପାଇଁ ଦିଲ୍ଲୀ All India Radio Director Generalଙ୍କ ଠାରୁ ମୋ ପାଖକୁ ନିମନ୍ତ୍ରଣ ପତ୍ର ଆସିଥିଲା । ନାଟ୍ୟକାର ବନ୍ଧୁ ୰ ରାମଚନ୍ଦ୍ର ମିଶ୍ର ମଧ୍ୟ ନିମନ୍ତ୍ରିତ ହୋଇଥିଲେ । ତେଣୁ ଆମେ ଦୁହେଁ ଯଥା ସମୟରେ ଦିଲ୍ଲୀ ଯାତ୍ରା କଲୁ । ଆମକୁ introduce କରିବା ପାଇଁ କଟକ ଆକାଶବାଣୀ ତରଫରୁ ଆମ ସାଙ୍ଗରେ ଗଲେ ପ୍ରଖ୍ୟାତଯଶା ସାହିତ୍ୟିକ ସ୍ୱର୍ଗତଃ କାଳିନ୍ଦୀଚରଣ ପାଣିଗ୍ରାହୀ । ସେତେବେଳେ ସେ A.I.R.ର Spoken languageର Producer ଥିଲେ ।

ନୂଆଦିଲ୍ଲୀର "ବିଜ୍ଞାନଭବନ"ରେ ସମାରୋହ ଉତ୍ସବ ଅନୁଷ୍ଠିତ ହୋଇଥିଲା । କାଶ୍ମୀର, ପଶ୍ଚିମ ବଙ୍ଗ, ଗୁଜୁରାଟ, ଉତ୍ତର ପ୍ରଦେଶ, କେରଳ, ରାଜସ୍ଥାନ, ମାନ୍ଦ୍ରାଜ, ଆନ୍ଧ୍ର ପ୍ରଭୃତି ବିଭିନ୍ନ ପ୍ରଦେଶରୁ ଦୁଇ ଦୁଇ ଜଣ ନାଟ୍ୟକାର ଏହି ଉତ୍ସବରେ ଯୋଗଦାନ କରିଥିଲେ । ସେଠାରେ ଶ୍ରୀଯୁକ୍ତ ପି. ଭି ରାଜମାନ୍ନାର (ତତ୍କାଳୀନ ଗଭର୍ଣ୍ଣର, ମାନ୍ଦ୍ରାଜ), ଡକ୍ଟର ମାମା ଓ୍ୱାରେରକାର୍, ଶ୍ରୀଯୁକ୍ତ ମନ୍ମଥନାଥ ରାୟ, ଶ୍ରୀଯୁକ୍ତ ପ୍ରେମେନ୍ଦ୍ର ମିତ୍ର ଓ ବରେନ୍ ଭଦ୍ରଙ୍କ ସହିତ ଆମର ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । ମାନ୍ଦ୍ରାଜ High courtର Chief Justice ଶ୍ରୀଯୁକ୍ତ ରାଜମାନ୍ନାର Acting ଗଭର୍ଣ୍ଣର ଥିଲେ ମଧ୍ୟ ନାଟ୍ୟକାର

deligate ଭାବରେ ଉକ୍ତ ସମାରୋହରେ ମାନ୍ଦ୍ରାଜର ଜଣେ ନାଟ୍ୟକାର ପ୍ରତିନିଧି ଭାବେ ଯୋଗ ଦେଇଥିଲେ । ତାଙ୍କ ସହିତ ଦୂରତ୍ୱ ରଖି ଆମ୍ଭେମାନେ ସଙ୍କୁଚିତ ହୋଇ ଚାଲିବାରୁ ସେ କହିଲେ, "ଏ ସ୍ଥାନରେ ମୁଁ ଜଣେ ନାଟ୍ୟକାର ଠିକ୍ ଆପଣମାନଙ୍କ ଭଳି । ଗଭର୍ଣ୍ଣର ନୁହେଁ । ଗଭର୍ଣ୍ଣର ହୋଇଥିଲେ ଆପଣମାନେ ମୋର ଦେହରକ୍ଷୀ, ଏ. ଡି. କ୍ୟାମ୍ପ, ପାଇଲଟ ପ୍ରଭୃତିଙ୍କୁ ଦେଖିପାରିଥାନ୍ତେ । ମାତ୍ର ସେ ପ୍ରକାର ବ୍ୟବସ୍ଥା ମୋର ନାହିଁ । ଏହା କହି ସେ ପ୍ରତି ଗ୍ରୁପ୍ ସହିତ ସଦ୍‌ଭାବ ଓ ବନ୍ଧୁତା ସ୍ଥାପନ କରିଥିଲେ । ୩/୪ ଦିନର ରହଣି ମଧ୍ୟରେ ଆମ୍ଭେମାନେ ଗୋଟିଏ ପରିବାର ଭଳି ଚଳୁଥିଲୁ ଏବଂ ଆଳାପ ଆଲୋଚନା ବେଶ ଜମି ଉଠିଥିଲା । ସମ୍ମାନିତ ଅତିଥି ଭାବରେ ଆମ୍ଭମାନଙ୍କୁ ସ୍ୱାଗତ, ସମ୍ବର୍ଦ୍ଧନା ସହ ଖାଦ୍ୟ, ପେୟ ପ୍ରଭୃତିର ସର୍ବୋତ୍ତମ ବ୍ୟବସ୍ଥା କରାଯାଇ-ଥିଲା । ସେଠାରେ କାର୍‌ଯୋଗେ ଆମ୍ଭମାନଙ୍କୁ ଦିଲ୍ଲୀର ଦର୍ଶନୀୟ ସ୍ଥାନମାନ ପରିଦର୍ଶନ କରିବାକୁ ନିଆଯାଇଥିଲା ଏବଂ ଲୋକସଭା, ରାଜ୍ୟସଭା, ରାଷ୍ଟ୍ରପତି ଭବନ ପ୍ରଭୃତି ଦେଖିବାର ସକଳ ସୁଯୋଗ ପ୍ରଦାନ କରାଯାଇଥିଲା ।

ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ଲାଲକିଲ୍ଲା, କୁତବମିନାର, ଯନ୍ତ୍ର ମନ୍ତ୍ର ବିରଳା ନିର୍ମିତ ବିରାଟ ଲକ୍ଷ୍ମୀନାରାୟଣ ମନ୍ଦିର (ମାର୍ବଲ ପଥରରେ ନିର୍ମିତ) କନଟ୍ ପ୍ଲେସ୍, ରିଜର୍ଭ ବ୍ୟାଙ୍କ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଦିଲ୍ଲୀରୁ ଫେରିବା ପୂର୍ବଦିନ ସନ୍ଧ୍ୟାରେ ଭାରତର ତତ୍‌କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ୰ ଗୋବିନ୍ଦବଲ୍ଲଭ ପନ୍ଥ ଆମ୍ଭମାନଙ୍କୁ ଏକ ଟି' ଭୋଜିକୁ ଆମନ୍ତ୍ରଣ କରିଥିଲେ ଏବଂ ସେଠାରେ ବିଭିନ୍ନ ଭାଷାର କବିତା କବିମାନଙ୍କଠାରୁ ଶୁଣିଥିଲେ । ସେଦିନ ତାଙ୍କ ଆତିଥେୟତାରେ ଆମ୍ଭେମାନେ ମୁଗ୍ଧ ହୋଇଯାଇଥିଲୁ । ସେହି ସମାରୋହ ଉପଲକ୍ଷରେ ମୁଁ ଯେଉଁ 'ନଷ୍ଟନୀଡ଼' ବେତାର ନାଟିକା ସେଠାରେ ରଚନା କରିଥିଲି, ତାହା ସେହିଠାରେ ଅନ୍ୟମାନଙ୍କୁ ପଢି ଶୁଣାଇଥିଲି, ଓ ପରେ ତାହା କଟକ, କଲିକତା ପ୍ରଭୃତି ବେତାର କେନ୍ଦ୍ରମାନଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା ।

ମୋର ବେତାର ନାଟିକା "ବାଣ ହରଣ" କଟକ ବେତାର କେନ୍ଦ୍ରରୁ ସାତ ପାଞ୍ଚଥର ପ୍ରଚାରିତ ହୋଇଥିଲା । ପ୍ରଥମ ଥର ଶକୁନି ଭୂମିକାରେ ଅଭିନୟ କରିଥିଲେ ଓଡ଼ିଶାର ବରିଷ୍ଠ ମଞ୍ଚାଭିନେତା, ନିର୍ଦ୍ଦେଶକ ୰ କାଳୀଚରଣ ବାନାର୍ଜି । ଦ୍ୱିତୀୟଥର ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ ଓ ତାପରେ ଶ୍ରୀ ସାମୁଏଲ ସାହୁ ଶକୁନି ଭୂମିକାରେ ଅଭିନୟ କରିଥିଲେ । ଉକ୍ତ "ବାଣହରଣ" ନାଟିକା ମାଟ୍ରିକ୍ କ୍ଲାସରେ ଛଅ, ସାତ ବର୍ଷ ପାଇଁ ପାଠ୍ୟପୁସ୍ତକ ଥିଲା । ଜଣେ ଶିକ୍ଷକ ମତେ କହିଥିଲେ, "ସାର୍ ! ଆପଣ ଯଦି ଆଉ କିଛି ଲେଖି ନ ଥାନ୍ତେ, "ବାଣହରଣ" ହିଁ ଆପଣଙ୍କୁ ଅମର କରି ଦେଇଥାନ୍ତା !" ମୋର ବେତାର ନାଟିକା "ଦାନଦର୍ପୀ"

ଓ 'ବାଣ ହରଣ'କୁ ଗୀତିନାଟ୍ୟରେ ରୂପାନ୍ତରିତ କରିଥିଲି । "ଦାନଦର୍ପୀ"ର ନାମକରଣ କରିଥିଲି 'ବଳିବାମନ' । ଏହି ଦୁଇଟି ଗୀତିନାଟ୍ୟକୁ କଟକର J. E. କମ୍ପାନୀ କ୍ୟାସେଟ୍ କରିଛନ୍ତି ।

ମୋର ବେତାର ନାଟିକା 'ଦିଗ୍‌ଦର୍ଶନ'କୁ ମୁଁ ଶ୍ରୀ ହିମାଂଶୁ ଭୂଷଣ ସାବତଙ୍କୁ (ବେତାର) ଦେଇଥିଲି ପ୍ରଚାର ଉଦ୍ଦେଶ୍ୟରେ । କିଛିଦିନ ପରେ ରେଡ଼ିଓ ଷ୍ଟେସନକୁ ଯାଇ ହିମାଂଶୁ ବାବୁଙ୍କୁ ପଚାରିବାରେ ସେ Script ପାଉନାହାଁନ୍ତି ବୋଲି କହିଲେ । ସେଠାରେ ମଝିରେ ମଝିରେ ଲେଖା ହଜିବାର ଅପଖ୍ୟାତି ଥିଲା, କାରଣ ମୋର 'କୃଷ୍ଣା' ନାଟିକାର ମଧ୍ୟ କୌଣସି ଠିକଣା ମିଳି ନଥିଲା । ଯାହାହେଉ, ଧମକ ଚମକ ଦେବାରେ 'ଦିଗ୍‌ଦର୍ଶନ'ର ପାଣ୍ଡୁଲିପି ମିଳିଲା ଏବଂ ହିମାଂଶୁ ବାବୁ ତାହା ଏକ ଅନବଦ୍ୟ ଡ୍ରାମା ବୋଲି ମତ ଦେବା ସହିତ ସର୍ବଭାରତୀୟ ସ୍ତରରେ ତାହା ଯେପରି ପ୍ରଚାରିତ ହେବ, ସେଥିପାଇଁ ନିର୍ଦ୍ଦେଶନାର ଦାୟିତ୍ୱ ନେବେ ବୋଲି କହିଲେ । ମାତ୍ର ପ୍ରଚାରିତ ହେବା ଦିନ "ଦିଗ୍‌ଦର୍ଶନ"କୁ ଜାଣିଶୁଣି ଏପରି ବିକଳାଙ୍ଗ କଲେ ଯେ, କୌଣସି ଶ୍ରୋତା ତାକୁ ଧୈର୍ଯ୍ୟ ଧରି ଶୁଣିପାରିବ ନାହିଁ । ମୋତେ ହୀନ ପ୍ରତିପାଦିତ କରିବାର ଚେଷ୍ଟା ତାଙ୍କର ପରିଷ୍କାର ଜଣାପଡ଼ିଗଲା ।

"ମେସର୍ସ ପଞ୍ଚସଖା ପିକ୍‌ଚର୍ସ"ଙ୍କ ଆନୁକୂଲ୍ୟରେ ମୋର ଜନପ୍ରିୟ ମଞ୍ଚ-ନାଟକ "ମାଣିକଯୋଡ଼ି" ରୂପେଲି ପରଦାରେ ଆତ୍ମପ୍ରକାଶ କରିଥିଲା । ତାପରେ ହେଲା "ନବଜନ୍ମ" । ଉକ୍ତ ଦୁଇଟି ଚଳଚ୍ଚିତ୍ରରେ କାହାଣୀ ଓ ସଂଳାପ ମୋର ଥିଲା । ସୌଭାଗ୍ୟକୁ ଏଇ ଦୁଇଟି ଚଳଚ୍ଚିତ୍ର ରାଷ୍ଟ୍ରପତି ପୁରସ୍କାର ଲାଭ କରିଥିଲା । "ମେସର୍ସ ଦେବାଶୀଷ ପିକ୍‌ଚର୍ସ" ପରିବେଷିତ "ଜୀବନସାଥୀ" ଚଳଚ୍ଚିତ୍ରର ସଂଳାପ ମୁଁ ଲେଖିଥିଲି । ମାନ୍ଦ୍ରାଜର ଶ୍ରୀଯୁକ୍ତ ରେଡ୍‌ଡ଼ୀଙ୍କ ପ୍ରଯୋଜିତ "ରାଜା ହରିଶ୍ଚନ୍ଦ୍ର"ର ସଂଳାପ ମଧ୍ୟ ଲେଖିଥିଲି । ଆଉ ଗୋଟିଏ କଥାଚିତ୍ର "ମାନ ଅଭିମାନ"ର ସୁଟିଂ ମାନ୍ଦ୍ରାଜରେ ଶେଷ ହୋଇଥିଲେ ମଧ୍ୟ ପ୍ରଯୋଜକଙ୍କ ଅକାଳ ମୃତ୍ୟୁ ଯୋଗୁଁ ତାହା ଆତ୍ମପ୍ରକାଶ କରିପାରିଲା ନାହିଁ । ମୋ ଜାଣିବାରେ "ମାନ-ଅଭିମାନ" ହୋଇଥାନ୍ତା ଓଡ଼ିଆ ଚିତ୍ର-ଜଗତର ଏକ ମାଇଲ୍ ଖୁଣ୍ଟ !

୧୯୯୬ ମସିହାରେ ଭୁବନେଶ୍ୱରଠାରେ ଓଡ଼ିଆ ଚଳଚ୍ଚିତ୍ରର ହୀରକ ଜୟନ୍ତୀ ପାଳନ ଅବସରରେ, ଚଳଚ୍ଚିତ୍ର ସହିତ ସଂପୃକ୍ତ ପ୍ରଯୋଜକ, ନିର୍ଦ୍ଦେଶକ, ଲେଖକ ତଥା ଚିତ୍ରତାରକାମାନଙ୍କୁ ନିମନ୍ତ୍ରଣ କରାଯାଇ ସମ୍ବର୍ଦ୍ଧିତ କରାଯାଇଥିଲା । କିନ୍ତୁ ଓଡ଼ିଆ ଚଳଚ୍ଚିତ୍ର ଜଗତକୁ ମୋର କୌଣସି ଅବଦାନ ନଥିବା ବିଚାର କରି, ପୁରସ୍କୃତ କରିବାତ ଦୂରର କଥା, ମୋତେ ଖଣ୍ଡିଏ ନିମନ୍ତ୍ରଣ ପତ୍ର ମଧ୍ୟ

ପଠାଯାଉ ନଥିଲା । "କହିଲେ କୁଳ କୁଟୁମ୍ବଙ୍କ ଲାଜ, ନ କହିଲେ କୁଳ ବୁଡ଼ିଯାଉଛି ।"

ଅଲିଶା ବଜାର ମଙ୍ଗଳା ସାହିରେ ଟିଏ ଜମି କିଣି ଘର କରିବା କଥା ପୂର୍ବରୁ କହିଛି । ସେହି ସାହିର ଶ୍ରେଷ୍ଠ ଶ୍ରେଷ୍ଠ ଝିଅମାନଙ୍କୁ ନେଇ ନୃତ୍ୟ, ଗୀତ ଶିକ୍ଷାର ବ୍ୟବସ୍ଥା ହୋଇଥିଲା । ସ୍ଥାନୀୟ ଯୁବକମାନଙ୍କ ମଧ୍ୟରେ ୵ ହରେକୃଷ୍ଣ ସିଂ, ୵ କାଳିଚରଣ ପ୍ରଧାନ, ଶ୍ରୀ ସଚ୍ଚିଦାନନ୍ଦ ଦାସ, ଶ୍ରୀ ଭ୍ରମରବର ବେହେରା ପ୍ରମୁଖ ସେହି ଝିଅମାନଙ୍କୁ ନେଇ "ମାନଭଞ୍ଜନ" ନାଟକ ପରିବେଷଣ କରିବାର ଯୋଜନା କଲେ । ସାହି ବସ୍ତିରୁ କିଛି କିଛି ଚାନ୍ଦା ଆଦାୟ ହେଲା । ସେମାନେ ହାତରୁ କିଛି କିଛି ଟଙ୍କା ମଧ୍ୟ ଖର୍ଚ୍ଚ କଲେ । ଯଥା ସମୟରେ "ମାନଭଞ୍ଜନ" ଅଭିନୀତ ହେଲା । ସମସ୍ତେ ଖୁସି ହେଲେ । ବହୁତ ପ୍ରଶଂସା ମିଳିଲା । ଏଥିରେ ଉତ୍ସାହିତ ହୋଇ ତା ପରବର୍ଷ ମଧ୍ୟ ସେହି ନାଟକ ପରିବେଷଣ କରାଗଲା । ତତ୍କାଳୀନ ମନ୍ତ୍ରୀ ଶ୍ରୀଯୁକ୍ତ ଯୁଗଳ ପ୍ରସାଦ ମିଶ୍ର ଉଦ୍‌ଘାଟନ କରି ଶିଶୁ-ଶିଳ୍ପୀ-ମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

ସେହି ଅନୁଷ୍ଠାନର ସଭାପତି ଥିଲି ମୁଁ ।

ଆତ୍ମୀୟ କୁଟୁମ୍ବ, ବନ୍ଧୁବାନ୍ଧବ, ସାଙ୍ଗସାଥୀ, ଭାରତର ତଥା ଉତ୍କଳର ବହୁବିଶିଷ୍ଟ, ବରେଣ୍ୟ ବ୍ୟକ୍ତିମାନେ—ଯେଉଁମାନଙ୍କ ସହିତ ମୋର ପରିଚୟ, ବନ୍ଧୁତା, ଆତ୍ମୀୟତା ଓ ଅନ୍ତରଙ୍ଗତା ରହିଥିଲା ବା ରହିଛି; ସେମାନଙ୍କ ନାମସୂଚୀ ଓ କୃତିର ତାଲିକା ଦେଲେ ଏକ ସ୍ୱତନ୍ତ୍ର ପୁସ୍ତିକା ହେବବୋଲି ମୋର ବିଶ୍ୱାସ । ମୁଁ ରାଜନୈତିକ ନେତା, ମନ୍ତ୍ରୀ, ଉପମନ୍ତ୍ରୀ ଏମ୍. ପି., ଏମ୍. ଏଲ୍. ଏ., ଇଞ୍ଜିନିୟର, ଡାକ୍ତର, ଓକିଲ, ନାଟ୍ୟକାର, କବି, ସାହିତ୍ୟିକ, ପ୍ରାବନ୍ଧିକ, ସମାଲୋଚକ, ଚିତ୍ରଶିଳ୍ପୀ, ନିର୍ଦ୍ଦେଶକ, ଅଭିନେତା, ଅଭିନେତ୍ରୀ, ସଙ୍ଗଠକ, ଆଇ ଏ. ଏସ୍., ଆଇ. ପି. ଏସ୍, ଶିକ୍ଷାବିତ୍, ପ୍ରଶାସକ, ସାମ୍ବାଦିକ, କ୍ରୀଡ଼ାବିତ୍, ସ୍ୱାଧୀନତା-ସଂଗ୍ରାମୀ, ସମାଜସେବୀ, ଓ କଳାପ୍ରେମୀ ପ୍ରଭୃତି ସମାଜର ବିଭିନ୍ନ ଶ୍ରେଣୀର ବହୁ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଛି । ସେମାନଙ୍କ ସହୃଦୟତା ମୋତେ ଚମତ୍କୃତ କରିଛି, ଆତିଥ୍ୟ ମୋତେ କରିଛି ଅଭିଭୂତ ! ମାତ୍ର ଆତ୍ମଜୀବନୀର କଳେବର ବୃଦ୍ଧି ହୋଇଯିବ ମନେ କରି ସେମାନଙ୍କ ସମ୍ବନ୍ଧରେ ଲେଖିବା ସମ୍ଭବପର ହେଉନାହିଁ । ସେଥିଲାଗି ମୁଁ ଦୁଃଖିତ । କେବଳ ମାତ୍ର ମୋର ନଟ-ଜୀବନ ବା ନାଟ୍ୟକଳା ସହିତ ଯେଉଁମାନେ ପ୍ରତ୍ୟକ୍ଷଭାବେ ଜଡ଼ିତ, ସେମାନଙ୍କ ବିଷୟରେ କିଛି କିଛି ଲେଖିଛି । ସ୍ୱାଧୀନତା ସଂଗ୍ରାମୀ ତାଙ୍କ ଜୀବନୀରେ ଦେଶର ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ଲେଖନ୍ତି, କବି ତାଙ୍କ କାବ୍ୟ କବିତା ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କରନ୍ତି, ଶିକ୍ଷାବିତ୍ ଲେଖନ୍ତି ଦେଶର ଶିକ୍ଷା ଦୀକ୍ଷାକୁ ନେଇ

ତାଙ୍କର ଆତ୍ମଜୀବନୀ । ସେହିଭଳି ମୋ ଜୀବନୀରେ ନାଟ୍ୟକଳାକୁ ମୁଁ ପ୍ରାଧାନ୍ୟ ଦେଇଛି, କିନ୍ତୁ କହୁଁ କେତେବେଳେ ଦେଶ ଓ ଦଶର ହିତ ଲାଗି କିଛି କହୁଛି ସମସାମୟିକ କେତୋଟି ଘଟଣାର ଚିତ୍ର ପ୍ରଦାନ କରିଛି । କିନ୍ତୁ ନାଟକକୁ ଗ୍ରନ୍ଥ ବେଶି ଦୂରକୁ ଚାଲିଯାଇନାହିଁ ! ଭାସିଯାଇନାହିଁ ଧର୍ମ ଓ ରାଜନୀତିର ସ୍ରୋତରେ— ମୋ ମନର ବିସ୍ତୃତ କାନ୍‌ଭାସ ଉପରେ ଅଭିଜ୍ଞତାର ତୂଳୀ ସ୍ପର୍ଶରେ ଯେଉଁ ପ୍ରକାର ଚିତ୍ର ସବୁ ଫୁଟିଉଠିଛି, ସେସବୁ ମୁଖ୍ୟତଃ ସାହିତ୍ୟକୁ ନେଇ, ସାହିତ୍ୟାନୁରାଗୀ ପାଠକ ଓ ଦର୍ଶକମାନଙ୍କୁ ନେଇ ! ସମାଜର ଅଧୋଗତିକୁ ଦୃଷ୍ଟି ଯଦି କେତେବେଳେ କଦବା ବିବେକାନୁମୋଦିତ ସମାଧାନ ଚିନ୍ତା ପଥକୁ ଆସିଛି,ତାକୁ ଯଥାସ୍ଥାନରେ ଲିପିବଦ୍ଧ କରିଛି; କିନ୍ତୁ ସେ ସମସ୍ତ ଭାବନା ମୋ ନିଜସ୍ୱ । ହୁଏତ ପନ୍ଥା ଯଥାର୍ଥ ହୋଇ ନପାରେ ।

ଏ ସଂସାର ଏକ ମହାତୀର୍ଥ ! ଅଗଣିତ ଜ୍ଞାନୀ, ମାନୀ, ମହାପୁରୁଷ ପୃଥିବୀ ପୃଷ୍ଠରେ ଜନ୍ମଲାଭ କରି ଏହାକୁ ଗରିମାମୟ ଓ ମହିମାମୟ କରିଯାଇଛନ୍ତି । ସେମାନେ ଜ୍ଞାନାଲୋକ ବିକୀରଣ କରି ସମଗ୍ର ମାନବ ଜାତିର ମଙ୍ଗଳ ପାଇଁ ଯେଉଁ ପଥ ଦେଖାଇ ଯାଇଛନ୍ତି, ସେହି ପଥରେ ଅନୁଗାମୀ ହେଲେ ଆମର ଏଇ ମାଟି ପବିତ୍ର ହେବ ! 'ଗୀତା'ର କର୍ମଯୋଗ ମାନବ ସମାଜକୁ ଯେଉଁ ଦୀକ୍ଷା ଦେଇଛି, ତାହାହିଁ ଏକାନ୍ତ ଅନୁସରଣୀୟ । ଅନ୍ଧକବି ସନ୍ଥ ଭୀମଭୋଇ ଲେଖିଛନ୍ତି "ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ", ପୁଣ୍ୟାତ୍ମା ଗୋପବନ୍ଧୁ ଲେଖିଛନ୍ତି, "ମିଶୁ ଦେହ ମୋର ଏ ଦେଶ ମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ"...ଏହାଠୁଁ ବଳି ମହାନ୍ ଆତ୍ମୋତ୍ସର୍ଗର ଉଦାହରଣ ଅନ୍ୟ ସାହିତ୍ୟରେ ବିରଳ । ଏହି ମହାତ୍ମା, ପୁଣ୍ୟଶ୍ଳୋକ କବିମାନଙ୍କ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ମୁଁ ଯେଉଁ କବିତାଟି ଲେଖିଥିଲି, ତାହା ହେଉଛି—

## ମହାତୀର୍ଥ

( ୧ )

ସଂସାର ଏ ମହାକ୍ଷେତ୍ର,    ମହାତୀର୍ଥ ଧରା,
ସୁଜଳା, ସୁଫଳା ମାଗୋ,    ଶ୍ୟାମା ବସୁନ୍ଧରା ।
ବୁକେ ମନ୍ଦାକିନୀ ବହେ    ଅଶାନ୍ତ ଲହରେ
ଫୁଲର ଫସଲ ଭାଟି    ପବନ ପହଁରେ ।
ହସି ଉଠେ କୁମୁଦିନୀ    ଉଇଁ ଆସେ ଚାନ୍ଦ,
ରାତିର ବିଜନ ପକ୍ଷୀ    ଅସୀମ ଆନନ୍ଦ ।
ପାହାନ୍ତ ଗଙ୍ଗ ଶିଉଳି    ସ୍ନିଗ୍ଧ ମଧୁବାସ

ପଥେ ପଥେ ଯାଏ ଖେଳି     ଅପୂର୍ବ ପ୍ରଭାଣ !
ଉଜ୍ଜ୍ୱଳ ଲୋହିତ ରଥେ     ତରୁଣ ଦେବତା
ଆସୁଛନ୍ତି ହସି ହସି     ସେହି ସେ କରତା ।
କର୍ତ୍ତା ସେହି, କର୍ତ୍ତବ୍ୟର     ଦଅନ୍ତି ମନ୍ତ୍ରର
ଅଜ୍ଞାତ ପାଶୋର ଜାଗେ     ବିଶ୍ୱ ଚରାଚର ।
କ୍ଲାନ୍ତି, କ୍ଲେଶ, ଅବସାଦ     ନିଭାଇଛି ସାଥୀ,
ବଢ଼େ ଆଜ କର୍ମ ପଥେ     ପ୍ରଗତିର ଯାତ୍ରୀ ।
ସଂସାର ଏ ମହାକ୍ଷେତ୍ର     ମହାତୀର୍ଥ ଧରା
ସୁଜଳା, ସୁଫଳା ମାଗୋ,     ଶ୍ୟାମା-ବସୁନ୍ଧରା !

( ୨ )

ଦେବ, ଦାନବର ଯୁଦ୍ଧେ     ଜୟୀ ଦେବଗଣ
ଦେବତାର ବଂଶ ଏହି     ଅମୃତ ସନ୍ତାନ ।
ଦେବଲୋକ ସୁଧା ନେଇ     ଚୁମ୍ବିଛି ସେ ମାଟି
ହସୁଛି ସୁନାର ଧରା     ମୁଗ୍ଧ ପରପାଟୀ ।
ମାୟା, ମମତାର ହସ୍ତ     ସ୍ନେହର ଯମୁନା
ବାତ୍ସଲ୍ୟର ଉସଭର     ବୁହାଇଛି ସିନା ।
ଇତିହାସ ବୁକୁ ତଳେ     ସ୍ୱର୍ଣ୍ଣାକ୍ଷରେ ଲେଖା
ସତ୍ୟ, ଧର୍ମ, ସାଧୁତାର     ସରେ ଜୟଟୀକା ।
କାଳେ କାଳେ କର୍ମବୀର     ତ୍ୟାଗବୀର, ଯୋଗୀ
ଅପୂର୍ବ ଯୋଗ ସାଧନ     ମହାପୁଣ୍ୟ ଭୋଗୀ ।
ଅନନ୍ତ ବ୍ରତ ସେବାର     ଅସୀମ ସୁଫଳ
ଯୁଗେ ଯୁଗେ ଘୋଷୁଛି ସେ     କଳ୍ପନାର କାଳ ।

( ୩ )

କାଳ ହେ, ଦେଖିଛ ତୁମେ     ଯୁଗ ଯୁଗ ଧରି
ଭଙ୍ଗା ଗଢ଼ା କରୁଛି ସେ     ହାତ ତ ତୁମରି ।
ସାଇଠ ରଖିଛ ବୁକେ     ସୃଷ୍ଟି ଇତିହାସ
ଲେଖିନ ଯା ଇତିହାସ     ଜାଣିଛ ଅବଶ୍ୟ ।
ଅତଳ ସାଗର ତଳ     ଉଠିଲା ଏ ମାଟି
ଦେହେ ଭରି ସୁଷମାର     ନୂଆ ପରିପାଟୀ ।
ଅନନ୍ତ-ଯୌବନା ସଜା     ପତି-ସୁହାଗିନୀ
ଫୁଲ ଫଳେ ମଣ୍ଡି ଅଙ୍ଗ     ହସିଲା ଧରଣୀ ।

ବଣ ପରମ୍ପରା ଧନ		ପାଉଛୁ ସନ୍ତାନ
ମାଟି ନୁହେଁ, ମାଆଟି ସେ		ମମତାର ଧାମ ।
ସଂସାର ଏ ମହାକ୍ଷେତ୍ର,		ମହାତୀର୍ଥ ଧରା
ସୁଜଳା, ସୁଫଳା ମାଗୋ.		ଶ୍ୟାମା-ବସୁନ୍ଧରା ।
ଜୀବନର ମୂଳେ ଜନ୍ମୀ		ମାଟିର ମଣିଷ
ଲଭୁଛୁ ସେ ଶିରେ ତାର		ଦେବତା ଆଶିଷ ।
ଜନନୀ ଦେଉଛୁ ତାରେ		ଜୀଇବାର ମନ୍ତ୍ର
ଦେବତା ଗଢୁଛି ତାର		ସ୍ୱର୍ଗ-ମହାରଥ ।
ମହତ ସେ, ମହତ୍ତର		ଚୁମ୍ବୁଛି ମହିମା
ଶିକ୍ଷା ତାର, ଜାଣିଛୁ ସେ		ଯାହା ପରସୀମା
ସ୍ରଷ୍ଟାର କଲ୍ୟାଣ ଧାର୍ଯ୍ୟ		ଶିରେ ପଡ଼େ ଝର
ବୀର-ପ୍ରସବନୀ ମାଗୋ,		ଦେବୀ ବସୁନ୍ଧରା ।

( ୫ )

କୋଳେ ତୋର ଜନମିଲେ		କବି କାଳିଦାସ
ଗଲେ ଚାଲି ବାଲମୀକି,		ଧର୍ମବୀର, ବ୍ୟାସ ।
ଯୀଶୁ, ବୁଦ୍ଧ, ଚଇତନ୍ୟ,		ମହା କର୍ମଯୋଗୀ
ଗଲେ ଗ୍ଲାଲି କାଳବଳେ		ସଂସାର ତିଆଗି ।
ରଜା, ମହାରଜା କେତେ		ଦିଗ୍‌ବିଜୟୀ ବୀର
ଚଳେ ଚାଲି ପରପାରେ		ଯଶ ରଖି ଚିର ।
ହସୁଛୁ କୀର୍ତ୍ତି-ମନ୍ଦିର		ଉଡ଼ୁଛୁ ପତାକା
ସତ୍ୟ, ନ୍ୟାୟ, ବିବେକର		ବାଜେ ଜୟ ଢକ୍‌କା ।
ସାଇତି ରଖିଛୁ କାଳ !		କହ ମୋତେ ଅରେ
ଗଲ ଲେକ ବାହୁଡ଼େ କି		ସେ ରଣ୍ଡା ରଥରେ ?

( ୬ )

ମରଣର ଭୟ ନାହିଁ		ଧୂଳିର ମଣିଷ
ବିଶ୍ୱହିତେ ପିଇଛୁ ସେ'		ହଳାହଳ ବିଷ ।
ଅସ୍ଥି କାଟିଦେଇଛୁ ସେ'		ଢାଳିଛୁ ସେ ରକ୍ତ
କର୍ମଯୋଗୀ, ଧର୍ମଯୋଗୀ,		ତ୍ୟାଗବୀର, ଭକ୍ତ ।
ଈଶ୍ୱର ସେ ବିଶ୍ୱର କେ		କରିଛୁ ପ୍ରଚାର
ଘୋଷିଛୁ ସତ୍ୟର ଜୟ		ମହିମା ଅପାର ।

ଜନମ ଦେଇଛୁ ଚୂଦ୍ଧ ପାଳିଛୁ ଗୋ ଧରା
ସୁଜଳା, ସୁଫଳା ମାଗୋ, ଶ୍ୟାମା-ବସୁନ୍ଧରା !

( ୭ )

ମହାତୀର୍ଥେ, ଧର୍ମକ୍ଷେତ୍ରେ, ଶଙ୍ଖ ଉଠେ ବାଜି
ମୂଢ଼ତାର, ଜଡ଼ତାର ମୋହ ଯାଏ ଭାଜି ।
ଆଖି ମେଲି ସ୍ୱପ୍ନେଁ ବଣ୍ଣ କର୍ମପଥ ତା'ର
ଉଜ୍ଜ୍ୱଳ ପ୍ରଶାନ୍ତ ରୂପ କମନୀୟତାର ।
ପଥେ ପଥେ ଫୁଟେ ଫୁଲ୍ ଗାଇଯାଏ ପକ୍ଷୀ
ଫଳଭରେ ନଇଁଯାଏ ବନତରୁ ଶାଖୀ ।
ବହେ ମହାକନୀ ଧାର ଅଶାନ୍ତ ଲହରେ
ଫୁଲର ଫସଲ୍ କାଟି ପବନ ପହରେ ।
ଝର ଝର କରୁଣାର ଝରପଡ଼େ ବନ୍ଦୁ
ଲହରୀ ଛଳେ ଡାକଇ ସିନ୍ଧୁ, ମହାସିନ୍ଧୁ !
ସଂସାର ଏ ମହାକ୍ଷେତ୍ର ମହାତୀର୍ଥ ଧରା
ସୁଜଳା, ସୁଫଳା ମାଗୋ, ମାତା ବସୁନ୍ଧରା ।

ଏହି ପ୍ରକାର ଯେଉଁ ବସୁନ୍ଧରା, ଯେଉଁ ସଂସାର; ସମସ୍ତ ମାନବ ସମାଜକୁ ବୁକୁରେ ଧାରଣ କରି ସେ ସୁଖୀ ହେଉ, ମହୀୟାନ୍ ହେଉ, ଗରୀୟାନ୍ ହେଉ !

---

# ଜୀବନ-ମଧ୍ୟାହ୍ନ

—ଏକ—

ମୁଣ୍ଡଫଟା ଖରା । ପ୍ରଚଣ୍ଡ ତାତ ଯୋଗୁଁ ଜନଗହଳି ବିରଳ । ତାହୁଟିଏ ମଧ୍ୟ ଉଡ଼ିପି ପଡ଼ାକୁ ବାହାରି ପାରୁନାହିଁ । ନିହାତି ନହେଲେ ନ ଚଳେ ଯେଉଁମାନଙ୍କର—ସେହିମାନେ ହିଁ ମୁଣ୍ଡରେ ଠେକାଟିଏ ଭିଡ଼ି ହେଉ, ଅଥବା ଛତା ଖଣ୍ଡିଏ ଧରି ହେଉ, ଏପଟ ସେପଟ ହେଉଛନ୍ତି । କିନ୍ତୁ ସାଧାରଣ ସୃଷ୍ଟି-ସମାଜ ଘର ଭିତରେ ଅବା ଝଙ୍କାଳିଆ, ଗହଳିଆ ଗଛମୂଳେ ବିଶ୍ରାମାଶାୟୀ ! କାଁ କାଁ ରିକ୍‌ସା, ସାଇକେଲ, ଗାଡ଼ି-ମଟର ବୁଲୁଛି, ଧମେଇ ଧମେଇ ବୁଲୁଛି ମନୁଷ୍ୟର କଟକଟିଆ ସଂସାର ! ଖରାଛୁଟିରେ ସ୍କୁଲ, କଲେଜ ବନ୍ଦ, ବୁଲୁ ଅଛି କେବଳ ଅଫିସର ଧରାବନ୍ଧା କାମ ! ଏଇଭଳି ନିଦାଘ-କ୍ଲିଷ୍ଟ ମଧ୍ୟାହ୍ନ ଋତୁଚକ୍ରର ଆବର୍ତ୍ତନରେ ବାରମ୍ବାର ଆସେ, ବର୍ଷାପରେ ଶୀତ, ପୁଣି ଶୀତ ପରେ ଗ୍ରୀଷ୍ମ । ଉତ୍କଳକବି ମଧୁସୂଦନ ଲେଖିଛନ୍ତି—

"ନିଦାଘ ସମୟ ହେଲେହେଁ ଦାରୁଣ,
ଅଟେ ଜଗତର ମିତ;
ଜନମାଇ ମେଘ-ସାଧେ ପ୍ରାଣୀ ହିତ
ବୃଷ୍ଟି ବିଧାନ ବିହିତ ।"

ମାତ୍ର ମନୁଷ୍ୟର ଜୀବନଚକ୍ରରେ ଏଇ ନିଦାଘ କାଳ ଥରେ ହିଁ ଆସେ । ଗ୍ରୀଷ୍ମ ପଛକୁ ବର୍ଷା ଓ ଶୀତ ଆସିବ, କିନ୍ତୁ ଗ୍ରୀଷ୍ମ ଆଉ ଫେରିବ ନାହିଁ । ଶୀତର ହିମ-ଶୀତଳ-ସ୍ପର୍ଶରେ ଜୀବନର ସମାପ୍ତି ହିଁ ଚିରନ୍ତନ ସତ୍ୟ !

କଟକ ମାଲଗୋଦାମ ଅଞ୍ଚଳର ଗୋଟିଏ ଦୃଶ୍ୟ । ସେଦିନ ଏକ ଜାପାନୀ ବିଶେଷଜ୍ଞ ଦଳ ପାରାଦ୍ୱୀପ ଦେଖିବାକୁ ଆସି ଫେରିବା ବାଟରେ ସେଇଠି ଅଟକି ଥାଆନ୍ତି । ଆମ ଓଡ଼ିଆ ଅଫିସର ଜଣେ ଦୁ'ଜଣ ବି ତାଙ୍କ ସାଙ୍ଗରେ ଥା'ନ୍ତି । ହଠାତ୍ ଜଣେ ଜାପାନୀ ବିଶେଷଜ୍ଞ ଦେଖିଲେ ଗୋଟିଏ ରିକ୍‌ସାବାଲା ଗଛମୂଳେ ରିକ୍‌ସା ରଖିଦେଇ ତାର ଉପରେ ହାତ ଗୋଡ଼ ଲମ୍ବେଇ ନିଘୋଡ଼ ନିଦରେ ଶୋଇଛି । ଖରା ଆସି ମୁହଁରେ ପଡ଼ିଲାଣି ତା ନିଦ ଭାଙ୍ଗିବାକୁ ନାହିଁ । ମୁହଁ ଉପରେ ବସିବାକୁ ଚେଷ୍ଟା କରୁଥିବା ମାଛିଟିକୁ ଉଡ଼ାଇବାକୁ ବି ତା'ହାତ ଉଠୁନାହିଁ ।

"ଘଟଣା କ'ଣ ? ଲୋକଟି ଏମିତ ପଡ଼ିଛୁ କାହିଁକ ?" ଜାପାନ ଭଦ୍ରଲୋକ ପଗ୍ଭରଲେ । "କଛୁ ନୁହେଁ ଆଜ୍ଞା, ପରଶ୍ରମ କର ହାଲଆ ହୋଇଥିବାରୁ ବଚଗ୍ର ଟିକଏ ଥକବା ମେଣ୍ଟାଉଛ଼ି," ଆମ ଓଡ଼ିଆ ଅଫିସର ଉତ୍ତର ଦେଲେ । ଟିକଏ ଆଶ୍ଚର୍ଯ୍ୟାନ୍ୱିତ ହେଲଭଳ ଗ୍ଭବ ମୁହଁରେ ଫୁଟାଇ ବଶେଷଜ୍ଞ କହଲେ, "ବୁଝିଲେ ମହାଶୟ, ଏଇଥିପାଇଁ ଭାରତୀୟମାନେ ଦାରଦ୍ର୍ୟ ସୀମାରେଖା ଟପ୍ପି ଉପରକୁ ଉଠି ପାରୁନାହାନ୍ତି ! ଗ୍ଭଲନ୍ତୁ ଜାପାନ, ଦେଖିବେ. ସାଗ୍ରବର୍ଷ କ ଖରା, କ ବର୍ଷା ଆଉ ଶୀତ ଆମ ଲୋକେ କାମରେ ଲଗିଛନ୍ତି ସ୍ୱତଦନ । କଲ-କାରଖାନା ଗ୍ଭଲଛି, କ୍ଷେତବାଡ଼ି କାମ ଗ୍ଭଲଛି, ସବୁ ଠିକ୍ ଗ୍ଭଲଛି । ପରବାର ଭିତରେ ସ୍ତ୍ରୀଲୋକମାନେ ମଧ୍ୟ ଘରକୁଆ କାମସାର ଅଧିକା ପରଶ୍ରମ କରୁଛନ୍ତି । ଅଳ ପଡ଼ିବା କ ହାଲଆ ହୋଇ ଖିଆବେଳଟାରେ ଘଡ଼ଘୋଡ଼ ନଦରେ ଶୋଇପଡ଼ିବା ଜାପାନ ଜାତର ଜାତକରେ ନାହିଁ । ବିଶ୍ରାମ ନେବାର ସମୟ ଅଲଗା—କାମ କରବାର ନର୍ଘଣ୍ଟ ଅଲଗା ! ଆପଣ ଲକ୍ ସାବାଙ୍କ ପାଇଁ ଦୁଃଖ ପ୍ରକାଶ କର ତାକୁ 'ବଚଗ୍ର' ବୋଲ କହୁଛନ୍ତି, କ ଆଶ୍ଚର୍ଯ୍ୟ !"

ବାସ୍, ଆମ ଓଡ଼ିଆ ଅଫିସର ଅଣ୍ଡା—ଆଉ ସେଇ ପାଖରେ ଆଉ ତାଙ୍କ କଥା ଶୁଣି ମୋ ମନ ବ ଥଣ୍ଡା । ସେଦ୍ଦ ଖରାବେଳେ କେଉଁ କାର୍ଯ୍ୟରେ ମୁଁ ମାଲଗୋଦାମକୁ ଯାଇଥିଲ ସେ କଥା କହବାର ଆବଶ୍ୟକତା ବର୍ତ୍ତମାନ ଅବଶ୍ୟ ନାହିଁ ।

ଉପରୋକ୍ତ ଘଟଣାରୁ ଏହା ସ୍ପଷ୍ଟ ଯେ ମଧ୍ୟାହ୍ନ ହିଁ କର୍ମ କରବାର ଉପଯୁକ୍ତ ସମୟ । ସୃଷ୍ଟି-ବଳରେ ସାମିଲ ହୋଇ ବିଶ୍ରାମ ଅବା ଆରାମ କରବାର ବେଳ ନୁହେଁ । ପ୍ରଭାତର ଶିଶୁ ଅବସ୍ଥାକୁ ଛାଡ଼ିଦେଲେ କୈଶୋରଠୁଁ ହିଁ ଜୀବନର ଉଦ୍ୟୋଗ ପର୍ବ ଆରମ୍ଭ ହୁଏ, ପୂର୍ବାହ୍ନରେ ହୁଏ ସମ୍ପୂର୍ଣ୍ଣ ପ୍ରସ୍ତୁତ, ଆଉ ମଧ୍ୟାହ୍ନରେ ହୁଏ କର୍ମର ପୂର୍ଣ୍ଣ ବକାଶ । ସୂର୍ଯ୍ୟ ଦର୍ଶନରେ ପଦ୍ମ ଉଲ୍ଲସିତ ହୁଏ, ବକଶିତ ହୁଏ; ସେହପର ମଧ୍ୟାହ୍ନର ପ୍ରଖରତା ସହିତ କର୍ମ ପ୍ରବଣତା ମଧ୍ୟ ଅଧିକ ପ୍ରଖର, ଅଧିକ କ୍ରିୟାଶୀଳ ହୋଇଉଠେ ।

୧୯୫୯ ମସିହାର ଏକ ମଧ୍ୟାହ୍ନରେ ଡାକପିଅନ ମୋ ହାତରେ ଦେଇଗଲ ଖଣ୍ଡିଏ ଚଠି । ସେଇଟି ଆସିଥିଲ ଓଡ଼ିଶା ସାହତ୍ୟ ଏକାଡ଼େମୀ ଅଫିସରୁ । ଚଠି ଖୋଲ ଜାଣିବାକୁ ପାଇଲ ମୋର "ଅଗ୍ନିପରୀକ୍ଷା" ନାଟକ ଏକାଡେମୀ ପୁରସ୍କାର ପାଇବାକୁ ମନୋନୀତ ହୋଇଛି । ଓଡ଼ିଶା ସାହତ୍ୟ ଏକାଡେମୀ ପ୍ରତଷ୍ଠିତ ହେବାର ପ୍ରଥମ ବର୍ଷ ହିଁ ପ୍ରବନ୍ଧ ଓ ସମାଲୋଚନା ସାହତ୍ୟ ଲଗି ଶ୍ରୀଯୁକ୍ତ ନଟବର ସାମନ୍ତରାୟ, ଅନୁବାଦ ସାହତ୍ୟ 'ଗୋଦାନ' ଲଗି ସ୍ୱର୍ଗତ ଗୋଲକ ବହାରୀ ଧଳ, "ମଳୟଜନ୍ମ" ଉପନ୍ୟାସ ଲଗି ସ୍ୱର୍ଗତ ଉପେନ୍ଦ୍ର କଶୋର

ଦ୍ୱାରା "ସ୍ୱର୍ଣ୍ଣମୃଗର ସନ୍ଧ୍ୟା" କାବ୍ୟ-ନାଟିକା ଲାଗି ସ୍ୱର୍ଗତ ଜ୍ଞାନୀନ୍ଦ୍ର ବର୍ମା, ଓ "ଅଗ୍ନି ପରୀକ୍ଷା" ନାଟକ ଲାଗି ମୋତେ ପୁରସ୍କୃତ କରିବା ପାଇଁ ମନୋନୀତ କରାଯାଇଥିଲା । ଚିଠି ପାଇବାର ଅଳ୍ପଦିନ ପରେ ଭୁବନେଶ୍ୱରର କଳାମଣ୍ଡପ-ଠାରେ ସମ୍ବର୍ଦ୍ଧନା ସଭା ଓ ପୁରସ୍କାର ପ୍ରଦାନ ଉତ୍ସବର ଆୟୋଜନ କରାଯାଇଥାଏ । ପରିଜନଙ୍କୁ ନେଇ ମୁଁ ଯାଇ ବାପୁଜୀ ନଗରରେ ମୋ ଭଉଣୀ ଶାନ୍ତି ଘରେ ପହଞ୍ଚିଲି । (ମୋର ଏକମାତ୍ର ଭଉଣୀ ଶାନ୍ତିର ବିବାହ ୪।୫ ବର୍ଷ ତଳେ ବାଲିଅ ଗୋପୀନାଥପୁର ନିବାସୀ ୬ ରିକେରାମ ପଟ୍ଟନାୟକଙ୍କ ଦ୍ୱିତୀୟ ପୁତ୍ର ଗୋଲୋକ ବିହାରୀଙ୍କ ସହିତ ହୋଇଥାଏ । ସେହି ବିବାହର ସମସ୍ତ ଦାୟିତ୍ୱ ମୁଁ ବହନ କରିଥିଲି । ଆମ ବାରିପଦାରେ ଥିବା ଜମି ଓ ବାସଗୃହ ବିକ୍ରୟ ଲବ୍ଧ ସମସ୍ତ ଟଙ୍କା ଯାହାକି ମୋ ବୋଉ ନାମରେ ବ୍ୟାଙ୍କ୍‌ରେ ଜମା ଥିଲା, ସେ ସମସ୍ତ ଅର୍ଥ ଉକ୍ତ ବିବାହରେ ବ୍ୟୟିତ ହୋଇଥିଲା । ତା'ଛଡ଼ା ମୋ ସଞ୍ଚିତ ଅର୍ଥ ମଧ୍ୟ ମୁଁ ସେଥିରେ ଖର୍ଚ୍ଚ କରିଥିଲି । ଆଉ ଅବଶିଷ୍ଟ ଯେଉଁ ଟଙ୍କା କରଜ ହୋଇଥିଲା, ମୁଁ ଧୀରେ ଧୀରେ ପରିଶୋଧ କରିଥିଲି ।) କଳାମଣ୍ଡପଠାରେ ସାହିତ୍ୟ ଏକାଡେମୀର ସଭାପତି ଡକ୍ଟର ହରେକୃଷ୍ଣ ମହତାବ ଆମ୍ଭମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର-ପ୍ରାପ୍ତ ମୋ ସାମାଜିକ ନାଟକ "ଅଗ୍ନି ପରୀକ୍ଷା" ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'ବି' ଗ୍ରୁପ୍‌ର ଶିଳ୍ପୀମାନଙ୍କ ଦ୍ୱାରା ପରିବେଷିତ ହୋଇଥିଲା । ସର୍ବଶ୍ରୀ ସାମୁଏଲ ସାହୁ (ବାବି), ହେମନାଥ ମିଶ୍ର, ମଧୁସୂଦନ ପଲେଇ, କେଶବ ଚନ୍ଦ୍ର ଶତପଥୀ, ପୂର୍ଣ୍ଣଚନ୍ଦ୍ର ସିଂହ, ଓ ମାଧବାନନ୍ଦ କର ତଥା ଶ୍ରୀମତୀ ଲୀଳା ଦୁଲାଲି, ଉମାରାଣୀ, କୃଷ୍ଣପ୍ରିୟା, ମାନଦା ଓ ରୁକ୍ମିଣୀ ପ୍ରମୁଖ ଶିଳ୍ପୀଗଣ ସେମାନଙ୍କ ନିପୁଣ, ନିଖୁଣ ଅଭିନୟ ଦ୍ୱାରା ନାଟକକୁ ସର୍ବାଙ୍ଗ ସୁନ୍ଦର କରି ପାରିଥିଲେ । ନାଟକର ନିର୍ଦ୍ଦେଶନା ଦେଇଥିଲେ ଶ୍ରୀ ସାମୁଏଲ ସାହୁ (ବାବି) ।

ଉକ୍ତ ନାଟକ ଦେଖିଲା ପରେ ଉତ୍କଳର ପ୍ରଖ୍ୟାତ କବି ତଥା ଶିକ୍ଷାବିତ୍ ଡକ୍ଟର ସ୍ୱର୍ଗତ ମାୟାଧର ମାନସିଂହ ଯେଉଁ ଅଭିମତ ଦେଇଥିଲେ, ତାହା ହେଲା—

"ଉଦୀୟମାନ ନାଟକ ଲେଖକ ଶ୍ରୀମାନ୍ ଭକ୍ତକିଶୋର ପଟ୍ଟନାୟକଙ୍କର କେତୋଟି ନାଟକର ଅଭିନୟ ଦେଖି ମୁଁ ଆନନ୍ଦ ଲାଭ କରିଛି । ତାଙ୍କ ନାଟକ-ଗୁଡ଼ିକର ପୃଷ୍ଠରେ ନୂତନତ୍ୱର ଓ ଆଦର୍ଶବାଦର ସ୍ପର୍ଶ ମୁଁ ଦେଖିପାରିଛି । "ଅଗ୍ନି-ପରୀକ୍ଷା" ନାଟକର ବୃଦ୍ଧ ବୈଜ୍ଞାନିକ ଡକ୍ଟର ଦାସ ମନୁଷ୍ୟକୁ କ୍ଷୁଧା ଦାଉରୁ ରକ୍ଷା କରିବାକୁ ଗବେଷଣା କରିବା ଏକ ନୂତନ କଳ୍ପନା । ସମସ୍ତ

ପ୍ରଲୋଭନ ମଧ୍ୟରେ ରହି ସୁଦ୍ଧା ନିଷ୍କଳଙ୍କ ଥାଇ ପରୋପକାରରେ ଆତ୍ମୋତ୍ସର୍ଗ କରିବା ନୂଆ ଜଗତର ତରୁଣ 'ସାଗର' ଚରିତ୍ର ଯୁବକ ସମାଜ ଆଗରେ ଆଉ ଏକ ଆଦର୍ଶ ! 'ଅସୀତା' ଜୀବନରେ ସଂଘର୍ଷର ଅଭିନୟ ବେଶ୍ ଫୁଟିଛି । 'ସାଗର' ଓ 'ଅସୀତା' ଅଗ୍ନି-ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଭକ୍ତକିଶୋର ଶକ୍ତିଶାଳୀ ଲେଖନୀର ଅଧିକାରୀ । ମୋର ଆଶା, ସେହି ଲେଖନୀ ଉତ୍ତରୋତ୍ତର ଜୟଯୁକ୍ତ ହେବ ।"

କଟକ ତା ୨୮।୧।୫୭ ସ୍ୱା-ମାୟାଧର ମାନସିଂହ

ଅନ୍ୟ ଏକ ମଧ୍ୟାହ୍ନର ମଧୁର ସ୍ମୃତି । ଯେତେବେଳେ ମନେ ପଡ଼େ, ମନ ଭିତରେ ଖଟାମିଠାର ଖେଚେଡ଼ି ଢଆଁଶ ହୁଏ । "ଦିଲ୍ଲୀକା ଲଡ଼ୁ ଯୋ ଖାୟା ଓ ପସ୍ତାୟା, ଯୋ ନେହିଁ ଖାୟା, ଓ ଭି ପସ୍ତାୟା"—ସେହିପରି ସେ ଖେଚେଡ଼ି ଯେତିକି ଖଟା, ସେତିକି ମିଠା । ତା'ର ଅନୁଭୂତି ମଧ୍ୟ ତିକ୍ତ-ମଧୁର ।

କଟକରୁ ବାହାରି ବସ୍ ଯୋଗେ ମୋର ତିନି ବନ୍ଧୁ ଓ ମୁଁ କୋଣାର୍କରେ ଯାଇ ପହଞ୍ଚିଲୁ । ସମୟ ସକାଳ ୯ଟା । ଉଦ୍ଦେଶ୍ୟ ଥିଲା, ସୂର୍ଯ୍ୟ-ମନ୍ଦିର 'କୋଣାର୍କ' ଦେଖିବା ଓ ପିକ୍‌ନିକ୍ କରିବା । ପିକ୍‌ନିକ୍ କରିବା ପାଇଁ ବେଳେଶ୍ୱର, ଚନ୍ଦ୍ରଭାଗା ଓ ବାଲହରଚଣ୍ଡୀ ଉପଯୁକ୍ତ ସ୍ଥାନ ହୋଇଥିଲେ ମଧ୍ୟ ଦୁର୍ଯୋଗକୁ ଆମେ କୌଣସି ସ୍ଥାନକୁ ଯାଇପାରିଲୁ ନାହିଁ । ସାଙ୍ଗରେ ନେଇଥିବା ଡେକଚି, କଡ଼େଇ ପ୍ରଭୃତି ବୋହିବା ହିଁ ସାର ହେଲା । ସେଦିନ କୌଣସି କାରଣରୁ ଚକ ବନ୍ଦ, ଅଖ ବନ୍ଦ ଦୋକାନ ବଜାର ସବୁ ବନ୍ଦ । କୋଣାର୍କ ବନ୍ଦ କହିଲେ ଚଳେ । ପୂର୍ବ ଯୋଜନା ଅନୁଯାୟୀ ଆମର ଖେଚେଡ଼ି ଓ ମାଂସ ତରକାରି ବ୍ୟବସ୍ଥାରେ ପଡ଼ିଲା ଅକାଳ ଯବନିକା ! ଖିଦ ଯେତିକି ଟାଣ ହେଉଥାଏ, ପେଟ ଭିତରେ ଭୋକର ଦାଉ ବି ସେତିକି ଉଗ୍ର ହେଉଥାଏ । ଭଗବାନଙ୍କର କିଞ୍ଚିତ ଅନୁକମ୍ପା ଯୋଗୁଁ ପାଖ ପଡ଼ିଶାରୁ କିଛି ଚୂଡ଼ା, ମୁଢ଼ି ମିଳିଲା, ସେତିକିରେ ଆମ ପିକ୍‌ନିକ୍ ସାଧ ମେଣ୍ଟି-ଗଲା । "ଆନନ୍ଦେ ଏକବାର୍ ହରିବୋଲ୍ !"

ବାକି ରହିଲା କୋଣାର୍କର ସୂର୍ଯ୍ୟମନ୍ଦିର ଦେଖିବା । ବେଳ ଗଡ଼ିବା ସଙ୍ଗେ ସଙ୍ଗେ ଆମେ ଧ୍ୱଂସବନ୍ତ ମନ୍ଦିର ପରିକ୍ରମା ଆରମ୍ଭ କଲୁ । ଉପଯୁକ୍ତ ରକ୍ଷଣା ବେକ୍ଷଣ ଅଭାବରୁ ନଅଶହ ବର୍ଷ ତଳର ସେ ଗାରିମା ତାର ନାହିଁ; କିନ୍ତୁ କଳା ସ୍ଥାପତ୍ୟର ଯେଉଁ ପରାକାଷ୍ଠା ଏବେ ବି ବିଦ୍ୟମାନ ତାହା ବିଶ୍ୱର ଏକ 'ଆଶ୍ଚର୍ଯ୍ୟ' ବୋଲି ନିର୍ବିଘ୍ନରେ କୁହାଯାଇପାରେ । ସେଥିପାଇଁ ପ୍ରାୟ ପ୍ରତିଦିନ ବିଦେଶୀ ପର୍ଯ୍ୟଟକ-ମାନଙ୍କର ଦର୍ଶନ ସେଠାରେ ମିଳେ । ମୁଁ ଆଗ୍ରାର 'ତାଜମହଲ' ଦେଖିଛି, ମୁଗ୍ଧ ହୋଇଛି ତାର ନିର୍ମାଣଶୈଳୀ ଓ କାରିଗରର ଚମତ୍କାରିତାରେ । 'କୋଣାର୍କ'

ସହିତ 'ତାଜମହଲ'ର ତୁଳନା କରି ମୁଁ ଉପଲବ୍ଧି କରିଛି ଏକ ମହାନ୍ ଅନୁଭୂତି । ତାହାହେଲା, 'ତାଜମହଲ' ମୋ ଦୃଷ୍ଟିରେ ଏକ ନୀରବ, ନିସ୍ତବ୍ଧ ପାଗୋଡ଼ା, ଏକ ସମାଧି ମନ୍ଦିର; କିନ୍ତୁ 'କୋଣାର୍କ' ଏକ ଜୀବନ୍ତ, କୋଳାହଳମୟ କାରୁ-ସୌଧ ଯେଉଁଠି ପ୍ରତ୍ୟେକ ମୂର୍ତ୍ତି ପ୍ରାଣବନ୍ତ । ବାଦ୍ୟକାର ସତେ ଅବା ବାଦ୍ୟ ବଜାଉଛି, ନର୍ତ୍ତକୀ ନାଚୁଛି—ଚଞ୍ଚଳ ପାଦରେ ତାର ନୂପୁର, କଟିରେ ଘୁଙ୍ଘୁର ମାଳ । ଅଶ୍ୱ, ହସ୍ତୀମାନଙ୍କ ସହିତ ସୈନିକମାନଙ୍କର ଯୁଦ୍ଧ ଯାତ୍ରା, ତୂରୀ ଭେରୀର ଗୁରୁଗମ୍ଭୀର ନାଦରେ କ୍ଷେତ୍ର ମୁଖରିତ । ଗଜପତି ନରସିଂହ ଦେବ ଓ ଶିଳ୍ପୀକୁଳ ମୁକୁଟମଣି ବିଶୁ ମହାରଣା ଏବେ ବି ଅମର । କିନ୍ତୁ ଜ୍ୟୋତ୍ସ୍ନାସ୍ନାତ ପରିବେଶ ମଧ୍ୟରେ ଏକ ଶୁଭ୍ର ପଦ୍ମ ଭଳି 'ତାଜମହଲ' ଦର୍ଶକ ଆଖି ଆଗରେ ଉଭାହୁଏ ଏକ ଅଶରୀରୀ ଆତ୍ମା ଭଳି । ସ୍ୱଚ୍ଛ ଆଉ ସୁନ୍ଦର । ସନ୍ଧ୍ୟା ପୂର୍ବରୁ ଆମେ ବୃଶବନ୍ଧୁ କୋଣାର୍କ ଛାଡ଼ିଲୁ ଗୋଟିଏ ଟେମ୍ପୋରେ । ତା'ପରେ ପିପିଲିରୁ ବସ୍‌ରେ କଟକ । ପିକ୍‌ନିକ୍ ନ ହେଲା ନାହିଁ ପଛକେ, କୋଣାର୍କର ସୂର୍ଯ୍ୟମନ୍ଦିର ସେଦିନ ଆମକୁ ଅପାଶୋରା ଆନନ୍ଦ ପ୍ରଦାନ କରିଥିଲା । କଟକ ଫେରିଲା ପରେ ଯେଉଁ କବିତା ମୁଁ ଲେଖିଥିଲି, ତାହା ନିମ୍ନରେ ଉଦ୍ଧାର କରୁଛି ।

## କୋଣାର୍କ

ଅପରୂପ ଶିର   ରୂପର ପସରା   ମତ୍ତ ଯୌବନ ଗରିମା,<br>
କଳାକାର ହାତେ   ରୂପ ସେ ପାଇଛି   ଲକ୍ଷ କଳାର ମହିମା ।<br>
ମରିନାହିଁ, ଅଛି ଶୋଇ ସେ'<br>
ତେଣୁ ସେ ରହିଛି   ଅର୍ଘ୍ୟ ନେବାକୁ   ଦୀର୍ଘ ଅନନ୍ତ ସାଧନା<br>
ସ୍ୱର୍ଣ୍ଣଯୁଗର   ବର୍ଣ୍ଣ ବିଭବେ   ପୂର୍ଣ୍ଣ କରିଛି ରଚନା ।<br>
କଳପନା ତହିଁ   ଶିଳ୍ପୀ କୁଳର   କଳା-କୌଶଳ-ବିଳାସ<br>
ଉପଲ ଖଣ୍ଡରେ   ଶିଲ୍‌ପ ବିଭୂଷା   ଅଦ୍ଭୁତ ଅତି ପ୍ରକାଶ ।<br>
ଲୁଚି ନାହିଁ, ଏବେ ଅଛି ସେ'<br>
ସାକ୍ଷ୍ୟ ଦେଉଛି   ଲକ୍ଷ ପ୍ରାଣର   ବକ୍ଷ ନିଗିଡ଼ା ଉଚ୍ଛ୍ୱାସ,<br>
କଳପନା ତହିଁ   ଶିଲ୍‌ପୀ କୁଳର   କଳା-କୌଶଳ-ବିଳାସ ।<br>
କାହିଁ କେତେକାଳୁ   ଚାହିଁ ସେ ରହିଛି   କୀର୍ତ୍ତି କେତନ ଉଡ଼ାଇ<br>
ବଇଶାଖୀ-ଝଡ଼   ବହିଛି ଶିରେ ତା   ଏବେବି ଟଳିଛି କାହିଁ ?<br>
ଝରିନାହିଁ, ମରିନାହିଁ ସେ'<br>
ମରି ଶୋଇଛି କି   ନାଚର ପ୍ରତିମା   କେଉଁକାଳେ ଶୁଣାନାହିଁ;<br>
କାହିଁ କେତେ କାଳୁ   ଚାହିଁ ସେ ରହିଛି   କୀର୍ତ୍ତିକେତନ ଉଡ଼ାଇ ।

ଫେଣ ଗାର କାଟି ଫେରଛୁ ଲକ୍ଷ୍ମୀ ଶୁଣିଛୁ ଦଶଆ ବାଳୀ
ବାରଣ ବଢ଼େଇ ଗଲେଣି ବାହୁଡ଼ି ଧରମା ଗଲଣି ଭୁଲି
ଯାଇନାହିଁ, ଶିବ ନାହିଁ ସେ'
ଯୁଗ ଯୁଗ ଧରି ଯୋଗୀ ଏ ଜାତିର ସାଜୁଥିବ ପୂଜା ଥାଳି
ସ୍ୱର୍ଣ୍ଣ-ଯୁଗର ବର୍ଣ୍ଣ-ବିଭବେ ପୂର୍ଣ୍ଣ କରିଛୁ ଉତ୍କଳୀ ।

ଧନ୍ୟ ଶିଳ୍ପୀ, ଧନ୍ୟ ମନୁଷ୍ୟ ଜାତି । ପ୍ରାଚୀନ ରୋମାନ୍ ସଭ୍ୟତା, ଗ୍ରୀକ୍ ସଭ୍ୟତା, ହିନ୍ଦୁକୁଶ ସଭ୍ୟତା—ସବୁର ସ୍ରଷ୍ଟା ଏଇ ମଣିଷ । ଯୁଗେ ଯୁଗେ ଏଇ ମଣିଷଙ୍କ ଭିତରୁ ଜନ୍ମ ନେଇ ଆସିଛନ୍ତି କନ୍‌ଫୁସିୟସ, ସିଜର, ସକ୍ରେଟିସ୍, ଗାଲିଲିଓ, ନେପୋଲିଅନ, ଲିଓନାର୍ଡୋଭିନ୍‌ସି, ଏଜେସ୍ ପାଉଣ୍ଡ, କାଳିଦାସ, ଶିବେଇ ସାନ୍ତ୍ରା, ଆଇନ୍‌ଷ୍ଟାଇନ୍, କାର୍ଲମାର୍କ୍ସ, ମହାତ୍ମାଗାନ୍ଧୀ ଓ ଆହୁରି ଅନେକ ଯୋଗଜନ୍ମା ମହାପୁରୁଷ । ଧର୍ମ, ରାଜନୀତି, ବୀରତ୍ୱ, ସ୍ଥାପତ୍ୟ, କଳା ଓ ସାହିତ୍ୟ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏଇ ମଣିଷ ହିଁ ତାର କରିତ୍ୱାର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରିପାରିଛି । ଦୁର୍ଲ୍ଲଭ ମାନବ ଜୀବନ ବୁଦ୍‌ବୁଦ ପରି କ୍ଷଣସ୍ଥାୟୀ ସତ୍ୟ, ମାତ୍ର ତାର କୀର୍ତ୍ତି କାଳଜୟୀ । ମରଣକୁ ତାଚ୍ଛଲ୍ୟଭରା ଉପହାସ କରି ମାନବ ଆଜି ଜ୍ଞାନ, ବିଜ୍ଞାନର ଶିଖର ଦେଶରେ ଉପନୀତ । କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ ଭାଷାରେ—

ଶୁନୋରେ ମାନୁଷ ଭାଇ !
ସବାର୍ ଉପରେ ମାନୁଷ୍ ସତ୍ୟ,
ତାହାର ଉପରେ ନାଇଁ !"

---

—ଦୁଇ—

୧୯୫୫ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ବହୁ ମଞ୍ଚ ନାଟକ ରଚନା କରିଥିଲେ । 'ସାଧବୀ' (୧୯୫୪), 'ଅଗ୍ନି-ପରୀକ୍ଷା' (୧୯୫୫), 'କୁଳବୋହୂ' (୧୯୫୬), 'ପରିଶୋଧ'(୧୯୫୭', 'ସାଆନ୍ତ ଘର' (୧୯୫୭), 'ପ୍ରତାପରୁଦ୍ର', 'ରାଜନର୍ତ୍ତକୀ' (୧୯୫୮), 'ଅଶୋକସ୍ତମ୍ଭ' (୧୯୫୯), 'ଏ ଯୁଗର ଝିଅ' (୧୯୬୦) 'ସୁଖୀ ସଂସାର' (୧୯୬୧), 'ଗୋଟିଏ ମା, କୋଟିଏ ସନ୍ତାନ' (୧୯୬୪), 'ଜାଗରଣ' (୧୯୬୫), 'ଘରଣୀ' (୧୯୬୮), 'ଆକାଶ ଯେଉଁଠି ମାଟି ଛୁଏଁ' (୧୯୭୦) 'କାଶ୍ମୀରୀ ବେଗମ୍ ଗୁଲନାର' (୧୯୭୩), 'ଦେବଭୂମି' (୧୯୭୭) । ଏହାବ୍ୟତୀତ 'କାନୁନ କୁମାରୀ' ଓ 'ଦିଗ୍‌ଦର୍ଶନ' ୧୯୭୮ ମସିହା ପରେ ରଚିତ ହୋଇଥିଲା । ବିପୁଳତା ଦୃଷ୍ଟିରୁ ବିଚାର କଲେ ଜୀବନ ମଧ୍ୟାହ୍ନରେ ହିଁ ସଂଖ୍ୟାଧିକ ନାଟକ ଓ ନାଟିକା ରଚନା କରିଥିଲେ ।

ପୂର୍ବରୁ ଲେଖିଛୁ, 'ଅଶୋକସ୍ତମ୍ଭ' ନାଟକ 'ଜନତା ରଙ୍ଗମଞ୍ଚ'ରେ ଦ୍ୱୀବାର୍ଷିକ ପୂର୍ବେ ବହୁ ରଜନୀ ଧରି ସଫଳତାର ସହ ଅଭିନୀତ ହୋଇଥିଲା । ଏହି ନାଟକରେ ଗୋଟିଏ ନୂତନ ଧରଣର ପ୍ରଚେଷ୍ଟା କରାଯାଇଥିଲା, ଯାହାକି କେବଳ ସିନେମାରେ ହିଁ ସମ୍ଭବ ହୋଇଥାଏ । ତାହା ହେଉଛି Dual Role ବା ଦ୍ୱୈତ ଭୂମିକା । ଓଡ଼ିଆ ନାଟକରେ ଏ ପ୍ରକାର ଦ୍ୱୈତ ଭୂମିକା ଆଦୌ ପରିବେଶିତ ହୋଇନାହିଁ । ଜନତା ରଙ୍ଗମଞ୍ଚରେ ଏହି ନାଟକ ନାଟ୍ୟପ୍ରେମୀ ଦର୍ଶକମାନଙ୍କୁ କିଭଳି ମୁଗ୍ଧ ତଥା ଅଭିଭୂତ କରିଥିଲା, ନିମ୍ନରେ ପ୍ରଦତ୍ତ ଅଭିମତରୁ ତାହା ବେଶ୍ ଜଣାପଡ଼ିବ ।

'ଭକ୍ତକିଶୋର ପଟ୍ଟନାୟକ ଓଡ଼ିଆ ନାଟ୍ୟ-ସାହିତ୍ୟର ଇତିହାସରେ କେବଳ ଏକ ନାମ ନୁହେଁ, ଏକ ଅନୁଷ୍ଠାନ । ତାଙ୍କର ଅଧିକାଂଶ ନାଟକର ପୃଷ୍ଠଭୂମି ହେଲା ସୁଶ୍ୟାମଳ ପଲ୍ଲୀ, କେନ୍ଦ୍ରବିନ୍ଦୁ ହେଲା ପାରିବାରିକ ଜୀବନର ଦ୍ୱନ୍ଦ୍ୱ ଏବଂ ପରିସମାପ୍ତି ହେଲା ଏକ ନିର୍ମଳ ଆଦର୍ଶବାଦ । ସାମାଜିକ ଅନ୍ୟାୟ ଓ ଅନୈତିକତା ପ୍ରତି ତାଙ୍କର ତୀକ୍ଷ୍ଣ କଟାକ୍ଷ ଈର୍ଷା କିମ୍ବା ହିଂସା ଭାବରେ ଜର୍ଜରିତ ନୁହେଁ; ଏକ ଗଭୀର ମାନବିକତାରେ ଅମ୍ଳ-ମଧୁର । ଏହି ନିବିଡ଼ ମାନବିକତା, ଗଭୀର ବେଦନାବୋଧ ଏପରି ଭାବରେ ପରିବ୍ୟାପ୍ତ ହୋଇ ରହିଥାଏ ଯେ, ନାଟକ ଦର୍ଶନ ଶେଷରେ ଦର୍ଶକର ହୃଦୟ ଏକ ମହାନୁଭବତାର ସ୍ପର୍ଶରେ ଆର୍ଦ୍ର ହୋଇଉଠେ । ତାଙ୍କର ନିରାଡ଼ମ୍ବର, ସରଳ ଓ ତୀକ୍ଷ୍ଣ ସଂଳାପର ଏକ ସ୍ୱତନ୍ତ୍ର ଯାଦୁକରୀ ମାୟା ଅଛି – ଯାହାର ଆବେଦନ ସାଧାରଣ ଜନତା ପାଇଁ ଅପରିହାର୍ଯ୍ୟ । ଏଇଥିପାଇଁ ତାଙ୍କର 'ଅତିଥି', 'ମାଣିକଯୋଡ଼ି', 'ବେନାମୀ', ଓ 'ଗରିବ' ପ୍ରଭୃତି ନାଟକ ଦର୍ଶକମାନଙ୍କ ପାଖରେ ଏତେ ବେଶି ଭାବରେ ପ୍ରିୟତମ ।

'ଅଶୋକସ୍ତମ୍ଭ' ଅଭିନୟ ପରେ କିନ୍ତୁ ଏହି ଶ୍ରେଣୀର ବହୁ ଦର୍ଶକ ବିସ୍ମିତ ହୋଇଥିବାର ଅନୁଯୋଗ ମୁଁ ଶୁଣିଛି । ଗତାନୁଗତିକତାର ସରଳ ସୂଚୀଗ୍ରନ୍ଥି ଭକ୍ତକିଶୋର ବ୍ୟତିକ୍ରମର ଏକ ସ୍ତରରେ ପହଞ୍ଚି ଯାଇଛନ୍ତି । ଅଶୋକସ୍ତମ୍ଭରେ ସେ ଅତି ମାତ୍ରାରେ ସମାଜ ସଚେତନ ହୋଇ ପଡ଼ିଛନ୍ତି । 'ମାଣିକଯୋଡ଼ି'ର ଆଦର୍ଶବାଦୀ 'ସିଦ୍ଧାର୍ଥ' ଆବରଣ ବଦଳାଇ 'ଅଶୋକସ୍ତମ୍ଭ'ରେ 'ବୀରେନ୍ଦ୍ର' ଭୂମିକାକୁ ଅବତରଣ କରିଆସିଛୁ । ଦେହରେ ତାର ସାହେବୀ ପରିଧେୟ, ମୁହଁରେ ତାର 'ଶାନ୍ତି' 'ଶାନ୍ତି' ଧ୍ୱନି ବଦଳରେ 'ଯୁଦ୍ଧ' 'ଯୁଦ୍ଧ' ଭାବ । ଏ ଯୁଦ୍ଧ 'ସତ୍ୟ-ଶିବ-ସୁନ୍ଦର' ବିରୁଦ୍ଧରେ ନୁହେଁ, ଏ ଯୁଦ୍ଧ ମଣିଷ ଭିତରର ସେଇ 'ପଶୁବଳ' ବିରୁଦ୍ଧରେ । 'ଅଶୋକସ୍ତମ୍ଭ'ର ଦ୍ୱିତୀୟାର୍ଦ୍ଧରେ ସେ ଯେଉଁ ସମାଧାନର ପଥ ନିର୍ଦ୍ଦେଶ କରିଛନ୍ତି; ମୋର ବିଶ୍ୱାସ, – ଆମର ଆଗାମୀ ଇତିହାସ ତାହା ଯଥାର୍ଥ ବୋଲି ପ୍ରମାଣିତ କରିବ । ଶାନ୍ତି ଓ ବିପ୍ଳବ, ସଭ୍ୟତା ଓ ସଂଘର୍ଷ ଗୋଟିଏ

ମୁଦ୍ରାର ଦୁଇପାର୍ଶ୍ୱ ଭଳି । ଗୋଟିକୁ ଛାଡ଼ି ଅନ୍ୟଟିର ବିକାଶ ସମ୍ଭବ ନୁହେଁ । ଇତିହାସର ଏଇ ଅପ୍ରିୟ ସତ୍ୟକୁ ଭକ୍ତକିଶୋର ଦୂରଦୃଷ୍ଟିର ସହିତ ଫୁଟାଇ ପାରିଛନ୍ତି । ଏହି ଦୃଷ୍ଟିରୁ 'ଅଶୋକ ସ୍ତମ୍ଭ' ଆମ ନାଟ୍ୟ ସାହିତ୍ୟର ଅନ୍ଧକାର ରାଜପଥରେ ଏକ ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ ।

ଭକ୍ତ କିଶୋରଙ୍କର ସୃଜନଶୀଳ ଲେଖନୀ ଆମ ନାଟ୍ୟ ସାହିତ୍ୟକୁ ଆହୁରି ଅଧିକ କିଛି ଦାନ କରିବ, ଏହି ଆଶାରେ ମୁଁ ଆଜି ପ୍ରତୀକ୍ଷମାଣ ।"

ଗଙ୍ଗାମନ୍ଦିର, କଟକ ସ୍ୱା-ବିଭୂତି ପଟ୍ଟନାୟକ

ଡକ୍ଟର ଶ୍ରୀମାନ୍ ବିଭୂତି ପଟ୍ଟନାୟକ (ଅବସର ପ୍ରାପ୍ତ ପ୍ରାଧ୍ୟାପକ, ଓଡ଼ିଆ ବିଭାଗ) ଉତ୍କଳର ଉପନ୍ୟାସ କ୍ଷେତ୍ରରେ ଯେଉଁ ପ୍ରତିଷ୍ଠା ଓ ଯଶ ଅର୍ଜନ କରିଛନ୍ତି, ତାର ପଟାନ୍ତର ନାହିଁ । ତରୁଣ ବୟସରୁ ଆଜି ପୁଣି ସେ ବହୁସଂଖ୍ୟକ ଉପନ୍ୟାସ ଓ ଗଳ୍ପ ଲେଖି ଆମ ସାହିତ୍ୟ ଭଣ୍ଡାରକୁ ବିଶେଷ ସମୃଦ୍ଧ କରିଛନ୍ତି । ତାଙ୍କ ଲିଖିତ 'ଚପଳଛନ୍ଦା', 'ପରସ୍ତୁରୁଷ', 'ବଧୂ ନିରୁପମା' 'ସୁଲତାନା' ପ୍ରଭୃତି ଉପନ୍ୟାସ ପାଠକ ମହଲରେ ବିଶେଷ ଆଦୃତ । ଏହି ଜନପ୍ରିୟ ଔପନ୍ୟାସିକଙ୍କୁ ମୁଁ ମୋ ସାନଭାଇ ଭଳି ସ୍ନେହ କରେ । ମୁଁ Christ College Student's Unionର President ଥିବା ସମୟରେ ସେ ଥିଲେ General Secretary.

୧୯୬୯ ମସିହାରେ Orissa Secretariateର Home Department Cultural Association "ଅଶୋକସ୍ତମ୍ଭ" ନାଟକକୁ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ଅଭିନୟ କରିଥିଲେ । ଅଭିନୟ ଏତେ ପ୍ରଭାବଶାଳୀ ହୋଇଥିଲା ଯେ, ଉକ୍ତ ନାଟକକୁ ନୂଆଦିଲ୍ଲୀର Song and Drama Division ବାଛିଥିଲେ 13th National Drama Festival ରେ ବାଙ୍ଗାଲୋର ସ୍ଥିତ 'ରବୀନ୍ଦ୍ର କଳାକ୍ଷେତ୍ର' ରେ ଅଭିନୀତ କରାଇବା ପାଇଁ । ସେଠାରେ ଉର୍ଦ୍ଦୁ, ହିନ୍ଦି, ତେଲୁଗୁ, ତାମିଲ, ବଙ୍ଗଳା ଓ ଗୁଜୁରାଟି ପ୍ରଭୃତି ନାଟକ ସବୁ ଗୋଟିଏ ଗୋଟିଏ ରାତୀ ପାଇଁ ଅଭିନୀତ ହେବାର ବ୍ୟବସ୍ଥା କରାଯାଇଥିଲା । ଏବଂ 'ଅଶୋକସ୍ତମ୍ଭ' ମଧ୍ୟ ତା ୬।୧୨।୧୯୭୦ରିଖରେ ପ୍ରଦର୍ଶିତ ହେବାର ସ୍ଥିରୀକୃତ ହୋଇଥିଲା । ତଦନୁଯାୟୀ Home Department ର କଳାକାରମାନେ ବାଙ୍ଗାଲୋର ଯାଇଥିଲେ । ସ୍ୱତନ୍ତ୍ର ଭାବେ ଆମନ୍ତ୍ରିତ ହୋଇ ମୁଁ ମଧ୍ୟ ସେମାନଙ୍କ ସହିତ ଯାଇଥିଲି ।

ଟ୍ରେନରେ ଗଲାବେଳେ ଉତ୍କଣ୍ଠା ଓ ଆନନ୍ଦ ଭରି ରହିଥାଏ ମୋ ମନ ଭିତରେ । ରେଲ ଲାଇନର ଉଭୟ ପାର୍ଶ୍ୱର ଦୃଶ୍ୟ, ବିଶେଷତଃ ପାଚିଲା କ୍ଷେତର

ଶସ୍ୟ ସମ୍ଭାର ହୃଦୟରେ ଅପରିସୀମ ଆନନ୍ଦ ସୃଷ୍ଟି କରୁଥାଏ । ଅପରାହ୍ଣରେ ଝିଲ ଝିଲ ପବନର ଢେଉ ଯେତେବେଳେ ପକ୍ୱୋନ୍ମୁଖ ଧାନ୍ୟ କେଣ୍ଡାମାନଙ୍କୁ ଦୋହଲାଇ ଦେଇ ଲୁଚକାଳି ଖେଳୁଥାଏ, ମୋ ଅଜାଣତରେ ମୁଖରୁ ନିସୃତ ହେଉଥାଏ ବଙ୍ଗୀୟ କବିଙ୍କର ଅନବଦ୍ୟ ରଚନା—

"ଧନ ଧାନ୍ୟେ ପୁଷ୍ପେ ଭରା,
ଆମାଦେର ଏଇ ବସୁନ୍ଧରା,
ଏମନ୍ ଦେଶ୍ଟି କୋଥାୟ ଖୁଁଜେ
ପାବେନାକୋ ତୁମି;
ସକଲ ଦେଶେର ରାଣୀ ସେ ଯେ—
ଆମାର ଜନ୍ମଭୂମି !
କୋଥାୟ ଏମନ୍ ହରିତ୍ କ୍ଷେତ
ଆକାଶ ତଲେ ମେଶେ,
ଏମନ୍ ଧାନେର ଉପର ଢେଉ ଖେଲେ ଯାୟ
ବାତାସ୍ କା'ର ଦେଶେ ?
ଏମନ୍ ଦେଶ୍ଟି କୋଥାୟ ଖୁଁଜେ
ପାବେ ନା'କ ତୁମି,
ସକଲ ଦେଶେର୍ ସେରା ସେ ଯେ
ଆମାର ଜନ୍ମଭୂମି !"

ଟ୍ରେନ୍ ଚାଲିଛି । ଚାଲିଛି ତ ଚାଲିଛି ଅବିରାମ ଗତିରେ । କେତେ ସହର, ପଲ୍ଲୀ, ଜନପଦ, ବନ-ଜଙ୍ଗଲ, ପର୍ବତ ଶ୍ରେଣୀ ଅତିକ୍ରମ କରି ଏକମୁହାଁ ହୋଇ ଧାଇଁଛି ଲୌହ-ଶକଟ । ତାଠୁଁ ଚଞ୍ଚଳ ମୋ ମନର ଗତି । ବାଙ୍ଗାଲୋର ପହଞ୍ଚିବ, ଅଣଓଡ଼ିଆ ଦର୍ଶକଙ୍କ ଆଖି ଆଗରେ ମୋ ନାଟକର ଅଭିନୟ ଦେଖିବ, ସେମାନେ ବୁଝିପାରିବେ କି ନାହିଁ, କିପରି ଭାବରେ ଗ୍ରହଣ କରିବେ, ଏଇପ୍ରକାର ନାନା ଚିନ୍ତା ମୋ ହୃଦୟକୁ ଉଦ୍‌ବେଳିତ କରୁଥାଏ । ଅଭିନୟ ସାଫଲ୍ୟମଣ୍ଡିତ ହେଉ, ଭଗବାନଙ୍କ ନିକଟରେ କେବଳ ଏତିକି ପ୍ରାର୍ଥନା !

ଯଥା ସମୟରେ Drop Scene ଉଠିଲା, ଆରମ୍ଭ ହେଲା 'ଅଶୋକସ୍ତମ୍ଭ' ନାଟକର ପ୍ରଥମ ଦୃଶ୍ୟ । 'ରବୀନ୍ଦ୍ର କଳାକ୍ଷେତ୍ର'ର Audirorium ଦର୍ଶକରେ ଭରପୂର । ସମସ୍ତେ ଅଣଓଡ଼ିଆ, କିନ୍ତୁ ଓଡ଼ିଆ ନାଟକ ଦେଖିବା ଲାଗି ବିଶେଷ ଆଗ୍ରହୀ । ଆବାଳବୃଦ୍ଧ-ବନିତା ସମସ୍ତଙ୍କର ଗଭୀର ଉତ୍କଣ୍ଠା । ଦୃଶ୍ୟ ପରେ

ଦୃଶ୍ୟ ସୃଷ୍ଟିହୁଏ । ମଞ୍ଚରେ ଦ୍ୱୈତ ଭୂମିକାର ଅବତାରଣା । ହସ, କାନ୍ଦ, ବୀଭତ୍ସ, କାରୁଣ୍ୟ ସକଳ ରସରେ ଭରା 'ଅଶୋକସ୍ତମ୍ଭ'; ପ୍ରେକ୍ଷାଳୟରେ 'ଉଁ' ଶବ୍ଦଟିଏ ନାହିଁ, ଛୁଞ୍ଚିଟିଏ ପଡ଼ିଲେ ଆଓ୍ୱାଜ ଶୁଭିବ । ଇଂରାଜୀରେ ଯାହାକୁ କହନ୍ତି 'Pindrop Silence' । ହାସ୍ୟରସ ଥିବା ସ୍ଥଳରେ ଦର୍ଶକମାନେ ପ୍ରାଣଖୋଲି ହସୁଛନ୍ତି, Tragedy Scene ରେ ମ୍ରିୟମାଣ ହୋଇ ପ୍ରେକ୍ଷାଳୟରେ ନାରୀମାନେ ନାକ ସୁଁ ସୁଁ କରି କାନ୍ଦୁଛନ୍ତି, ରୁମାଲରେ ଆଖିରୁ ଲୁହପୋଛି ପକାଉଛନ୍ତି । ସେ ମଧ୍ୟ ଏକ ଅଭିନବ ଦୃଶ୍ୟ, ଏକ ଅଭୁଲା ସ୍ମୃତି ! ନାଟକ ସକାଳପରେ ପ୍ରଥମ ଧାଡ଼ିରେ ମୋ ସହିତ ବସିଥିବା ବାଙ୍ଗାଲୋରର ବିଖ୍ୟାତ ନାଟ୍ୟକାର ଓ ସାହିତ୍ୟିକଙ୍କୁ ପଚାରିଲି (ଶ୍ରୀଯୁକ୍ତ ପର୍ବତ ମହାରାଜ), "ନାଟକ କେମିତି ଲାଗିଲା ?"

ସେ ଖୁସିରେ ଗଦ୍ ଗଦ୍ ହୋଇ ମୋତେ କୁଣ୍ଢାଇ ପକାଇ କହିଲେ, "ଓଃ, ଅତି ଚମତ୍କାର ! Simply marvellous !"

"ଓଡ଼ିଆ ଭାଷା ବୁଝିପାରିଲେ ?" ମୁଁ ପଚାରିଲି । "କାହିଁକି ନ ବୁଝିବୁ ? ସଂସ୍କୃତ ତ ମୂଳଭାଷା, ଅସୁବିଧା କ'ଣ ? ହେଲେ ଯୋଉଠି ଆପଣ ଗାଉଁଲି ଭାଷା ବ୍ୟବହାର କରିଛନ୍ତି···ସେଇଠି ଭାବକୁ ଧରି ବୁଝିବାକୁ ହେଉଛି । ଦେଖିଲେନି, ଦର୍ଶକମାନେ ସମସ୍ତେ କେମିତି ନିସ୍ତବ୍ଧ ହୋଇ ନାଟକ ଉପଭୋଗ କରୁଥିଲେ ?" ହସି ହସି ସେ କହିଲେ ।

"ଧନ୍ୟବାଦ । ମୋ ଶ୍ରମ ତାହେଲେ ସାର୍ଥକ ହୋଇଛି" । "କିନ୍ତୁ କୁହନ୍ତୁ ତ ମିଷ୍ଟର ପଟ୍ଟନାୟକ ! ଆମ ଦେଶରେ ନକ୍ସାଲିଜମ୍ ଆସିବା ପୂର୍ବରୁ ଆପଣ ନାଟକରେ ତାର ପରିକଳ୍ପନା କଲେ କେମିତି :"

"ମୁଁ ତ କେଉଁଠି Naxalite ବୋଲି ଶବ୍ଦ ବ୍ୟବହାର କରିନାହିଁ ! କେବଳ ଉଗ୍ରବାଦ ଦ୍ୱାରା ସମାଜରେ ଥିବା କ୍ଷତିକାରକ ଅନୁଷ୍ଠାନମାନଙ୍କୁ ଭାଙ୍ଗି-ମାରିବା ପରେ ସାମ୍ୟବାଦ ପ୍ରତିଷ୍ଠା କରିବାର ସୁଯୋଗ ସୃଷ୍ଟି କରିହେବା ଉଚିତ ବୋଲି କହିଛି !"

ଭଦ୍ରଲୋକଙ୍କ ସହିତ ଇଂରାଜୀରେ ଏ ସମସ୍ତ କଥୋପକଥନ ହୋଇଥିଲା । ଆଉ କେତେଜଣ ଭଦ୍ରବ୍ୟକ୍ତି ମଧ୍ୟ ଆମ ଆଲୋଚନାକୁ ଶୁଣୁଥିଲେ । ତା'ପରଦିନ ବାଙ୍ଗାଲୋର୍‌ର କେତେକ ସମ୍ବାଦପତ୍ର "ଅଶୋକସ୍ତମ୍ଭ" ନାଟକ ସମ୍ପର୍କରେ ତାଙ୍କର ମତାମତ ପ୍ରକାଶ କରିଥିଲେ । ମୋଟ ଉପରେ ଉକ୍ତ ନାଟକର ଅଭିନୟ ସେଠା ଦର୍ଶକଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା ।

'ଅଶୋକ ସ୍ତମ୍ଭ' ସମ୍ପର୍କରେ ଓଡ଼ିଶା Directorate of Public Relation and Tourism ଙ୍କ ମତ ହେଉଛି —

"The story of the play 'Asoka Stambha' is typical of so many of our villages where vested interests are responsible for blocking the development and progress which will bring a life of independence and dignity of the villagers. The motto of "Satyameva Jayate" accompanying the National Symbol of 'Asoka stambha' can be achieved only with firmness; that is what the play attempts to say.

The writer Sri Bhanja Kishore Pattanaik has written a number of plays for professional troupes and has considerable experience of projecting contemporary social messages through his works."

'କୁଳବୋହୂ' ନାଟକର ବିଷୟବସ୍ତୁ ସ୍ତ୍ରୀ ଶିକ୍ଷା ଓ ନାରୀ ପ୍ରଗତି ଉପରେ ଆଧାରିତ । କେବଳ ପୁରୁଷର ଦାସୀ ହୋଇ ଘରକୋଣରେ ଜୀବନ ବିତାଇବା ଓ ଭାଗ୍ୟକୁ ଆଦରି ଘର-ସଂସାର କରିବା ନାରୀ ଜୀବନର ଆଦର୍ଶ ନୁହେଁ । ପ୍ରସିଦ୍ଧ ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦ୍ରଙ୍କ 'ସୁହାଗୀ' ଗଳ୍ପକୁ ଅବଲମ୍ବନ କରି ମୁଁ ଏହି ନାଟକଟିକୁ ରଚନା କରିଥିଲି । ଏକ କ୍ଷୁଦ୍ର ଗଳ୍ପକୁ ମଞ୍ଚ ଉପଯୋଗୀ ନାଟକରେ ରୂପାନ୍ତରିତ କରିବାରେ ଏହା ଥିଲା ମୋର ପ୍ରଥମ ପ୍ରଚେଷ୍ଟା । ଏହି ନାଟକ ଲାଗି ଓଡ଼ିଶା ଶିକ୍ଷା ନିର୍ଦ୍ଦେଶାଳୟର ପ୍ରୌଢ଼ଶିକ୍ଷା ବିଭାଗ ମୋତେ ଏକ ସହସ୍ର ମୁଦ୍ରା ପ୍ରଦାନ କରିଥିଲେ ଏବଂ ଏହାର ପ୍ରକାଶନ ଦାୟିତ୍ୱ ମଧ୍ୟ ଗ୍ରହଣ କରିଥିଲେ । ଉକ୍ତ ବିଭାଗ ଅନ୍ନପୂର୍ଣ୍ଣା ଥିଏଟର 'ବି' ଗ୍ରୁପ ଦ୍ୱାରା 'କୁଳବୋହୂ' ନାଟକକୁ ଓଡ଼ିଶାର ବିଭିନ୍ନ ସ୍ଥାନରେ (ବିଶେଷ କରି ପୁରପଲ୍ଲୀରେ) ଅଭିନୀତ କରାଇଥିଲେ । ଏହି ନାଟକ ଆମ ଗାଁ 'ଶାନ୍ତି ଡ୍ରାମାଟିକ୍ କ୍ଲବ' ରଙ୍ଗମଞ୍ଚରେ ମଧ୍ୟ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଦ୍ୱାରା ସଫଳତାର ସହ ଅଭିନୀତ ହୋଇଥିଲା । ଭାରତ ସରକାର ଏହାର ହିନ୍ଦୀ ଅନୁବାଦ କରାଇ ଓଡ଼ିଶା ବାହାରେ କେତେକ ସ୍ଥାନରେ ମଧ୍ୟ ମଞ୍ଚସ୍ଥ କରାଇଥିଲେ । ନାରୀ-ପ୍ରଗତି ବ୍ୟତିରେକେ ଶାନ୍ତ, ସରଳ, ଏବଂ ସୁସ୍ଥ ସମାଜ ଗଠନର ପ୍ରତିଛବି ଏଥିରେ ପ୍ରଦର୍ଶିତ ହୋଇଅଛି ।

---

—ତିନି—

ଜାନୁଆରୀ ୨୬ ତାରିଖ ଓ ଅଗଷ୍ଟ ୧୫ ତାରିଖ ସାଧାରଣତନ୍ତ୍ର ଦିବସ ଓ ସ୍ୱାଧୀନତା ଦିବସ ଉପଲକ୍ଷେ ପ୍ରତିବର୍ଷ ଏହି ଦୁଇଦିନ ଆମ ରାଜ୍ୟପାଳ ରାଜ୍ୟର ବିଶିଷ୍ଟ କବି, ନାଟ୍ୟକାର, ଶିଳ୍ପୀ, ସାହିତ୍ୟିକ ସମେତ ବିଭିନ୍ନ ଉଚ୍ଚପଦାଧିକାରୀ ଅଫିସର, ସମାଜସେବୀ ଓ ସାମ୍ବାଦିକମାନଙ୍କୁ ଟି' ଭୋଜିରେ ରାଜଭବନକୁ ନିମନ୍ତ୍ରଣ କରିବାର ଏକ ବିଶେଷ ପରମ୍ପରା ରହିଛି । ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ ପରିଷଦର ସଦସ୍ୟବୃନ୍ଦ ଏବଂ ବହୁ ଖ୍ୟାତନାମା ବ୍ୟକ୍ତି ସେଠାରେ ଉପସ୍ଥିତ ହୋଇ ଭାବର ଆଦାନ ପ୍ରଦାନ କରନ୍ତି । ରାଜଭବନରୁ ନିମନ୍ତ୍ରଣ ପତ୍ର ସହିତ କାର୍ଯ୍ୟସୂଚୀ ଏବଂ Car Pass ମଧ୍ୟ ଆସିଥାଏ । ଅନେକଥର ଏଭଳି ଟି' ଭୋଜିରେ ମୁଁ ଯୋଗଦାନ କରିଛି ଏବଂ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ଆଳାପ ଆଲୋଚନା କରିବାର ସୌଭାଗ୍ୟ ଲାଭ କରିଛି ।

ଏଠାରେ ମୁଁ ଯେଉଁ ବିଶେଷ ଘଟଣା ଉଲ୍ଲେଖ କରିବାକୁ ଯାଉଛି, ତାର କିଛିଟା ସ୍ୱାତନ୍ତ୍ର୍ୟ ରହିଛି । ସେତେବେଳେ ଓଡ଼ିଶା ହାଇକୋର୍ଟର ମାନ୍ୟବର ମୁଖ୍ୟ-ବିଚାରପତି ମିଷ୍ଟର ଖଲିଲ ଅହମ୍ମଦ କାର୍ଯ୍ୟ-ନିର୍ବାହୀ ରାଜ୍ୟପାଳ ଭାବେ ସାମୟିକ ଭୁବନେଶ୍ୱର ରାଜଭବନରେ ଅବସ୍ଥାନ କରୁଥାନ୍ତି । ଦିନେ ରାଜଭବନରୁ ମୋ ପାଖକୁ ଟି' ଭୋଜିରେ ଯୋଗ ଦେବା ଲାଗି ଏକ ନିମନ୍ତ୍ରଣ ପତ୍ର ଆସିଲା । ଯେଉଁଦିନ ପାଇଁ ନିମନ୍ତ୍ରଣ କରାଯାଇଥାଏ, ସେଦିନ ସାଧାରଣତନ୍ତ୍ର ବା ସ୍ୱାଧୀନତା ଦିବସ ନୁହେଁ । କେତେକ କବି, ସାହିତ୍ୟିକ, ଲେଖକଙ୍କୁ ବ୍ୟକ୍ତିଗତ ଭାବେ ଭେଟିବାର ଇଚ୍ଛା ରାଜ୍ୟପାଳଙ୍କର ଥାଏ ବୋଲି ନିମନ୍ତ୍ରଣ ପତ୍ରରେ ଉଲ୍ଲେଖ କରାଯାଇଥାଏ ।

ରାଜଭବନରେ ଆମେ ପ୍ରାୟ ଚାଳିଶ ଜଣ ସମବେତ ହୋଇଥାଉଁ । ମାନ୍ୟବର ରାଜ୍ୟପାଳ ଆମ୍ଭମାନଙ୍କ ସହିତ ଜଣ ଜଣ କରି କରମର୍ଦ୍ଦନ କଲେ । ପ୍ରଥମରୁ ପ୍ରଖ୍ୟାତ ବ୍ୟବସାୟୀ ତଥା ସିନେମାହଲ୍‌ର ମାଲିକ ଶ୍ରୀଯୁକ୍ତ ଗୋକୁଳ କାନୁନ୍‌ଗୋ ପ୍ରତ୍ୟେକଙ୍କର ପରିଚୟ ଦେଉଥାନ୍ତି । ମିଷ୍ଟର ଖଲିଲ ଅହମ୍ମଦ ଯେତେବେଳେ ମୋ ବିଷୟରେ ଗୋକୁଳ ବାବୁଙ୍କଠୁଁ ସବୁ ଶୁଣିଲେ ଓ ଏତେ-ଗୁଡ଼ିଏ ନାଟକର ରଚୟିତା ବୋଲି ଜାଣିଲେ, ହସି ହସି ମୋ ସହିତ କରମର୍ଦ୍ଦନ କରି କହିଲେ, "ମହାଶୟ, ଆପଣ ଓଡ଼ିଶାର ଜଣେ ସୁନାମଧନ୍ୟ ନାଟ୍ୟକାର, ଆପଣଙ୍କର ତ କୋଠାବାଡ଼ି, ଗାଡ଼ି ଥିବ, ସେକ୍ରେଟେରି, ଷ୍ଟେନୋ ଥିବେ !" ମିଷ୍ଟର ଅହମ୍ମଦ ବୋଧହୁଏ ଓଡ଼ିଆ ଲେଖକଙ୍କୁ ମନେ ମନେ ବିଲାତ, ଆମେରିକା, ଫ୍ରାନ୍‌ସ, ରୁଷିଆ ଦେଶର ସାହିତ୍ୟିକମାନଙ୍କ ସହିତ ତୁଳନା କରି

ଏ କଥା କହିଲେ । ସ୍ୱର୍ଗତ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କର ଏକ ପ୍ରବନ୍ଧ "ଓଡ଼ିଆରେ ଲେଖିବ କାହିଁକି ?" ବିଷୟଟି ମୋର ମନେପଡ଼ିଲା । ମୁଁ ରାଜ୍ୟପାଳଙ୍କୁ ଓଡ଼ିଆ ସାହିତ୍ୟିକଙ୍କ କୃତି ଲବ୍ଧ ଅର୍ଥ (ରୟାଲଟି) ଉପାର୍ଜନର ଏକ ତୁଳନାତ୍ମକ ସମୀକ୍ଷା ଜଣାଇଲି । ଆମ ରାଜ୍ୟର ପୁସ୍ତକ ପ୍ରକାଶକମାନେ ସାଧାରଣତଃ ଶକ୍ତିଶାଳୀ; ସେମାନଙ୍କ ମଧ୍ୟରୁ ଅନେକଙ୍କର ଦାମୀ କୋଠା, ଗାଡ଼ି ଅଛି ଓ ସେମାନେ ମଧ୍ୟ ନିଜସ୍ୱ ପ୍ରେସ୍‌ର ଅଧିକାରୀ । ଯେଉଁମାନଙ୍କର ସାହିତ୍ୟ କୃତୀକୁ ନେଇ ପ୍ରକାଶ କରି ସେମାନେ ବ୍ୟବସାୟ କରନ୍ତି, ସେହି 'ବିଚରା' ଲେଖକ କୁଳଙ୍କ ଅବସ୍ଥା "ଯେଉଁ ତିମିରେକୁ ସେହି ତିମିରେ !" ସେମାନେ ତାଙ୍କର ନ୍ୟାଯ୍ୟ ରୟାଲ୍‌ଟି ତ ଯଥାସମୟରେ ପାଆନ୍ତି ନାହିଁ, ପରନ୍ତୁ କୋଟିଏ ସଂସ୍କରଣରେ କେତେ ପୁସ୍ତକ ମୁଦ୍ରିତ ହୋଇଥାଏ ତାର ଉଲ୍ଲେଖ ମଧ୍ୟ ନଥାଏ । ଏପରିକି ଏକ ନୂତନ ସଂସ୍କରଣ ଛାପିବା ପୂର୍ବରୁ ପ୍ରକାଶକମାନେ ଲେଖକର ଅନୁମତି ଲୋଡ଼ିବା ତ ଦୂରର କଥା, ଜଣାଇବାର ସାଧାରଣ ଲୌକିକତା ମଧ୍ୟ ସେମାନଙ୍କର ନଥାଏ । ଏଭଳି ଅବସ୍ଥାରେ ବିଚରା ନାସ୍ୱର ସାହିତ୍ୟିକ ଆଉ ଗାଡ଼ିରେ ଘୋଡ଼ା ଯୋଚିବ କିଆଁକୁ ? ଏ ଅନୁଭୂତି କେବଳ ଏକାକୀ ମୋର ନୁହେଁ, ବହୁ ଖ୍ୟାତନାମା, ବୟୋବୃଦ୍ଧ ଲେଖକମାନଙ୍କଠୁଁ ଏ ଅଭିଯୋଗ ମୁଁ ଶୁଣିଛି । ମୋର ଏ ପ୍ରକାର ବକ୍ତବ୍ୟରେ ମାନ୍ୟବର ରାଜ୍ୟପାଳ ଯେତିକି ବିସ୍ମିତ ହେଲେ ସେତିକି ବ୍ୟଥିତ ହେଲେ ମଧ୍ୟ । ଏହି ସମସ୍ତ ଅନୁଭୂତିକୁ ନେଇ ୰ କାଳନ୍ଦୀ ଚରଣ ପାଣିଗ୍ରାହୀ ବହୁ ବର୍ଷ ତଳେ ଲେଖିଥିଲେ, "ଓଡ଼ିଆରେ ଲେଖିବ କାହିଁକି ?" "ଜଳାପଟା ଅଭିଯାନ"ରେ ଲେଖକମାନେ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ପାଇବା ପାଇଁ ଯେଉଁଭଳି ସରକାରୀ ଆଇନ କାନୁନ୍‌ର ବ୍ୟବସ୍ଥା ରହିଛି, ସେହିଭଳି କିଛି ଅଙ୍କୁଶ ଯଦି ପୁସ୍ତକ ପ୍ରକାଶକ ଓ ବିକ୍ରେତାମାନଙ୍କ ଉପରେ ରହନ୍ତା; ତା'ହେଲେ ଦୁଃସ୍ଥ ଲେଖକମାନେ ନିର୍ଯ୍ୟାତନା, ଅସମ୍ମାନ, ଅବଜ୍ଞା ଏବଂ ଧୋକ୍‌କା-ବାଜିର ଶିକାର ନ ହୋଇ କିଛିଟା ସାନ୍ତ୍ୱନା ଲାଭ କରନ୍ତେ ଅବା ! ପ୍ରତ୍ୟହ ପୂଜା କରାଯାଏ ସାହିତ୍ୟ-ସ୍ରଷ୍ଟାମାନଙ୍କର ଫୁଲତୋଡ଼ା ଆଉ ଶସ୍ତା କରତାଳି ମଧ୍ୟରେ ଓ ଲମ୍ବା ଭାଷଣ ମାଧ୍ୟମରେ ଅଜସ୍ର ଗୁଣଗାନ କରାଯାଏ ସାଧକମାନଙ୍କର, କିନ୍ତୁ ଅର୍ଥ ଉପାର୍ଜନ କରନ୍ତି ପ୍ରକାଶକ ବନ୍ଧୁଗଣ, କିଛି ନ ପାଇବାର ଛଳନା କରି, ପୁସ୍ତକ ବିକ୍ରୀ ନ ହେବାର ବାହାନା ଦେଖାଇ ! ଜନପ୍ରିୟ ସରକାରଙ୍କୁ ଅନୁରୋଧ, ସେମାନେ ଏ ଦିଗରେ କିଛି ବିଧି-ବ୍ୟବସ୍ଥା କରନ୍ତୁ. ନଚେତ୍ ପୃଷ୍ଠପୋଷକତା ଅଭାବରୁ ଆମ ପେଷାଦାର ରଙ୍ଗମଞ୍ଚ ମାଟିରେ ମିଶିଯିବା ପରି, ସାହିତ୍ୟ ସାଧକଙ୍କ (କେତେକ ବ୍ୟତିକ୍ରମକୁ ବାଦ୍ ଦେଇ) ପ୍ରତିଭା ଯେ ଅଚିରେ ଧରାଶାୟୀ ହୋଇ ବିଳୟ ଭଜିବ···ଏଥିରେ ସନ୍ଦେହ ନାହିଁ ! ପ୍ରକାଶକ ଭାଇ-ମାନଙ୍କୁ ମୋର ମଧ୍ୟ ଅନୁରୋଧ, ସେମାନେ କାଗଜର ଚଢ଼ାଦାମ୍ ତଥା ଚଢ଼ା

ଛାପାଖର୍ଚ୍ଚ ବହନ କରିବାକୁ ଯେମିତି କୁଣ୍ଠାବୋଧ କରନ୍ତି ନାହିଁ, ସେମିତି ଲେଖକର ପ୍ରାପ୍ୟ ଦେବାରେ ଆଦୌ କୁଣ୍ଠିତ ହୁଅନ୍ତୁ ନାହିଁ । ଏହା ଫଳରେ ଭାଷା-ସାହିତ୍ୟର ମାନ ବୃଦ୍ଧି ହେବ । ପାଠକ ସଂଖ୍ୟା ସୀମିତ ଅବା ପୁସ୍ତକ ଆଦୌ ବିକ୍ରୀ ହେଉନାହିଁ କହିବା ଅପେକ୍ଷା ପୁସ୍ତକ ପ୍ରକାଶନ ନ କରିବା ବରଂ ଭଲ । ମୋର "ଅତିଥି" ନାଟକରେ ମୁଁ ଉପରୋକ୍ତ ବିଷୟର ଏକ ବ୍ୟଙ୍ଗାତ୍ମକ ଚିତ୍ର ପ୍ରଦାନ କରିଛି ।

( "ଅତିଥି" ନାଟକରେ 'କବି ହରକିଶୋର'ଙ୍କ dialouge ଦ୍ରଷ୍ଟବ୍ୟ ) ।

ପ୍ରଜାତନ୍ତ୍ର ପ୍ରଚାରର ସମିତି ଆନୁକୂଲ୍ୟରେ ବିଷୁବ ମିଳନ ଉତ୍ସବ ନୂଆକରି ଆରମ୍ଭ କରାଯାଇଥାଏ । ୧୯୬୧ ମସିହାରେ ସେହି ବର୍ଷର ଶ୍ରେଷ୍ଠ ନାଟ୍ୟକାର ଭାବେ ମୋତେ ସମ୍ମାନିତ କରାଯାଇଥିଲା । ଚେୟାରମ୍ୟାନ୍ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ପ୍ରଧାନ ଅତିଥି ଥିଲେ ବିଖ୍ୟାତ ହିନ୍ଦି ଲେଖକ ତଥା ଗବେଷକ ଶ୍ରୀଯୁକ୍ତ ହିମାଂଶୁଙ୍କର ଯୋଶୀ ମହୋଦୟ । ସେହି ସମୟରେ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ (ଏବର ମୁଖ୍ୟମନ୍ତ୍ରୀ) "ପ୍ରଜାତନ୍ତ୍ର"ର ସମ୍ପାଦକ ଥିଲେ । ତାଙ୍କର ସକ୍ରିୟ ସହଯୋଗରେ ମୋର "ଗରିବ" ନାଟକ (୧୯୪୯ରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଦ୍ଵାରା ଅଭିନୀତ) 'ପ୍ରଜାତନ୍ତ୍ର'ର କର୍ମଚାରୀମାନଙ୍କ ଦ୍ଵାରା ସେହିଦିନ ସନ୍ଧ୍ୟାରେ ପ୍ରଜାତନ୍ତ୍ର ପରିସର ମଧ୍ୟରେ ଅଭିନୀତ ହୋଇଥିଲା (୧୧୪୮) । ନାଟକ ଅଭିନୟ ଏପରି ଜୀବନ୍ତ ଓ ପ୍ରାଣସ୍ପର୍ଶୀ ହୋଇଥିଲା ଯେ, ଡକ୍ଟର ଯୋଶୀ, ଡକ୍ଟର ମହତାବ ଓ ବିଷୁବମିଳନର ଉପସ୍ଥିତ ଅତିଥିବୃନ୍ଦ ନାଟକର ଉଚ୍ଚପ୍ରଶଂସା କରିଥିଲେ । ଧନୀ ଓ ଗରିବ, ମାଲିକ ଓ ମଜୁରିଆ ମଧ୍ୟରେ ସଂଘର୍ଷ ଓ ସମାଧାନର ବିଚକ୍ଷଣ ପନ୍ଥା ହିଁ ନାଟକର ମୁଖ୍ୟ ବିଷୟବସ୍ତୁ ଥିଲା ।

ନାଟକ ଆରମ୍ଭରେ ଘୋଷକଙ୍କ କଣ୍ଠସ୍ଵର ଶୁଭିଲା—

"ଯୋଜନା ଚାଲିଛି ହିମାଳୟଠାରୁ
କନ୍ୟା-କୁମାରୀ ଯାଏ;
ସର୍ବହରା ଆଜି ନିଃସମ୍ବଳ ହୋଇ
ଅନ୍ତର ଗୀତ ଗାଏ" ।

(କଣ୍ଠକିଶୋର)

× × × × ×

ସବୁ ଯୋଜନାର ସଫଳତା ନିମନ୍ତେ ରାଜନୈତିକ ସଦିଚ୍ଛା, ସାମାଜିକ ସଚେତନତା ଓ ଆର୍ଥିକ ସ୍ଵଚ୍ଛଳତା ଏକାନ୍ତ ଅପରିହାର୍ଯ୍ୟ । ତା'ନହେଲେ ଯୋଜନା

ପରେ ଯୋଜନା ତା' ବାଟରେ ଚାଲିଥିବ, ସର୍ବହରା ଗରିବ ସବୁଦିନେ ଗରିବ ହୋଇ ରହିଥିବ ଓ 'ଗରିବ ହଟାଓ' ସ୍ଲୋଗାନ୍ କେବଳ ଏକ ସ୍ଲୋଗାନ ହୋଇ ରହିଥିବ ।

ଓଡ଼ିଶା କୃଷି ମହାବିଦ୍ୟାଳୟ (OUAT)ର ଛାତ୍ରମାନେ ମୋର "ଶିକାରୀ" ନାଟକ ଅଭିନୟ କରିବା ପାଇଁ ମୋ ଅନୁମତି ନେଇଥିଲେ । "ଶିକାରୀ" ମୋର ବହୁବର୍ଷ ତଳର ଲେଖା । ଏହା ଏକ ଅପରାଧମୂଳକ ନାଟକ (Crime Drama). ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଅଭିନେତା ତଥା ନିର୍ଦ୍ଦେଶକ ଶ୍ରୀ ସାମୁଏଲ ସାହୁ (ବାବି)ଙ୍କ ଦକ୍ଷ ନିର୍ଦ୍ଦେଶନାରେ ଉକ୍ତ ନାଟକ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଦ୍ୱାରା ଅଭିନୀତ ହୋଇଥିଲା । ଏତେ ପୁରୁଣା ନାଟକଟିକୁ କୃଷି ମହାବିଦ୍ୟାଳୟ (ଭୁବନେଶ୍ୱର)ର ଛାତ୍ରମାନେ ମଞ୍ଚସ୍ଥ କରିବାକୁ ମନସ୍ଥ କରିଥିବାରୁ ସେମାନଙ୍କୁ ମୁଁ ସାଗ୍ରହ ଅନୁମତି ପ୍ରଦାନ କରିଥିଲି ।

ମୁଖ୍ୟ-ଅତିଥି ଭାବେ ସେମାନେ ମୋତେ ନିମନ୍ତ୍ରଣ କରିଥିଲେ । ସେଠାରେ ପହଞ୍ଚିବାରୁ ଉକ୍ତ ବିଭାଗର Vice-Chancellor ତଥା ପ୍ରଖ୍ୟାତ I.A S. ଅଫିସର ଶ୍ରୀଯୁକ୍ତ ବିମଳ ଚନ୍ଦ୍ର ମିଶ୍ର ମୋତେ ଆଦରରେ ପାଛୋଟି ନେଇଥିଲେ । ନାଟକ ଶେଷ ହେବା ପର୍ଯ୍ୟନ୍ତ ମୋ ପାଖରେ ବସି, ରାତ୍ରୀ ଭୋଜନ ପରେ ମୋତେ କାର୍‌ରେ କଟକ ପଠାଇବା ସମୟେ ବିଦାୟ ନେଇଥିଲେ । ବିମଳବାବୁ ଜଣେ କର୍ମନିଷ୍ଠ, ସଚ୍ଚୋଟ ଶାସକ ଭାବେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ଅଧସ୍ତନ କର୍ମଚାରୀମାନେ ତାଙ୍କୁ ଭୟ କରୁଥିଲେ, କାରଣ କର୍ତ୍ତବ୍ୟରେ ଅବହେଳାକୁ ସେ ଆଦୌ କ୍ଷମା ଦେଉନଥିଲେ । ଦୁର୍ନୀତିଗ୍ରସ୍ତ ଅଫିସରମାନେ ତାଙ୍କ ନାଁ ଶୁଣିଲେ ଭୟରେ ଥରୁଥିଲେ । ମାତ୍ର ଯେଉଁମାନେ ସଚ୍ଚୋଟ ଓ କର୍ତ୍ତବ୍ୟପରାୟଣ, ସେମାନଙ୍କ ପ୍ରତି ତାଙ୍କର ଗଭୀର ବିଶ୍ୱାସ ଏବଂ ଅତୁଟ ଶ୍ରଦ୍ଧା ଥିଲା । ଉକ୍ତ ରାତିରେ ସେ ଯେତିକି ସମୟ ମୋ ସହିତ କଟାଇଥିଲେ, ତାଙ୍କ ମଧୁର ବଚନ ଏବଂ ସସ୍ନେହ ବ୍ୟବହାର ମୋତେ ଅଭିଭୂତ କରିଥିଲା । ସେତେବେଳେ ମୁଁ ମନେ ମନେ ଭାବୁଥିଲି, ଏହିଭଳି ଅଫିସର ଅନ୍ତତଃ କେତେଜଣ ଯଦି ରାଜ୍ୟ ଶାସନ କରନ୍ତେ, ତା'ହେଲେ ପ୍ରଭୂତ ଉନ୍ନତି ସାଧିତ ହୋଇପାରନ୍ତା । ସରକାରୀ କାର୍ଯ୍ୟରେ ଆଦୌ ଶିଥିଳତା ପରିଲକ୍ଷିତ ହୁଅନ୍ତା ନାହିଁ ।

'ଶିକାରୀ' ନାଟକ ସମ୍ବନ୍ଧରେ ଦି' ପଦ କହି ଏ ବିଷୟରେ ପୂର୍ଣ୍ଣଚ୍ଛେଦ ଟାଣିବି । ଖଳ ଚରିତ୍ର ସମାଜର କି କ୍ଷତି ଘଟାଇପାରେ, କି ଦୌରାତ୍ମ୍ୟ ସୃଷ୍ଟି କରିପାରେ ତାହାହିଁ ଥିଲା ଏହି ନାଟକର ମୁଖ୍ୟ ବିଷୟବସ୍ତୁ । ଜାଲନୋଟ୍ କାରବାର, ଠକେଇ, ଧପ୍‌ପାବାଜି, ନାରୀଜାତି ପ୍ରତି ଅବିଚାର ନାଟକରେ ଉକ୍ରଣ୍ଠା ବୃଦ୍ଧି କରିବା ସହିତ suspense ସୃଷ୍ଟି କରିଛି । ମୁଦ୍ରାସ୍ଫୀତିର

କ୍ଷୁପଣେଶାମ ଜପଣ ଶକ୍ତୁର ଅର୍ଥନୀତକୁ ଚୂର୍ମାର କରଦଏ, ତାହା ଉକ୍ତ ନାଟକରେ ପ୍ରତଫଳତ ହୋଇଛି ।

ଗ୍ଯୁହମାନଙ୍କ ଦ୍ୱାରା ନାଟକ ପ୍ରଦର୍ଶନ ଅତ ଚମତ୍କାର ହୋଇଥିଲା ।

---

—ଗ୍ୟର—

୰ ଅଶ୍ୱିନୀକୁମାର ଘୋଷ, ୰ କାଳୀଚରଣ ପଟ୍ଟନାୟକ ଓ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ, ୰ ଡା. ଅଦ୍ୱୈତଚନ୍ଦ୍ର ମହାନ୍ତ ମୋଟ଼ି ବୟସରେ ଅନେକ ବଡ଼ । ସେମାନଙ୍କର ନାଟକ ସବୁ ଅନ୍ନପୂର୍ଣ୍ଣା 'ଏ' ଓ 'ବି' ଗ୍ରୁପ୍ ଏବଂ ଓଡ଼ିଶା ଆର୍ଟ ଥିଏଟରରେ ଅଭିନୀତ ହେଉଥିଲା ।

ମୋ ସମବୟସର ତଥା ସମକାଳୀନ ନାଟ୍ୟକାରମାନଙ୍କ ମଧ୍ୟରେ ୰ରାମଚନ୍ଦ୍ର ମିଶ୍ର, ଶ୍ରୀଯୁକ୍ତ ମନୋରଞ୍ଜନ ଦାସ ଓ ଶ୍ରୀଯୁକ୍ତ ଗୋପାଳ ଛୋଟରାୟ ଅନ୍ୟତମ । ଅନ୍ୟାନ୍ୟ ତରୁଣ ନାଟକ ଲେଖକମାନଙ୍କ ମଧ୍ୟରୁ ସର୍ବଶ୍ରୀ ଭୁବନେଶ୍ୱର ମହାପାତ୍ର, ଆନନ୍ଦଶଙ୍କର ଦାସ, ନୀଳକଣ୍ଠ ମିଶ୍ର, ଧନେଶ୍ୱର ପଟ୍ଟନାୟକ, ବିଜୟ ମିଶ୍ର, ଯଦୁନାଥ ଦାଶମହାପାତ୍ର, ଡା. ବସନ୍ତ କୁମାର ମହାପାତ୍ର, ଅଧ୍ୟାପକ ନାରାୟଣ ପ୍ରସାଦ ରାୟ, ରଜତ କୁମାର କର, ପୂର୍ଣ୍ଣଚନ୍ଦ୍ର କାନୁନଗୋ, ସୋମନାଥ ପାଲ, ଡଃ ବନହୋରୀ ପଣ୍ଡା, ରଞ୍ଜିତ ପଟ୍ଟନାୟକ, ବିଶ୍ୱଜିତ ଦାସ, ରମେଶ ଚନ୍ଦ୍ର ପାଣିଗ୍ରାହୀ, ଅଧ୍ୟାପକ କାର୍ତ୍ତିକ ଚନ୍ଦ୍ର ରଥ, ଅଧ୍ୟାପକ ରତ୍ନାକର ଚଇନି, ଅଧ୍ୟାପକ ନାରାୟଣ ରାୟ ମହାପାତ୍ର, ଶାରଦା ପ୍ରସନ୍ନ ନାୟକ, ନରସିଂହ ମହାପାତ୍ର, ଅଧ୍ୟାପକ ବିଜୟ କୁମାର ଶତପଥି, ବିଶ୍ୱଭୂଷଣ ହରିଚନ୍ଦନ, ଡ. ହେମନ୍ତ କୁମାର ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ସର୍ବଶ୍ରୀ ଉଦୟନାଥ ମିଶ୍ର, ଡକ୍ଟର ପ୍ରସନ୍ନ କୁମାର ମିଶ୍ର ବ୍ୟୋମକେଶ ତ୍ରିପାଠୀ, ଡକ୍ଟର ସୁବୋଧ ପଟ୍ଟନାୟକ, ପ୍ରଫୁଲ୍ଲ କୁମାର ରଥ ବଳରାମ ମିଶ୍ର, ସ୍ୱର୍ଗତ କମଳଲୋଚନ ମହାନ୍ତ, ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତ, ଲକ୍ଷ୍ମୀଧର ନାୟକ, ଡଃ ପ୍ରାଣବନ୍ଧୁ କର, ରାମଚନ୍ଦ୍ର ମହାପାତ୍ର ଓ ଆହୁରି ଅନେକ ପୁରାତନ ଓ ଆଧୁନିକ ନାଟ୍ୟକାରଙ୍କ ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

'ବାବାଜି' ଓ 'ସତୀ' ନାଟକର ରଚୟିତା ସ୍ୱର୍ଗତ ଜଗମୋହନ ଲାଲ୍‌ଙ୍କୁ ଓଡ଼ିଶାର ଆଦି ନାଟ୍ୟକାର ଭାବେ ସ୍ୱୀକୃତି ଦିଆଯାଇଅଛି । ତାଙ୍କ ପରେ ପରେ

ଯେଉଁ ନାଟ୍ୟକାରଗଣ ଓଡ଼ିଆ ନାଟକ କ୍ଷେତ୍ରରେ ଆତ୍ମପ୍ରକାଶ କରିଥିଲେ, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ରାମଶଙ୍କର ରାୟ (କାଞ୍ଚି କାବେରୀ, କଂସ ବଧ, କଳିକାଳ, କାଞ୍ଚନମାଳ, ବୃନ୍ଦାବନ ପ୍ରଭୃତିର ରଚୟିତା), ସ୍ୱର୍ଗତ କାମପାଳ ମିଶ୍ର ('ସୀତା ବିବାହ', 'ହରିଶ୍ଚନ୍ଦ୍ର', 'ବସନ୍ତ ଲତିକା' ନାଟକର ଲେଖକ) ଓ ପଣ୍ଡିତ ଗୋଦାବରୀଶ ମିଶ୍ର, ('ପୁରୁଷୋତ୍ତମ ଦେବ' ଓ 'ମୁକୁନ୍ଦଦେବ'ର ରଚୟିତା) ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ ।

କିନ୍ତୁ ନାଟ୍ୟାଚାର୍ଯ୍ୟ ଅଶ୍ୱିନୀ କୁମାର ଘୋଷ ତାଙ୍କର ଚପଳ ନାଟ୍ୟସୃଷ୍ଟି ସହିତ ଓଡ଼ିଆ ନାଟକରେ ଯେଉଁ ଯୁଗ ସୃଷ୍ଟି କରିଥିଲେ, ତାହା ତାଙ୍କୁ ଚିର-ସ୍ମରଣୀୟ କରିଅଛି । ୧୯୧୫ ମସିହାରୁ ଆରମ୍ଭ କରି ଭୀଷ୍ମ, ମେଓଜ, ସାବିତ୍ରୀ, କୋଣାର୍କ, କେଶରୀଗଡ଼, କଳାପାହାଡ଼, ପାଇକ ପୁଅ, ତାଳମହଳ, ଶ୍ରୀଧର, ଶ୍ରୀଚୈତନ୍ୟ, ଚଣ୍ଡାଳୁଣୀ ଲାଲବେଗ, ବନ୍ଧୁ ମହାନ୍ତି, ଅଭିନୟ, ଚଷାଝିଅ ପ୍ରଭୃତି ତାଙ୍କର ଅନେକ ନାଟକ ଓଡ଼ିଆ ନାଟ୍ୟ ସାହିତ୍ୟକୁ ଯଥେଷ୍ଟ ସମୃଦ୍ଧ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ନାଟକର ଏପରି କୌଣସି ବିଭାଗ ନାହିଁ (ଗଳ୍ପ, ସଂଳାପ, ଶୈଳୀ) ଯେଉଁଥିରେ ସେ ତାଙ୍କର ଯାଦୁକରୀ ମାୟା ବିସ୍ତାର କରିନାହାନ୍ତି ! ବିଶେଷତଃ ଐତିହାସିକ ନାଟକ ରଚନାରେ ତାଙ୍କ କୃତି ନଭିଷ୍ଟମ୍ଭି ।

ଅଶ୍ୱିନୀବାବୁଙ୍କ ପରବର୍ତ୍ତୀ ଯଶସ୍ୱୀ ନାଟ୍ୟକାର ହେଉଛନ୍ତି କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ତାଙ୍କୁ ଆଧୁନିକ ନାଟକର ଆଦ୍ୟସ୍ରଷ୍ଟା ବୋଲି କୁହାଯାଏ । ସରଳ ମନଛୁଆଁ ସଂଳାପ, ସୁସଂଗତ ସଙ୍ଗୀତ ସଂଯୋଜନା ଓ ଚରିତ୍ର ଚିତ୍ରଣରେ କାଳୀଚରଣଙ୍କ ନାଟକ ଗୌରବାନ୍ୱିତ । ପ୍ରଥମରୁ ଭାରତର ଆଦି ନାଟ୍ୟଗୁରୁ ଭରତମୁନିଙ୍କ ପଦାଙ୍କ ଅନୁସରଣ କରି ନାଟକ ରଚନା କରିଥିଲେହେଁ ପରବର୍ତ୍ତୀ କାଳରେ ସେ ତାଙ୍କ ନିଜସ୍ୱ ଶୈଳୀରେ ନାଟକ ରଚନା କରିଥିଲେ ଏବଂ ତାଙ୍କର ଓଡ଼ିଶା ଆର୍ଟ ଥିଏଟରରେ ପରିବେଷଣ କରିଥିଲେ । ତାଙ୍କର ଉଚ୍ଚ-ପ୍ରଶଂସିତ ନାଟକମାନଙ୍କ ମଧ୍ୟରେ ଭାତ (ହିନ୍ଦି ସିନେମା 'କଙ୍ଗନ' ଅନୁସରଣରେ), ଅଠରବଡ଼ ଜଗନ୍ନାଥ ଦାସ, ଫଟାଭୂଇଁ, ଅଭିଯାନ, ଜୟଦେବ ପ୍ରଭୃତି ନାଟ୍ୟ ସାହିତ୍ୟକୁ ଯଥାର୍ଥରେ ମହନୀୟ ଅବଦାନ । ସେ ମଧ୍ୟ ଜଣେ ଉଚ୍ଚକୋଟୀର ସଙ୍ଗୀତ ଲେଖକ ତଥା ସଙ୍ଗୀତଜ୍ଞ ଥିଲେ । ତାଙ୍କ ନାଟକରେ ପଦ୍ୟର ଛନ୍ଦ ମାଧୁରୀ ଓ ସଙ୍ଗୀତର ସ୍ୱର-ଝଙ୍କାର ଅନୁଭୂତ ହୁଏ । 'ରକ୍ତମାଟି'ରେ ତାଙ୍କର ବଳିଷ୍ଠ ସଂଳାପର ଏକ ନମୁନା ; "ମଳୟ ଆଜି ପୁଞ୍ଜିବାଦର ଦୁର୍ଗନ୍ଧରେ ବିଷାକ୍ତ ! ଜୀବନଟା ଯେଉଁଠି ମରଣ, ସାଧନା ଯେଉଁଠି ଅଭିଶାପ, ପ୍ରକୃତି ଯେଉଁଠି ବିକୃତ, ବିବେକ ସେଇଠି ଆତ୍ମହତ୍ୟା କରେ ।" ତାଙ୍କ ରଚିତ 'ଚୁମ୍ବନ'

ଓ 'ରକ୍ଷୀ' ନାଟକରେ ବଙ୍ଗଳାର ଷ୍ପଷ୍ଟ ଛାପ ପରିଲକ୍ଷିତ ହେଲେ ମଧ୍ୟ, ଆପଣାର ସ୍ୱକୀୟ ଭଙ୍ଗୀ କାଳରେ ସେସବୁକୁ ସେ ଆପଣାର କରିପାରିଛନ୍ତି ।

ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ (ଧର୍ମପତ୍ନୀ, ଜଲସ୍ରୁକ, ଜମିଦାର ନାଟକର ଲେଖକ), ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ (ବସ୍ତ୍ରର, ଲକ୍ଷସ୍ୱର୍ଗ, ମାତୃପୂଜା, ମିରକାଶୀମ, ଇମିତ ବ ହୁଏ ପ୍ରଭୃତି ବହୁ ନାଟକର ରଚୟିତା), ଓ ଅଧ୍ୟାପକ ପ୍ରାଣବନ୍ଧୁ କର (ଶ୍ୱେତପଦ୍ମ, ମାଟିର ମଣିଷ ପ୍ରଭୃତିର ନାଟ୍ୟକାର), ୰ କମଳ ଲୋଚନ ମହାନ୍ତି (ସ୍ୱାମୀ ସ୍ତ୍ରୀ, ଆଜାଦୀ, ଡାକବଙ୍ଗଳା, ମାତୃମଙ୍ଗଳ କେନ୍ଦ୍ର ଓ ରାମ ରହିମ୍ ପ୍ରଭୃତିର ଲେଖକ) ଓ ଶ୍ରୀଯୁକ୍ତ ଉଦୟନାଥ ମିଶ୍ର (କୋଇଲି କର୍ମାନ, ସ୍ୱେଚ୍ଛାମରଣ ସମିତ, ମଧୂରେଣ, ତୃଷ୍ଣି ଓ ଆଦର୍ଶ-ପରିବାର ପ୍ରଭୃତି ନାଟକର ରଚୟିତା) ମଧ୍ୟ ସେମାନଙ୍କ ନାଟକ ଦ୍ୱାରା ଅଗଣିତ ଦର୍ଶକଙ୍କୁ ଆନନ୍ଦ ଦେବା ସହିତ ନିଜ ନିଜ କ୍ଷେତ୍ରରେ ଯଶସ୍ୱୀ ହୋଇଥିଲେ ।

ମୁଁ ଏକାନ୍ତଭାବରେ ଜଣେ ନାଟ୍ୟକାର; ଗବେଷକ କିମ୍ବା ସମାଲୋଚକ ନୁହେଁ । ଉପରେ ଯେଉଁ ନାଟ୍ୟକାରମାନଙ୍କ ନାମ ଲେଖିଛି, ସେମାନେ ସ୍ୱକୀୟ ପ୍ରତିଭାରେ ଗୌରବର ଅଧିକାରୀ । ଆଉ ଯେଉଁମାନଙ୍କର ନାମ ମୁଁ ଦେଇନାହିଁ ତାହା ହୁଏତ ମୋ ଅଜ୍ଞତସାରରେ ହୋଇଥିବ । କାହା ପ୍ରତି ବିଦ୍ୱେଷ ବା ଅସୂୟାଭାବ ପୋଷଣ କରିନାହିଁ । ସମାଲୋଚନା କରିବାର ଅଧିକାର ମୋର ନ ଥିବାରୁ ମୁଁ କାହାର ରଚନାବଳୀର ସମ୍ପୂର୍ଣ୍ଣ ତାଲିକା ଦେଇନାହିଁ ବା କୌଣସି ନାଟକର ଦୋଷ ତ୍ରୁଟି ଦର୍ଶାଇନାହିଁ । ଯେଉଁମାନେ ଯଥେଷ୍ଟ ଭାବରେ ଗବେଷଣା କରିଛନ୍ତି, ପରୀକ୍ଷା ନିରୀକ୍ଷା କରିଛନ୍ତି, ସେମାନେ ଦୋଷ ଗୁଣର ପ୍ରକୃତ ସମୀକ୍ଷକ । ମୋ ପକ୍ଷରେ ତାହା ସମ୍ପୂର୍ଣ୍ଣ ଧୃଷ୍ଟତା ହେବ ବୋଲି ସେ ବିଷୟରୁ କ୍ଷାନ୍ତ ହେଲି ।

ମୋ ସମସାମୟିକ ନାଟ୍ୟକାରଗଣ ହେଉଛନ୍ତି ଶ୍ରୀ ମନୋରଞ୍ଜନ ଦାସ, ଶ୍ରୀ ବ୍ୟୋମକେଶ ତ୍ରିପାଠୀ, ୰ ରାମଚନ୍ଦ୍ର ମିଶ୍ର ଓ ଗୋପାଳ ଛୋଟରାୟ । ଶ୍ରୀ ଦାସଙ୍କର ନାଟକ 'ଯୌବନ' ଓ 'ବକ୍ସି ଜଗବନ୍ଧୁ' ଅନ୍ନପୂର୍ଣ୍ଣା 'ଏ' ଗ୍ରୁପଦ୍ୱାରା ଅତି ସଫଳତାର ସହିତ ଅଭିନୀତ ହୋଇଅଛି । ଏହା ବ୍ୟତୀତ ତାଙ୍କର 'ଅଗଷ୍ଟ ନଅ', 'ଆଗାମୀ'ଠୁ ଆରମ୍ଭ କରି 'ଅରଣ୍ୟ ଫସଲ୍', 'ଅମୃତସ୍ୟ ପୁତ୍ର' ଓ 'କାଠଘୋଡ଼ା' ପର୍ଯ୍ୟନ୍ତ ବହୁ ନାଟକ ସୌଖୀନ ରଙ୍ଗମଞ୍ଚରେ ଅଭିନୀତ ହୋଇ ବିଶେଷ ପ୍ରତିଷ୍ଠା ଅର୍ଜନ କରିଥିଲା । ଶ୍ରୀ ବ୍ୟୋମକେଶ ତ୍ରିପାଠୀ ଥିଲେ ଏକାଧାରରେ ଅଭିନେତା, ନିର୍ଦ୍ଦେଶକ ଓ ନାଟ୍ୟକାର । ତାଙ୍କର ଉଚ୍ଚ ପ୍ରଶଂସିତ ନାଟକମାନଙ୍କ ମଧ୍ୟରେ କଂସା କବାଟ, ଏକ ଦୁଇ ତିନ୍, ସିଂହଦ୍ୱାର, ଚୋରାବାଲି ପ୍ରଭୃତି ବିଶେଷ

ଉଲ୍ଲେଖଯୋଗ୍ୟ । ସେ ତାଙ୍କ ଅଭିନେତା ଜୀବନର ଅଧିକାଂଶ କାଳ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ରେ ବିତାଇଛନ୍ତି ।

୬ ରାମଚନ୍ଦ୍ର ମିଶ୍ର ଓ ଶ୍ରୀଯୁକ୍ତ ଗୋପାଳ ଛୋଟରାୟଙ୍କ ସହିତ ମୋର ବ୍ୟକ୍ତିଗତ ବନ୍ଧୁତା ଥିଲା । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ ଦ୍ୱାରା ଅଭିନୀତ ଅଜସ୍ର ନାଟକ ମଧ୍ୟରେ ଆମ ତିନିଜଣଙ୍କର ନାଟକର ସଂଖ୍ୟା ଅଧିକ ଥିଲା । ଜନତା ରଙ୍ଗମଞ୍ଚ ଓ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ରେ ମଧ୍ୟ ଆମମାନଙ୍କର ବହୁ ନାଟକ ମଞ୍ଚସ୍ଥ ହୋଇ ଖ୍ୟାତି ଲାଭ କରିଥିଲା । ଏ ସମ୍ପର୍କରେ ପୂର୍ବରୁ ଆଭାସ ଦେଇସାରିଛି । ଯାହାହେଉ, ଆମ ତିନିଜଣଙ୍କର ନାଟ୍ୟସୃଷ୍ଟିକୁ ନେଇ ସେହି ସମୟରେ ନାଟକରେ "ସ୍ୱର୍ଣ୍ଣଯୁଗ" ପ୍ରତିଷ୍ଠିତ ହୋଇଥିଲା ବୋଲି ଡ. ହେମନ୍ତ କୁମାର ଦାସ ଓ ପ୍ରଫେସର ସର୍ବେଶ୍ୱର ଦାଶ ତାଙ୍କ ଆଲୋଚନା ଗ୍ରନ୍ଥରେ ଉଲ୍ଲେଖ କରି ଅଛନ୍ତି ।

"ଆଶାର କଥା ଯେ ଓଡ଼ିଆ ନାଟକର ସ୍ୱର୍ଣ୍ଣଯୁଗର ପ୍ରତିଷ୍ଠାତାତ୍ରୟୀ ରାମଚନ୍ଦ୍ର ମିଶ୍ର, ଭଞ୍ଜକିଶୋର ପଟ୍ଟନାୟକ ଏବଂ ଗୋପାଳ ଛୋଟରାୟ ସେମାନଙ୍କ ନାଟକରେ ଯେଉଁ ସମାଜର ଚିତ୍ର ଅଙ୍କନ କରିଛନ୍ତି, ତାହା ଓଡ଼ିଆ ସମାଜରୁ ଦୂରବର୍ତ୍ତୀ ନୁହେଁ । ଓଡ଼ିଆ ସମାଜର ଆଶା ଏବଂ ନୈରାଶ୍ୟର, ହସ ଏବଂ କାନ୍ଦର, ଉଲ୍ଲାସ ତଥା ଆଶଙ୍କାର ଯଥାଯଥ ଚିତ୍ର ଏମାନଙ୍କ ନାଟକରେ ପ୍ରତିଫଳିତ ହୋଇଛି । ନାଟ୍ୟାଦର୍ଶରେ ଏମାନେ ଆଦୌ ପାଶ୍ଚାତ୍ୟ-ଦର୍ଶନ ଦ୍ୱାରା ପ୍ରଭାବିତ ହୋଇନାହାନ୍ତି । ଓଡ଼ିଶାର ଏହି ନାଟ୍ୟକାର ତ୍ରୟୀ ମୁଖ୍ୟତଃ ଓଡ଼ିଆମାନଙ୍କ ପାଇଁ ହିଁ ନାଟକ ଲେଖିଛନ୍ତି । ଓଡ଼ିଆ ନାଟ୍ୟ ସାହିତ୍ୟ ସମୃଦ୍ଧ ହୋଇଛି ଏବଂ ଏକ ବଳିଷ୍ଠ ପରମ୍ପରା ମଧ୍ୟ ଏମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଛି ।"

—"ଓଡ଼ିଆ ନାଟକର ବିକାଶଧାରା" ଅଧ୍ୟାପକ ହେମନ୍ତ କୁମାର ଦାସ

"ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳରେ ଯେଉଁ ନାଟ୍ୟକାରଗଣ ଉତ୍କଳ ନାଟ୍ୟ ଭାରତୀଙ୍କୁ ନବ ନବ ବସନ ଭୂଷଣରେ ମଣ୍ଡିତ କରାଇ ଓଡ଼ିଆ ନାଟ୍ୟ ସାହିତ୍ୟର ଶ୍ରୀବୃଦ୍ଧି ସାଧନରେ ସହାୟକ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ରାମଚନ୍ଦ୍ର ମିଶ୍ର ଅଗ୍ରଗଣ୍ୟ ।" ( ମୂଲିଆ, ସେବତୀ, ଘର ସଂସାର, ଭାଇ ଭାଉଜ, ମମତା, କବିସୂର୍ଯ୍ୟ, ସାଇପଡ଼ିଶା, ନରୋତ୍ତମ ଦାସ କହେ, ପ୍ରଭୃତି ବହୁ ନାଟକର ରଚୟିତା) ।

—'ଓଡ଼ିଆ ନାଟକର ବିକାଶଧାରା' ଡକ୍ଟର ହେମନ୍ତ କୁମାର ଦାସ

"ଗୋପାଳ ଛୋଟରାୟ ଓଡ଼ିଆ ନାଟ୍ୟ ଜଗତରେ ଏକ ପ୍ରତିଷ୍ଠିତ ବ୍ୟକ୍ତି । ଅଗଣିତ ନାଟକ ଓ ନାଟ୍ୟରୂପ ରଚନା କରି ସେ ଜନେ ପ୍ରଶଂସାର ପାତ୍ର ହେବା

ସଙ୍ଗେ ସଙ୍ଗେ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।"(ଫେରିଆ, ପରକଲମ ପଥିକବନ୍ଧୁ, ନଷ୍ଟହବଣୀ, ଭରସା, ଶଙ୍ଖା ସିନ୍ଦୂର, ଅର୍ଦ୍ଧାଙ୍ଗିନୀ ପ୍ରଭୃତି ଅନେକ ଧ୍ୱନିବୋଟିର ନାଟକର ରଚୟିତା)

'ଓଡ଼ିଆ ନାଟକର ବିକାଶ ଧାରା'—ଅଧ୍ୟାପକ ହେମନ୍ତ କୁମାର ଦାସ

"ଏତିକି କୁହାଯାଇପାରେ, ପେଷାଦାର ରଙ୍ଗମଞ୍ଚ ପାଇଁ ନିଜର ଏକ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରି ତତ୍କାଳୀନ ଓଡ଼ିଆ ନାଟ୍ୟଜଗତ ଓ ରଙ୍ଗମଞ୍ଚର ଏକ ପ୍ରଚଣ୍ଡ ପ୍ରତିଭା ରୂପେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି ଭଞ୍ଜକିଶୋର ।

ଉତ୍ତାହାର—୧୯୮୪

ଓଡ଼ିଆ ନାଟ୍ୟସାହିତ୍ୟରେ ତାଙ୍କର ସ୍ଥାନ ନିରୂପଣ କରିବେ ଆମର ଉତ୍ତର-ପୁରୁଷ । କିନ୍ତୁ ଏହା ସ୍ପଷ୍ଟ ଯେ, ଓଡ଼ିଆ ନାଟ୍ୟ-ସାହିତ୍ୟକୁ ଶ୍ରୀମଣ୍ଡିତ କରିବାରେ ଭଞ୍ଜକିଶୋରଙ୍କର ଅବାରିତ ସାଧନା ଓ ପ୍ରତିଭା ଅନସ୍ୱୀକାର୍ଯ୍ୟ । ତତ୍ସହିତ ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଆଧୁନିକ ଓଡ଼ିଆ ନାଟକର ସ୍ରୋତକୁ ସହରରୁ ପଲ୍ଲୀମୁଖୀ କରିବାରେ ଅର୍ଥାତ୍ ପଲ୍ଲୀପ୍ରିୟ କରିବାରେ ନାଟ୍ୟକାର ଭଞ୍ଜକିଶୋରଙ୍କର କୁଶଳୀ ଲେଖନୀ ଏକାନ୍ତ ଭାବରେ ଦାୟୀ—ଏହାହିଁ ତାଙ୍କର ଗୌରବ । ଓଡ଼ିଆ ନାଟକର ଇତିହାସରେ ସେ ଏକ ଦୀପ୍ତ ଆଲୋକସ୍ତମ୍ଭ ଭାବରେ କାଳକାଳକୁ ଦଣ୍ଡାୟମାନ ରହିବେ ।"

—"ସପ୍ତ ସୁମନ", ଉତ୍କଳ ପାଠକ ସଂସଦ

ପାରମ୍ପରିକ ନାଟକ ରଚନାରେ ଆମ୍ଭେମାନେ ବ୍ୟସ୍ତ ହୋଇଥିବାବେଳେ, ନାଟକରେ ବିଭିନ୍ନ ପରୀକ୍ଷା, ନିରୀକ୍ଷା ତଥା ଉଦ୍ଭଟ ଚିନ୍ତାଧାରାର ପ୍ରୟୋଗ କ୍ଷେତ୍ରରେ ଯେଉଁମାନେ ବଳିଷ୍ଠ ଲେଖନୀ ଚାଳନା କରିଥିଲେ, ସେମାନଙ୍କ ମଧ୍ୟରେ ଶ୍ରୀ ମନୋରଞ୍ଜନ ଦାସ ଅଗ୍ରଗଣ୍ୟ । ସର୍ବଶ୍ରୀ ବିଜୟ ମିଶ୍ର, ବିଶ୍ୱଜିତ ଦାସ, ଡା. ସୁବୋଧ ପଟ୍ଟନାୟକ, କାର୍ତ୍ତିକଚନ୍ଦ୍ର ରଥ, ରମେଶ ପାଣିଗ୍ରାହୀ, ବିଶ୍ୱଭୂଷଣ ହରିଚନ୍ଦନ ପ୍ରଭୃତି ଅନେକ ନାଟ୍ୟକାର ଅତ୍ୟାଧୁନିକ ନାଟକ ରଚନା କ୍ଷେତ୍ରରେ ମଧ୍ୟ ଅଗ୍ରଣୀ ।

---

—ପାଞ୍ଚ—

ଜର୍ମାନ୍ କବି ଗେଟେଙ୍କ ଭାଷାରେ, "Whatever can be known of the heart of man, may be found in Shakespeare's plays". ଯେଉଁମାନେ ସେକ୍ସପିଅରଙ୍କ ନାଟକ ଅଧ୍ୟୟନ କରିଛନ୍ତି, ସେମାନେ ଉପରଲିଖିତ ଉକ୍ତିକୁ ନିର୍ଣ୍ଣିତ ଭାବରେ ସମର୍ଥନ କରିବେ । ଗ୍ରୀକ୍ ଓ ରୋମାନ୍ ପ୍ରାଚୀନ ଗଳ୍ପ, କାହାଣୀ ଓ କିମ୍ବଦନ୍ତୀରୁ ବିଷୟବସ୍ତୁ ସଂଗ୍ରହକରି ସେ ଯେଉଁଭଳି ନିଜର ଶିଳ୍ପୀ-ମାନସର ପରାକାଷ୍ଠା ଦେଖାଇ ନାଟକ ସବୁ ରଚନା କରିଛନ୍ତି ; ତାହା ତାଙ୍କର ଅଦ୍ଭୁତ କଳ୍ପନା ପ୍ରକଟିତ କରିବା ସହିତ ବିଶ୍ୱଦରବାରରେ ତାଙ୍କୁ ପୃଥିବୀର ଜନଗଣର ନାଟ୍ୟକାର ( Universal Poet ) ତଥା କବି ରୂପେ ପ୍ରତିଷ୍ଠିତ କରିଛି । ମାନବ ହୃଦୟର ଅତି ସୂକ୍ଷ୍ମତନ୍ତ୍ରୀକୁ ସ୍ପର୍ଶ କରିଭଳି ବିଭିନ୍ନ ଚରିତ୍ର ସୃଷ୍ଟିକରି କଳାପର ଯାଦୁକରୀ ମାୟାରେ ସେ ଯେଉଁ ଆଲେଖ୍ୟ ସବୁ ପୃଥିବୀର ମାନବ ଜାତି ସମ୍ମୁଖରେ ରଖିଯାଇଛନ୍ତି, ମନର କାନଭାସ୍ ଉପରେ ସେ ରଙ୍ଗର ବୈଚିତ୍ର୍ୟ କେବେହେଲେ ମଳିନ ହେବନାହିଁ । ଭାରତର ମହାକବି କାଳିଦାସ ସେକ୍ସପିଅରଙ୍କ ସମସାମୟିକ ନାଟ୍ୟକାର କେବଳ ନୁହନ୍ତି, ତାଙ୍କର ଅଦ୍ୱିତୀୟ ରଚନାବଳି ତାଙ୍କୁ ବିଶ୍ୱକବିଭାବେ ଉପସ୍ଥାପିତ କରିଛି । କବି ଗେଟେ ତାଙ୍କ ସନ୍ଦର୍ଭରେ ଉଭୟଙ୍କୁ ସମାନ ଆସନ ଦେଇଛନ୍ତି । ବିଖ୍ୟାତ କବି ମାୟାଧର ମାନସିଂହ ମଧ୍ୟ ସେକ୍ସପିଅର ଓ କାଳିଦାସଙ୍କର ଏକ ତୁଳନାତ୍ମକ ବିଚାର କରି ଇଂଲଣ୍ଡରେ ପିଏଚ୍. ଡି. ଲାଭ କରିପାରିଥିଲେ ।

ପୃଥିବୀ ପ୍ରସିଦ୍ଧ ଇଂରେଜ ନାଟ୍ୟକାର ଜର୍ଜ ବର୍ଣ୍ଣାର୍ଡ୍ ସ' କହିଥିଲେ, "I write plays with the deliberate object of converting the nation to my opinion." (ଅର୍ଥାତ୍, ସମଗ୍ର ଜାତିକୁ ମୋ ମତରେ ଦୀକ୍ଷିତ କରିବାକୁ ମୁଁ ନାଟକ ଲେଖିଥାଏ) । G.B.S. କହୁଥିଲେ, ତାଙ୍କ ଲେଖାକୁ ଯେଉଁମାନେ ବୁଝିପାରିବେ ନାହିଁ, ସେମାନେ ତାଙ୍କ ବହିକୁ ଛୁଇଁବା ଉଚିତ ନୁହେଁ । ଏହି ଦୃଷ୍ଟିରୁ ବୋଧହୁଏ ସେ ତାଙ୍କ ଜୀବନକାଳ ମଧ୍ୟରେ ତାଙ୍କର କୌଣସି ନାଟକକୁ ବିଶ୍ୱ-ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗ୍ରହଣ ନ କରିବାକୁ ପରାମର୍ଶ ଦେଇଥିଲେ । ଏଭଳି ଦାମ୍ଭିକତା (କେବଳ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବ୍ୟତୀତ) ଓ ଔଦ୍ଧତ୍ୟ ପୃଥିବୀରେ ଅନ୍ୟ କୌଣସି କବିଙ୍କଠାରେ ବୋଧହୁଏ ନଥିଲା । ତାଙ୍କର ନାଟକ ମାଧ୍ୟମରେ ସେ Shakespeareଙ୍କୁ ମଧ୍ୟ ନ୍ୟୁନ ବୋଲି ପ୍ରତିପାଦିତ କରିବାର ଚେଷ୍ଟା କରିଛନ୍ତି । ସେ ଯାହାହେଉ, ତାଙ୍କ ରଚିତ

'କ୍ୱିଓପେଟ୍ରା, 'ଜୋଆନ୍ ଅଫ୍ ଆର୍କ', 'ବ୍ୟାକ୍ ଟୁ ମାଥୁସେଲା' ପ୍ରଭୃତି ଇଂରାଜୀ ଭାଷା ସାହିତ୍ୟରେ ଗୋଟିଏ ଗୋଟିଏ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର joke ସମ୍ବନ୍ଧରେ ଗୋଟିଏ କଥା ଲେଖୁଛୁ । ତାଙ୍କର ଚେହେରା ଅସୁନ୍ଦର ଜାଣି ମଧ୍ୟ ଜଣେ ଇଂରେଜ ସୁନ୍ଦରୀ ଅଭିନେତ୍ରୀ ତାଙ୍କୁ ବିବାହ କରିବାର ପ୍ରସ୍ତାବ ଦେଲେ । କାରଣ ଜାଣିବାକୁ ଚାହିଁବାରୁ ବର୍ଣ୍ଣାଡସ'ଙ୍କୁ ସେହି ତରୁଣୀ କହିଲେ, "ଆମେ ବିବାହ କଲେ, ଆମର ଯେଉଁ ସନ୍ତାନ ହେବ ସେ ଆପଣଙ୍କ ପରି ଜ୍ଞାନୀ ଓ ମୋ ପରି ଅପରୂପ ରୂପବାନ ହେବ ।" ହସି ହସି ସ' ଉତ୍ତର ଦେଲେ, "ତା ନ ହୋଇ, ଯଦି ଓଲଟା ହୋଇଯାଏ ?" ତାଙ୍କ ବିଷୟରେ ବହୁତ କଥା କୁହାଯାଇପାରେ, ମାତ୍ର ମୋଟାମୋଟି ଭାବରେ କହିବାକୁ ଗଲେ, ତାଙ୍କ ନାଟକର ଉପସ୍ଥାପନା ଶୈଳୀ, ତୀକ୍ଷ୍ଣ-ବକ୍ର ପରିଭରା ସଂଳାପ (Satire) ଓ ମାନବରେ ଅବସ୍ଥିର, ଅତ୍ୟୋଗ୍ରର ବିରୁଦ୍ଧରେ ଶାଣିତ କଟାକ୍ଷ ଓ ନିଷ୍ଠୁର ସମାଲୋଚନା ଭଙ୍ଗୀ ତୁଳନାର ବାହାରେ ।

ଇଂରେଜୀ ଆଧୁନିକ ନାଟକ କ୍ଷେତ୍ରରେ ଇବସନ୍‌ଙ୍କୁ ଜନକ ବୋଲି କୁହାଯାଏ । ତାଙ୍କ ରଚିତ 'ଡଲସ୍ ହାଉସ୍' ଏକ ଅନବଦ୍ୟ ସୃଷ୍ଟି । ତାଙ୍କ ପୂର୍ବରୁ ଥିଲା, "The stranger the situation, the better the play;" କିନ୍ତୁ ଇବସନ୍ ପ୍ରତିପାଦିତ କଲେ, "The more familiar the situation, the more interesting the play." ଆମ ଓଡ଼ିଆ ନାଟକରେ ମଧ୍ୟ ଏହା ସତ୍ୟ ବୋଲି ପ୍ରତିପାଦିତ ହୋଇଛି । ଆମେ ଯେଉଁମାନେ ପାରମ୍ପରିକ ଓଡ଼ିଆ ନାଟକ ରଚନା କରୁଥିଲୁ, ଇବସନ୍‌ଙ୍କ ଭକ୍ତ ଆମ୍ଭମାନଙ୍କର ଧ୍ୟେୟ ଥିଲା ।

ଓଡ଼ିଆ ନାଟ୍ୟ-ସାହିତ୍ୟରେ ଆଧୁନିକ ନାଟକ ପରେ ପରେ ଅତ୍ୟାଧୁନିକ ନାଟକ ଓ ସର୍ବୋପରି ଉଦ୍ଭଟ ନାଟକ ଆତ୍ମପ୍ରକାଶ କଲା । କବିତା ରାଜ୍ୟରେ ଗୀତି-କବିତା, ଛନ୍ଦ-କବିତା ପରେ ପରେ ଗଦ୍ୟ-କବିତା ଓ ସର୍ବୋପରି ଅତ୍ୟାଧୁନିକ ଦୁର୍ବୋଧ କବିତା ଯେପରି ପ୍ରକଟିତ ହେଲା, ସେହିପରି ଉଦ୍ଭଟ ନାଟକ ମଧ୍ୟ ନାଟ୍ୟକ୍ଷେତ୍ରରେ ଧୀରେ ଧୀରେ ଆସ୍ଥାନ ଜମାଇବାକୁ ଲାଗିଲା । ଇଂରାଜୀରେ ସାମୁଏଲ ବେକେଟ୍‌ଙ୍କ "Waiting for Godot" ଏବଂ ବଙ୍ଗଳା ଭାଷାରେ "ଏବଂ ଇନ୍ଦ୍ରଜିତ" ଅନୁସରଣରେ ଓଡ଼ିଆ ଉଦ୍‌ଭଟ ନାଟକ ଆଜି ବାଧ୍ୟ ବାଧ୍ୟ ହୋଇ ପରି ଅତୀତକୁ ଫେରାଇ ପାରୁନାହିଁ, ଭବିଷ୍ୟତକୁ ଆଶା ରଖିପାରୁ ନାହିଁ, ବର୍ତ୍ତମାନକୁ ଚାହିଁ ମୁଣ୍ଡ ପିଟି ମରୁଛି ଖାଲି ଅସାର ଜୀବନ ଧରି ବଞ୍ଚି ରହିବା ପାଇଁ ।

ଉଦ୍‌ଭଟ ନାଟକରେ ମରଣଶୀଳ ମନୁଷ୍ୟକୁ ମୃତ୍ୟୁର ଭୟ ଦେଖାଇ, ଯୁଗ-ଯନ୍ତ୍ରଣା ନାଁରେ କେବଳ ଜୀବନ-ଯନ୍ତ୍ରଣା ତଥା ହତାଶାବାଦର ପରିପ୍ରକାଶ

କରିଗଲା । ସବର ପରପତ୍ନୀ ଏଇ ଉଦ୍‌ଭଟ ନାଟକରେ ମଣିଷକୁ ଛେଳି ଓ ଶବ ସହିତ ତୁଳନା କରିଗଲା, ଏବଂ ଅସହାୟ ଭବିଷ୍ୟତକୁ ଆମେ ଖାଲି ଖୋଜି ବୁଲିଲୁ । ଖାଲି Godotର ଆସିବା ଅପେକ୍ଷାରେ ଆମେ ପ୍ରତୀକ୍ଷମାଣ ହୋଇ ରହିଲୁ । କେବଳ ନୈରାଶ୍ୟବାଦ, କେବଳ frostration ଆମ ସାମାଜିକ ଜୀବନକୁ ଛିନ୍ନ ଭିନ୍ନ କରିଦେଲା । ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ଅନୁସରଣ ସହିତ ଉଦ୍‌ଭଟ ଚିନ୍ତାଧାରା ଆମକୁ ବିଭ୍ରାନ୍ତ କରିଦେଲା; ଆଶାର ଆଲୋକ-ବର୍ତ୍ତିକା ଆମଠୁ ଦୂରରୁ ଦୂରକୁ ଘୁଞ୍ଚିଗଲା ଏବଂ ଆମ ଚଳଣି, ଚିନ୍ତା ଓ ଚେତନା ଓଡ଼ିଆ ନାଟକରୁ ଉଭେଇଗଲା । ବୌଦ୍ଧିକ ଚେତନା ନାମରେ ଆଙ୍ଗିକ ଓ ଆତ୍ମିକ ଚେତନା ସବୁ ଏକାକାର ହୋଇଗଲା । "A nation is known by its theatre"—ଏହି ମହାନ୍ ସତ୍ୟ ବୃଥା ପ୍ରତିପାଦିତ ହେଲା । "ବସୁଧୈବ କୁଟୁମ୍ବକମ୍" ମାତକୁ ଗୁରୁ ବ୍ୟକ୍ତିକୈନ୍ଦ୍ରିକ ମନ ଆମର ଖାଲି ମରୀଚିକା ପଛରେ ଧାଇଁ ବୁଲିଲା ! ଏହା ସାଧାରଣ ଦର୍ଶକ ବା ପାଠକ ମନରେ ଆଲୋଡ଼ନ ବା ସମ୍ବେଦନ ସୃଷ୍ଟି କରି ପାରୁନାହିଁ । ମନୋରଞ୍ଜନ କରିବା ନାଟକର ପ୍ରଥମ ଯେଉଁ ଉଦ୍ଦେଶ୍ୟ ତାହା ସମ୍ପୂର୍ଣ୍ଣ ବିଫଳ ହୋଇଛି, ଏବଂ ଏଇ ତଥାକଥିତ ବୁଦ୍ଧିଜୀବୀର ବୌଦ୍ଧିକ ଜଙ୍ଗଲ ଭିତରେ ପଶିଆସିଲି ଓ ମଧ୍ୟମବର୍ଗ ଧରି ଆମେ ନିଜକୁ, ସମାଜକୁ ତଥା ସାରା ବିଶ୍ୱକୁ ଖୋଜି ବୁଲୁଛୁ । ଦେବା, ନେବା, ପାଇବା ଓ ନ ପାଇବାର ଗୋଲକଧନ୍ଦା ଭିତରେ ଆମେ ପଥଭ୍ରଷ୍ଟ ହୋଇଛୁ ।

ଭାରତବର୍ଷର ଜଣେ ମହାନ୍ ପ୍ରଯୋଜକ, ନିର୍ଦ୍ଦେଶକ ଓ ଚିନ୍ତକ ଶ୍ରୀଯୁକ୍ତ ଶ୍ୟାମ ବେନେଗଲ୍ ଲେଖିଛନ୍ତି, "The theatre has given man his most magical, his most enjoyable moments. It has been not only his commonest means of expression, but also his commonest means of fulfilment. The theatre has often led him out of despair into hope and courage, and a step forward out of the travail of to-day into the promise of tomorrow."

ଯେଉଁ ରଙ୍ଗମଞ୍ଚର ଭୂମିକା ଏଭଳି ମହତ୍ତ୍ୱପୂର୍ଣ୍ଣ, ଯେଉଁ ନାଟକର ଆବଶ୍ୟକତା ଏଭଳି ଅପରିହାର୍ଯ୍ୟ, ତାର ଭବିଷ୍ୟତକୁ ନବ-ନାଟ୍ୟ-ଆନ୍ଦୋଳନ ନାଁରେ ଏଭଳି ଜୀବନ-ଯନ୍ତ୍ରଣା ବା ମୃତ୍ୟୁ-ଯନ୍ତ୍ରଣା ଭିତରକୁ ଠେଲି ଦେବା ଆଦୌ ଉଚିତ ନୁହେଁ ବୋଲି ମୋର ନିଜସ୍ୱ ମତ ଏଠାରେ ବ୍ୟକ୍ତ କରୁଛି ।

ଓଡ଼ିଆ ନାଟ୍ୟ-ସାହିତ୍ୟର ପରମ୍ପରା ଅତି ପ୍ରାଚୀନ । ଓଡ଼ିଶାରେ ମୋଗଲ ମରହଟ୍ଟା ରାଜତ୍ୱକାଳରୁ ଲୀଳା, ଯାତ୍ରା, ସୁଆଙ୍ଗଠୁ ଆରମ୍ଭ କରି ବିଂଶ ଶତାବ୍ଦୀର ଷାଠିଏର ଚୂଡ଼ାନ୍ତ ପର୍ଯ୍ୟାୟରେ ଉପନୀତ ହୋଇଥିବାବେଳେ ଜର୍ଜ ବର୍ଣ୍ଣାର୍ଡ ଶ'ଙ୍କର

"ବ୍ୟାକ୍ ଟୁ ମାଥୁସେଲା"ର ଋଷିଦ୍ୱୟଙ୍କ ଭଳି ଆମେ ପୁଣି କାଳର ଆବର୍ତ୍ତନରେ ଆସି ପହଞ୍ଚିଲୁଣି ଯାତ୍ରା ଓ ଅପେରା ଯୁଗରେ । ସାହିତ୍ୟର ମାପକାଠିରେ ମାନ ନିର୍ଦ୍ଧାରଣ କରିବାପାଇଁ ଅପେରା ବା ଯାତ୍ରା ନାଟ୍ୟ ସାହିତ୍ୟ କେତେଦୂର ଗ୍ରହଣୀୟ ତାର ବିଚାରକ ମୁଁ ନୁହେଁ ; ମାତ୍ର ଶସ୍ତା ଲୋକପ୍ରିୟତା ଓ ଅଜସ୍ର ଧନ ଉପାର୍ଜନ ଲାଗି ଯାତ୍ରାରେ ଏକାଧିକ ପେଣ୍ଡାଲ, ନାନା ରଙ୍ଗର ଆଲୋକ ସଜ୍ଜା ଓ ବିବିଧ ଆଧୁନିକ-ରୁଚି-ସମ୍ପନ୍ନ ବାଦ୍ୟଯନ୍ତ୍ର ତଥା ଚଳଚ୍ଚିତ୍ର ଅନୁକରଣରେ ମନ-ମରୁଆଳ ସଙ୍ଗୀତ, ନୃତ୍ୟ ଓ ସେକ୍ସର ମାତ୍ରାଧିକ ଆକର୍ଷଣ ଯେ ଦର୍ଶକ ସାଧାରଣଙ୍କୁ ଲୁବ୍ଧ ତଥା ବିମୋହିତ କରୁଛି, ଏଥିରେ ସନ୍ଦେହ ନାହିଁ !

---

# ଜୀବନ-ଅପରାହ୍ନ

—ଏକ—

ଅପରାହ୍ନ । ଜୀବନର ସୂର୍ଯ୍ୟ ଧୀରେ ଧୀରେ ହେଲେଣି ପଶ୍ଚିମାଭିମୁଖୀ । ପୂର୍ବ ଦିଗରେ ଜୀବନର ଉନ୍ମେଷ ହୋଇ ପଶ୍ଚିମ ଦିଗରେ ହୋଇଥାଏ ତାର ପରିସମାପ୍ତି । ପୂର୍ବରୁ ପଶ୍ଚିମ ପର୍ଯ୍ୟନ୍ତ ଯେଉଁ ବିସ୍ତୃତ ସରଳରେଖା ଲମ୍ବି ଯାଇଛି, ତାହାହିଁ ପ୍ରକୃତରେ ଜୀବନ-ରେଖା । ଧର୍ମକର୍ମ, ପାପପୁଣ୍ୟ, ଈଶ୍ୱର ଅବିଶ୍ୱର, ସଫଳତା-ବିଫଳତା, ମାୟା, ମମତା, ଦୟା, କ୍ଷମା, ରୋଷ, ଆଳସ୍ୟ ପ୍ରଭୃତି ଜୀବନର ସମସ୍ତ କୀର୍ତ୍ତି, ଅପକୀର୍ତ୍ତି ଏହି ଲମ୍ବିତ ସରଳରେଖା ଉପରେ ଦଣ୍ଡାୟମାନ ହୋଇ ଇତିହାସ ସୃଷ୍ଟି କରିଥାନ୍ତି ।

ପ୍ରାତଃ କାଳରେ ଶୌଚକ୍ରିୟା ଓ ସ୍ନାନ ସମାପନ କରି ଆମେ ଯେପରି "ଓଁ ଜବା-କୁସୁମ-ସଙ୍କାଶମ୍ କାଶ୍ୟପେୟଂ ମହାଦ୍ୟୁତିମ୍, ଧ୍ୱାନ୍ତାରିଂ ସର୍ବ ପାପଘ୍ନ ପ୍ରଣତୋସ୍ମି ଦିବାକରଂ" ସ୍ତୁତି ଗାନକରି ନବୀନ ସୂର୍ଯ୍ୟଙ୍କୁ ଆବାହନ କରୁ, ସେହିପରି ଅପରାହ୍ନର ଅସ୍ତଗାମୀ ସୂର୍ଯ୍ୟଙ୍କୁ ମଧ୍ୟ "ଅଲେଖ ନିରଞ୍ଜନ" କହି ନମସ୍କାର କରୁ । ସେହି ପରିପୂର୍ଣ୍ଣ, ପରମ-ପାବନ, ଦିବ୍ୟ-ଜ୍ୟୋତିର୍ମୟ ତପନ ଦେବ ହିଁ ଆମର ଚିର ନମସ୍ୟ । ସପ୍ତାଶ୍ୱଖଚିତ ରଥ ଆରୋହଣ କରି ସେ ପୂର୍ବ ଦିଗରୁ ପଶ୍ଚିମ ଦିଗ୍‌ବଳୟ ପର୍ଯ୍ୟନ୍ତ ସାରା ପୃଥିବୀ ପରିକ୍ରମା କରନ୍ତି ଏବଂ ଅନାଗତ ଦିବସ ପାଇଁ ପ୍ରେରଣା ଦେଇ ଅସ୍ତ ହୋଇଯାନ୍ତି । ସେହି ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଆଗତ ଦିନର କର୍ମପନ୍ଥା ସ୍ଥିର କରିବା ହିଁ ବୁଦ୍ଧିମାନର କର୍ତ୍ତବ୍ୟ ।

ପୂର୍ବ ପରିଚ୍ଛେଦରେ ମୁଁ ଯାତ୍ରା ଓ ଅପେରା ବିଷୟରେ କେତେକ କଥା ଲେଖିଛି । ସେହି ବିଷୟର ପୁନରାବୃତ୍ତି କରି ମୋ ଜୀବନରେ ଯାତ୍ରାର କିଭଳି ପ୍ରଭାବ ପଡ଼ିଥିଲା ଏବଂ ସେଥିରେ କିଭଳି ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇପଡ଼ିଥିଲି ତାହାହିଁ ଲେଖୁଛି । ଏକ ସମୟରେ ନରସିଂପୁର ଯାତ୍ରା ପାର୍ଟିର ନାମ ସାରା ଓଡ଼ିଶାରେ ଚହଳ ପକାଇଥିଲା । ଯେଉଁଠି ନରସିଂପୁର ଯାତ୍ରା ହେଉଥିବାର ଶୁଣିଲେ ଆଖପାଖ ତଥା ଦୂରଦୂରାନ୍ତ ଅଞ୍ଚଳରୁ ଦର୍ଶକମାନେ ବହୁସଂଖ୍ୟାରେ ଯାତ୍ରା ଉପଭୋଗ କରିବାକୁ ଆସୁଥିଲେ । ନରସିଂପୁର ଯାତ୍ରା (ଶାରଦା କଳା କୁଞ୍ଜ)ର ବିଶେଷ ଆକର୍ଷଣ ଥିଲା ପୋଷାକର ଚାକଚକ୍ୟ, ଅର୍କେଷ୍ଟ୍ରାର ଆକର୍ଷଣ ଓ ସର୍ବୋପରି ଅଭିନୟକଳାର ଶ୍ରେଷ୍ଠ ପରିବେଷଣ । ପୁଅମାନେ ନାରୀ ଭୂମିକାରେ ଅଭିନୟ କରୁଥିଲେ ସତ୍ୟ, ସେମାନଙ୍କର ସୁନ୍ଦର ଚେହେରା, ମଧୁର କଣ୍ଠସ୍ୱର ଓ ଉଚ୍ଚକୋଟୀର ଅଭିନୟ-ଶୈଳୀ ମୁକ୍ତ ମଞ୍ଚରେ ଅଗଣିତ ଦର୍ଶକ-ଦର୍ଶିକାଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲା । ସେ ସମୟରେ ଅନ୍ୟାନ୍ୟ ଯାତ୍ରାଦଳ ନରସିଂପୁର ଦଳ ସହିତ ତୁଳନାରେ ବହୁତ ନ୍ୟୁନ ଥିଲେ । ବହୁବର୍ଷ ସୁଖ୍ୟାତିର ସହିତ କଳା ପ୍ରଦର୍ଶନ କଲାପରେ କୌଣସି କାରଣରୁ ଉକ୍ତ ଯାତ୍ରାଦଳ ଭାଙ୍ଗିଗଲା । ନା, ଭାଙ୍ଗିଗଲା କହିଲେ ଠିକ୍ ହେବ ନାହିଁ; ଭାଙ୍ଗି ଦିଆଗଲା ।

ନରସିଂପୁର ଶାରଦା କଳାକୁଞ୍ଜର ପ୍ରତିଷ୍ଠାତା ତଥା ପୃଷ୍ଠପୋଷକ ଥିଲେ ନାଟ୍ୟପ୍ରେମୀ ସ୍ୱର୍ଗୀୟ ସୁରେନ୍ଦ୍ର ନାଥ ପଟ୍ଟନାୟକ । ନାଟ୍ୟ-ପ୍ରେମ ସହିତ ଜାତି-ପ୍ରେମ ଓ ଦେଶପ୍ରେମ ମଧ୍ୟ ତାଙ୍କର ଯଥେଷ୍ଟ ଥିଲା । ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରି ନିଜର ଅପାର ସଂଗଠନକୁଶଳତା ଓ ବିଚକ୍ଷଣ ବୁଦ୍ଧିମତ୍ତା ଯୋଗୁଁ ସେ ଓଡ଼ିଶାର ରାଜସ୍ୱମନ୍ତ୍ରୀ ହୋଇପାରିଥିଲେ । ସ୍ୱତନ୍ତ୍ର-ଜନକଂଗ୍ରେସର ମିଳିତ ସରକାରରେ ଯୋଗଦେଇ ସେ ତାଙ୍କ ଦାୟିତ୍ୱ ସୁସମ୍ପାଦନ କରିଥିଲେ ଓ ରାଜ୍ୟବାସୀଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ବହୁଦିଗରୁ ବିଚାର କଲେ, ସେ ଥିଲେ ପ୍ରକୃତରେ ଜଣେ କରିତ୍‌କର୍ମା ବ୍ୟକ୍ତି ।

ହଠାତ୍ ସେ ଦିନେ ମୋତେ ଡକାଇ ପଠାଇଥିଲେ । ତାଙ୍କ ଉଦ୍ଦେଶ୍ୟ ମୋତେ ଜଣା ନ ଥିବାରୁ, ଡକରା ପାଇ ମୁଁ କିଞ୍ଚିତ ବିସ୍ମିତ ହେଲି ଏବଂ ଅଳ୍ପ ସମୟ ପରେ ତାଙ୍କୁ ଯାଇ ସାକ୍ଷାତ କଲି । ସେତେବେଳେ ସେ ସପତ୍ନିକ ଭୁବନେଶ୍ୱର ସତ୍ୟନଗରଠାରେ ଅବସ୍ଥାନ କରୁଥିଲେ ଓ ସେହିଠାରୁ ମୋ ନେବା ପାଇଁ ଗାଡ଼ି ପଠାଇଥିଲେ । ଚିଠି ନେଇ ଡ୍ରାଇଭର ମୋ ପାଖକୁ ଆସିଥିଲା ।

ମୁଁ ଯାଇ ପହଞ୍ଚିଲା ବେଳକୁ ସେ ବୈଠକଖାନାରେ ମୋତେ ଅପେକ୍ଷା କରି ବସିଥିଲେ । ମୋ ନମସ୍କାରର ଉତ୍ତର ନମସ୍କାର ଜଣାଇ ମୋତେ ବସିବାକୁ

କହିଲେ । ପ୍ରଥମ ସାକ୍ଷାତରେ ହିଁ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ମୋତେ ଆକର୍ଷିତ କରିଥିଲା । କିଛି ସମୟ ପରେ ସେ ମୋତେ ଡକାଇ ପଠାଇବାର ଉଦ୍ଦେଶ୍ୟ ଧୀରେ ଧୀରେ ଅଥଚ ପ୍ରାଞ୍ଜଳ ଭାବରେ ବ୍ୟକ୍ତ କଲେ । ତାଙ୍କ କଥାର ସାରମର୍ମ ହେଲା, ଉତ୍କଳର ହରେକୃଷ୍ଣ ମହତାବ ଓ ଅନ୍ୟ କେତେକ ବନ୍ଧୁଙ୍କ ପରାମର୍ଶରେ ସେ ଭାଙ୍ଗି ଯାଇଥିବା ନଗସପୁର ଯାତ୍ରା (ଶାରଦା କଳାକୁଞ୍ଜ) ଦଳର ପୁନର୍ଗଠନ କରିବାକୁ ଚାହାନ୍ତି । ସେଥିରେ ପୂର୍ବରୁ ପ୍ରଥା ଅନୁଯାୟୀ ପୁରୁଷ କଳାକାରମାନେ ନାରୀ ଭୂମିକାରେ ଅବତୀର୍ଣ୍ଣ ହେବେ ନାହିଁ । ଝିଅମାନେ ସେଥିପାଇଁ ନିଯୁକ୍ତି ପାଇବେ । ଅଥଚ ଆଧୁନିକ ବାଦ୍ୟଯନ୍ତ୍ରର ବ୍ୟବହାର କରାଯିବ ଏବଂ ସେଥିପାଇଁ ଉପଯୁକ୍ତ ଗାୟକ, ଗାୟିକା ଓ ଯନ୍ତ୍ରୀ ନିଯୁକ୍ତ ହେବେ । ପୂର୍ବରୁ ବଙ୍ଗଳା ନାଟକକୁ ଓଡ଼ିଆରେ ଅନୁବାଦ କରି ଯେଉଁଭଳି ନାଟକ ସବୁ ପରିବେଷଣ କରାଯାଉଥିଲା (ସବୁ ଯାତ୍ରାଦଳ ତାହାହିଁ କରୁଥିଲେ), ସେ ପରମ୍ପରାକୁ ଭାଙ୍ଗିଦେଇ ଓଡ଼ିଆ ଭାଷାରେ ମୌଳିକ ଯାତ୍ରା-ନାଟକ ସବୁ ଲେଖାଯିବ, ଏବଂ ଉନ୍ନତ ଧରଣର ମଞ୍ଚଶୈଳୀ ପ୍ରଚଳନ କରାଯିବ । ପରିଶେଷରେ ସେ ଉକ୍ତ ଦଳର ପରିଚାଳନା ଦାୟିତ୍ୱ ମୋ ହସ୍ତରେ ଅର୍ପଣ କରିବାକୁ ଚାହାନ୍ତି ବୋଲି ସ୍ପଷ୍ଟ କରିଦେଇଥିଲେ ।

ତାଙ୍କ କଥା ମୁଁ ଭାଙ୍ଗିପାରିଲି ନାହିଁ । କିନ୍ତୁ ଯାତ୍ରାଦଳ ସହିତ ଭିନ୍ନ ସ୍ଥାନକୁ ଯିବା ମୋ ପକ୍ଷରେ ଆଦୌ ସମ୍ଭବ ନୁହେଁ ବୋଲି ଜଣାଇ କିଛିକାଳ ଲାଗି ଚେୟାରମ୍ୟାନ୍ ଦାୟିତ୍ୱରେ ରହି ୩।୪ ଟି ମୌଳିକ ଓଡ଼ିଆ ନାଟକ ପ୍ରସ୍ତୁତ କରିବା ଲାଗି ସମ୍ମତି ପ୍ରଦାନ କଲି । ମୋ ନିଜ ରଚନା "ଗୁଲ୍‌ନାର" (କାଶ୍ମୀରୀ ବେଗମ୍ ଗୁଲ୍‌ନାର) ବ୍ୟତୀତ ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷ, ବିଜୟ କୁମାର ମିଶ୍ର ଓ କମଳଲୋଚନ ମହାନ୍ତିଙ୍କଠାରୁ ଖଣ୍ଡିଏ ଖଣ୍ଡିଏ ନାଟକ ଲେଖାଇ ଆଣିବାର ପ୍ରତିଶ୍ରୁତି ଦେଲି ।

ତଦନୁସାରେ ଭୁବନେଶ୍ୱରର ବମିଖାଲଠାରେ ଏକ ବଡ଼ କୋଠାଘର ଭଡ଼ାନେଇ ନାଟକ ଶିକ୍ଷାର କାର୍ଯ୍ୟ ଆରମ୍ଭ କରାଗଲା । ନିର୍ଦ୍ଦେଶକ ଭାବେ ୰ ଭୋଳାନାଥ ଦାସ (ପ୍ରବୀଣ ଚଳଚ୍ଚିତ୍ର, ବେତାର, ମଞ୍ଚଶିଳ୍ପୀ, ଓ ନିର୍ଦ୍ଦେଶକ) ନିଯୁକ୍ତି ପାଇବା ସହିତ ନଗସପୁର ଶାରଦା କଳାକୁଞ୍ଜର କେତେକ ପୁରାତନ ଶିଳ୍ପୀ ଆସି ବମିଖାଳରେ ପହଞ୍ଚିଲେ, ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରମୋଦ କୁମାର ନାୟକ, ସୁକାନ୍ତ କୁମାର ଦାସ, ଭାଗବତ, କାର୍ତ୍ତିକ, ଗୌରୁ ସିଂହ ଓ ହାରମୋନିୟମ ବାଦକ ତଥା ସଙ୍ଗୀତ-ନିର୍ଦ୍ଦେଶକ କୈଳାସ ଚନ୍ଦ୍ର ପତି, ଓ ତବଲା ବାଦକ ଶ୍ରୀ ବୃନ୍ଦାବନ ପରିଡ଼ା ପ୍ରମୁଖ ଅନ୍ୟତମ । ସାତ ଆଠଜଣ ନୂଆ ଝିଅ (ଶୈଳ, କୁନ୍ଦ, ନନ୍ଦ, ମଞ୍ଜୁ, ହେମଲତା, ମାଳତୀ ଓ

ହରପ୍ରିୟା ପ୍ରମୁଖ) ମଧ୍ୟ ଚୁକ୍ତିବଦ୍ଧ ହୋଇ ସେଠ'କୁ ଆସିଲେ ଏବଂ ଆସିଲେ କେତେକ ନୂତନ ସ୍ୱରୂପ ଶିଳ୍ପୀ । ଗୋଟିଏ ମାସ ଭିତରେ ଯାତ୍ରା ଦଳର ସମ୍ପୂର୍ଣ୍ଣ ପୁନର୍ଗଠନ କରାଗଲା । ସୁରେନ୍ଦ୍ରବାବୁଙ୍କ ଜଗତ୍‌ସିଂହପୁର ବାସସ୍ଥାନଠାରେ ପୂଜା ହୋଇ ମୋତେ ଡ୍ରେସ୍‌ମାନ ଦାୟିତ୍ୱ ବୁଝିବାକୁ ଭାବେ ପ୍ରଦାନ କରାଗଲା ଏବଂ ସେହିଠାରେ ମୋର 'ସୁଲ୍‌ତାନ' (ଐତିହାସିକ ନାଟକ) ପାଣ୍ଡୁଲିପି ନିର୍ଦ୍ଦେଶକ ଭୋଲାନାଥଙ୍କ ସୁଯୋଗ୍ୟ ହସ୍ତରେ ସମର୍ପିତ ହେଲା । ନାଟକ ଶିକ୍ଷା ଆରମ୍ଭ ହେବା ପରେ ପରେ କାର୍ତ୍ତିକବାବୁଙ୍କ ରଚିତ ନାଟକ 'ଭରଣୀସେନ' ଓ 'ବସନ୍ତସେନା' ଏବଂ ବିଜୟ ମିଶ୍ରଙ୍କ ରଚିତ "ଇତିହାସର ଯନ୍ତ୍ରଣା'ର ପାଣ୍ଡୁଲିପି ଆମର ହସ୍ତଗତ ହେଲା । ଦୀର୍ଘ ଆଠ, ନଅ ମାସର ପ୍ରଶିକ୍ଷଣ ପରେ ଶ୍ରୀ ନୀଳମଣି ରାଉତରାୟଙ୍କ (ମାନେଜର) ଦାୟିତ୍ୱରେ ଜଗତ୍‌ସିଂହପୁର ଯାତ୍ରାଦଳ ବାହାରକୁ ଯିବାପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ ହେଲା । ପ୍ରଥମ ନାଟ୍ୟାର୍ଘ୍ୟ 'ସୁଲ୍‌ତାନ' ନାଟକର ସଙ୍ଗୀତ ସବୁ ମୋର ନିଜ ରଚନା; ମାତ୍ର ଅନ୍ୟ ତିନିଖଣ୍ଡ ନାଟକର ସଙ୍ଗୀତ ଓ ସ୍ୱର-ସଂଯୋଜନା କରିଥିଲେ ସ୍ୱ ଜଗନ୍ନାଥ ଶ୍ୟାମସୁନ୍ଦର ଦାସ । ସେ ମହାଶୟ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ 'ବି' ଗ୍ରୁପ୍ ଓ ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଥିବା ଅଧିକାଂଶ ନାଟକର ସଙ୍ଗୀତ ଓ ସ୍ୱର-ସଂଯୋଜନା କରିଥିଲେ । ସଙ୍ଗୀତ ଜଗତର ସେ ଥିଲେ ଜଣେ ପ୍ରଚଣ୍ଡ ପ୍ରତିଭାଧର ଶିଳ୍ପୀ ।

ଶାରଦା କଳାକୁଞ୍ଜ ଜଗତ୍‌ସିଂହପୁରର ପ୍ରଥମ ଅଭିନୟ ରଜନୀର ଆୟୋଜନ ହୋଇଥିଲା ପାରାଦ୍ୱୀପଠାରେ । ଯିବା ବାଟରେ ପୂର୍ବ ବ୍ୟବସ୍ଥା ଅନୁଯାୟୀ କଟକପୁର ଝଙ୍କଡ଼ଠାରେ ମା' ସାରଳାଙ୍କ ପୀଠରେ ମା'ଙ୍କର ଦର୍ଶନ ତଥା ପୂଜାବିଧି ଶେଷକରି ଆମ୍ଭେମାନେ ବସ୍‌ଯୋଗେ ପାରାଦ୍ୱୀପରେ ଯାଇ ପହଞ୍ଚିଲୁ । ପ୍ରଥମ ରଜନୀରେ 'ସୁଲ୍‌ତାନ' ନାଟକର ଅଭିନୟ ଆରମ୍ଭ ହେବାର ସମସ୍ତ ବ୍ୟବସ୍ଥା ଓ ମଞ୍ଚପ୍ରସ୍ତୁତ ହୋଇଥାଏ । ପାରାଦ୍ୱୀପର କେତେକ ଭଦ୍ରବ୍ୟକ୍ତି ସାକ୍ଷାତ କରି ନାଟକର ଶୁଭ ଉଦ୍‌ଘାଟନ ସ୍ଥାନୀୟ ବି.ଡ଼ି.ଓ. କରିବେ ବୋଲି ଜଣାଇଥିଲେ । ମାତ୍ର ଉଦ୍‌ଘାଟନ ଉତ୍ସବର ଶୁଭ ମୁହୂର୍ତ୍ତ ପୂର୍ବରୁ ସେମାନେ ଆସି ମୋ ନିଜ ନାଟକ ମୁଁ ଉଦ୍‌ଘାଟନ କରିବାକୁ ଅନୁରୋଧ ଜଣାଇଲେ । ତାହାହିଁ ହେଲା । ଅଜସ୍ର କରତାଳି ଓ ଧ୍ୱନ୍ୟାତ୍ମକର ସମ୍ଭାର ମଧ୍ୟରେ ମୁଁ ନାଟକ ଉଦ୍‌ଘାଟନ କଲି । ନାଟକ ଆରମ୍ଭ ହେଲା । ଇତିହାସର କଥାବସ୍ତୁ ଉପରେ ଆଧାରିତ ଉକ୍ତ 'ସୁଲ୍‌ତାନ' ନାଟକର ଶେଷ ଦୃଶ୍ୟ ପର୍ଯ୍ୟନ୍ତ ସମ୍ମୁଖ ଶ୍ରୋତାଗଣ ଉଚ୍ଛ୍ୱସିତ ପ୍ରଶଂସା ସହିତ ନାଟକ ଉପଭୋଗ କଲେ ଏବଂ ବିଦାୟ ନେଲେ ।

ମୋଗଲର ଅହମିକା, ରାଜପୁତର ସ୍ୱାଭିମାନ ଏବଂ ମରହଟ୍ଟାର ଅପରିଣାମ-ଦର୍ଶିତା କିପରି ଭାରତବର୍ଷର ମାନଚିତ୍ରକୁ ବଦଳାଇ ଦେଇଥିଲା, ତାର ଏକ

ଫଗୁଣ ଚନ୍ଦ 'ଗୁଲନାର୍' ନାଟକରେ ପ୍ରଦର୍ଶିତ ହୋଇଛି । ନାଟକର ସଫଳ ରୂପାୟନ ସେଦିନ ମୋ ପ୍ରାଣରେ ଭରି ଦେଇଥିଲା ଅପୂର୍ବ ଉତ୍ସାହ, ଶିହରଣ ଓ ଉଦ୍ଦୀପନା । ସେହି ନାଟକର କିଛି ଅଂଶ ଉଦ୍ଧାର କରୁଛି ।'

ଆଲମଗୀର—ସତ୍ୟ, ଗୁଲନାର୍ ! ଶସ୍ୟ-ଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ଭାରତବର୍ଷର ଏକଛତ୍ର ସମ୍ରାଟ ଗାଜି ଆଲମଗିର୍—ହିମାଳୟଠାରୁ କୁମାରିକା ଯାଏ···ଯାର ଅଙ୍ଗୁଳି ସଙ୍କେତରେ ପରିଚାଳିତ, ସେ ଆଜି ତୁମ ନିକଟରେ ଯେପରି ଏକ ନିରୀହ ମେଷ-ଶାବକ ! ବାସ୍ତବିକ୍ ମନ୍ତ୍ରମୁଗ୍ଧ ହୋଇଛି ମୁଁ କାଶ୍ମିରୀ ବେଗମ୍ ! ଇନ୍ଦ୍ରଜାଲରେ ମୁଁ ବିଶ୍ୱାସ କରେ ନା, କିନ୍ତୁ ତୁମ ପ୍ରେମର ଇନ୍ଦ୍ରଜାଲ ମୋତେ ନିତାନ୍ତ ଅସହାୟ କରିଦେଇଛି ।

ଗୁଲ୍‌ନାର୍—ସମ୍ରାଟଙ୍କର ଏହି ସ୍ୱୀକୃତି ମୋ ସମ୍ମାନକୁ କେତେ ବଢ଼ାଇ ଦେଇଛି, ସେଥିପାଇଁ ଭାବି ଏ ବାନ୍ଦୀ ଧନ୍ୟ !

ଆଲମଗୀର—ନା, ନା, ବାନ୍ଦୀ ତୁମେ ନୁହଁ ଗୁଲ୍‌ନାର, କାଶ୍ମିର ବନର ଅପରୂପ କୁସୁମ ତୁମେ, ତୁମେ କେବଳ ଭାରତର ସାମ୍ରାଜ୍ଞୀ ନୁହ, ତୁମେ ଆଉରଙ୍ଗଜେବ ମନ-ଉପବନର ବସୋରାଇ ଗୋଲାପ ! ଚନ୍ଦ୍ର, ତାରା, ପୃଥିବୀର ମଧୁର ସବୁକିମା ତୁମ ରୂପର ବିଭବ ନିକଟରେ ଅଧ ମାହାରେ ମ୍ଳାନ, ଅଧମାହାରେ ନଷ୍ପ୍ରଭ !

ଗୁଲନାର—(ଉଚ୍ଛ୍ୱସିତା ହୋଇ) ସ-ମ୍ରା-ଟ୍ !······

ଆଲମଗିର—ଖୋଦାତାଲ୍ଲାଙ୍କ ସାମ୍ରାଜ୍ୟରେ ଯାହା କିଛି ସୁନ୍ଦର, ଯାହା କିଛି ଲୋଭନୀୟ, ସବୁ ଯେପରି ପରିପୂର୍ଣ୍ଣ ଭାବେ ଭରି ରହିଛି ତୁମର ଏହି କମନୀୟ ଅଙ୍ଗ ଲତିକାରେ, ଚମତ୍କାର, ଗୁଲନାର ! ଆଉରଙ୍ଗଜେବ ଜୀବନରେ ଉଦିତ ହୋଇ ତୁମେ ତାକୁ ଧନ୍ୟ କରିଛ ।

ଗୁଲନାର୍—ଆଲିଜା ! ଆପଣଙ୍କର ଏହି ଉଦାରତା, ଏହି ମହାନୁଭବତା, ସ୍ନେହ ଆଉ କରୁଣାର ଏହି ଅବାରିତ ଦାନ ଗୁଲନାର୍‌ର ଅଞ୍ଚଳ ଭରି ଦେଇଛି ! କାଶ୍ମିରୀବେଗମ୍ ଗୁଲ୍‌ନାର୍‌ର ଅଭିବାଦନ ଗ୍ରହଣ କରନ୍ତୁ ସମ୍ରାଟ !

ଆଲମଗିର୍—ନା, ନା, ଅଭିବାଦନ ଜଣାଉଛି ମୁଁ, ଅଭିନନ୍ଦନ କରୁଛି ମୁଁ! ଏଇ ଆଲମ୍ଗୀରର ଉତ୍ତର ଯୌବନରେ ବାର୍ଦ୍ଧକ୍ୟ ଯେତେବେଳେ ହାର୍ଦ୍ଦି ମାତ୍ର ଆସୁଥିଲା ବାସ୍ତବତାର ସମସ୍ତ ନିଷ୍ଠୁରତା ନେଇ, ସିଂହାସନର ମୋହ ତ୍ୟାଗ କରି ମକ୍କା ଯାତ୍ରା କରିବାର ପବିତ୍ର ସଙ୍କଳ୍ପ ଯେତେବେଳେ କରୁଥିଲା ଏଇ ବୃଦ୍ଧ ଔରଙ୍ଗଜେବ··· ଠିକ୍ ସେତିକବେଳେ ତୁମେ ଆସିଲ···ଶିଶିର ପରେ ବସନ୍ତର ସମସ୍ତ ଉନ୍ମାଦନା ନେଇ! ତୁମେ 'ଶେର୍' ଶୁଣୁନାହଁ ବେଗମ୍! ସେ ମୋର ଅନ୍ତରର କଥା।

ଜୁଲନାର୍—ଭାରତ ସମ୍ରାଟ୍ ଆଲମଗିର ବୃଦ୍ଧ ନୁହନ୍ତି। ବାହୁରେ ଯା'ର ଶତ ସିଂହର ପରାକ୍ରମ, ସସାଗରା ଧରଣୀ ଯା'ର ପଦାନତ, ସେ କ'ଣ କେବେ ବୃଦ୍ଧ ହୋଇପାରନ୍ତି? ଏ କଥା କହି ଜହାଁପନା ମୋତେ ଦୁଃଖ ହିଁ ଦେଉଛନ୍ତି।

ଆଲମ୍ଗିର—ଶିଶିର-ସ୍ନାତ ଶୃଙ୍ଗାରହାର ପରି କମନୀୟ ମୁଖଶ୍ରୀ ତୁମର କାଶ୍ମୀରୀ-ବେଗମ! ମୋ ପ୍ରାଣରେ ଅବୁଝା ରାଗିଣୀର କମ୍ପନ ସୃଷ୍ଟି କରେ। ମୋ ଗ୍ରୀବାରେ ହାତ ଦେଇ ଦେଖ ରୂପସୀ, କି ଚଞ୍ଚଳତା······ କି ଆବେଗ········ କି ଉଦ୍ଦୀପନା······ କି ଉନ୍ମାଦନା! ଆଃ!—

× × ×

'ଜୁଲନାର' ନାଟକରେ ମୋ ରଚିତ ଏକ ସଙ୍ଗୀତ—

ଜନ୍ମଭୂ······ଜନ୍ମଭୂ ଭାରତର ନାରୀ!
କସ୍ତୁରୀ ସମ, ଅନ୍ତରୁ ତୁମ
ଝରେ ମମତାର ବାରି,
ଯୁଗେ ଯୁଗେ ଏ ଜାତିର କୀର୍ତ୍ତି-ସଳିତା ଜାଳି
ଜାଳିଛ ଆଗେ ବରନାରୀ!
ଜନ୍ମଭୂ···
ଜନ୍ମଭୂ ସତୀ, ଅମରାବତୀ—
କରିଛ ମାଟିର ଧରତୀ;
ପ୍ରାଣ ଦେଇଛ, ମାନ ରଖିଛ
ମରଣ ଯାଇଛୁ ହାରି।
ଜନ୍ମଭୂ···

ଜନନୀ ଗୋ ତୁମେ
କାନ୍ତା, ଭଗିନୀ,
ସମାଜର ତୁମେ ଦର୍ପଣ,
ଦୟା, କ୍ଷମା ଗୁଣେ
ମହୀୟସୀ ମା'ଗୋ—
ଏ ଦେଶର ଶିର-ଭୂଷଣ !
କଲ୍ୟାଣମୟୀ......ଅମୃତମୟୀ......
ଭଗନ୍ତ ଧବଳ ଚିର,
ଜୟ ତୁ .....

(ଯଶୋବନ୍ତ ସିଂହଙ୍କ ପତ୍ନୀ ମହାମାୟା ସ୍ୱାମୀଙ୍କ ମୃତ୍ୟୁ ସମ୍ବାଦ ପାଇ ଚିତାରେ ଝାସ ଦେବାକୁ ଯାଉଥିବା ସମୟର (କୋରସ୍) ଗୀତ) ।

× × ×

ଉକ୍ତ 'ଗୁଲନାର' ନାଟକର ଅଭିନୟ କରିଥିଲେ ଓଡ଼ିଶା ସେକ୍ରେଟେରିଏଟ୍ ସ୍ୱତନ୍ତ୍ର ବିଭାଗ ସାଂସ୍କୃତିକ ସଂସଦ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ । କଟକ ସିଭିଲ କୋର୍ଟ ସାଂସ୍କୃତିକ ସଂସଦ ମଧ୍ୟ ହାଇକୋର୍ଟ ପରିସରରେ ଏହି ନାଟକର ସଫଳ ପରିବେଷଣ କରିଥିଲେ । ଏହି ନାଟକର ଅଭିନୟ ଏଭଳି ହୃଦୟସ୍ପର୍ଶୀ ଓ ଜୀବନ୍ତ ହୋଇଥିଲା ଯେ, ଜଷ୍ଟିସ୍ ରଙ୍ଗନାଥ ମିଶ୍ର ଏପରି ଐତିହାସିକ ନାଟକ ପଚିଶ ବର୍ଷ ପରେ ଦେଖିଲେ ବୋଲି ମତପ୍ରକାଶ କରିଥିଲେ । ଜଷ୍ଟିସ୍ ୭ ବ୍ରଜକିଶୋର ଦାସ ମଧ୍ୟ ଏହି ନାଟକର ଭୂୟସୀ ପ୍ରଶଂସା କରିଥିଲେ ।

—ଦୁଇ—

ଯେଉଁ ଖ୍ୟାତନାମା ମଞ୍ଚ-ନିର୍ଦ୍ଦେଶକଗଣ ମୋର ବହୁ ନାଟକର ନିର୍ଦ୍ଦେଶ ତଥା ଦିଗ୍‌ଦର୍ଶନ ଦେଇଥିଲେ, ସେମାନଙ୍କ ସମ୍ବନ୍ଧରେ ପଦେ ଅଧେ ନ କହିବା ମୋ ପକ୍ଷରେ ନିଶ୍ଚିତରୂପେ ଅନ୍ୟାୟ ହେବ । କାରଣ ସେହିମାନେ ହିଁ ମୋ ନାଟକକୁ ସାଫଲ୍ୟମଣ୍ଡିତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ପ୍ରଥମେ ଶ୍ରୀ ମାମୁଁଏଲ ସାହୁ (ବାବ) ଙ୍କ କଥାହିଁ ମନକୁ ଆସେ । ସେ ଜଣେ ପ୍ରବୀଣ ନାଟ୍ୟଶିଳ୍ପୀ ଓ ବିଚକ୍ଷଣ ନିର୍ଦ୍ଦେଶକ । ଜଣେ ଅତି ଖ୍ୟାତିସମ୍ପନ୍ନ ଅଭିନେତା ଭାବରେ ସେ ଦର୍ଶକମାନଙ୍କର ବିଶେଷ ପ୍ରଶଂସାଭାଜନ ହୋଇଥିଲେ ଏବଂ ସଫଳ ନିର୍ଦ୍ଦେଶକ ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କର ଜୀବନବ୍ୟାପୀ ସାଧନା ପାଇଁ ଅଭିନୟ କଳାକ୍ଷେତ୍ରରେ ରାଷ୍ଟ୍ରପତି ପୁରସ୍କାର ଲାଭ କରିବା ସହିତ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର, ଉପେନ୍ଦ୍ରଭଞ୍ଜ ପୁରସ୍କାର, ଓ ଜୟଦେବ ପୁରସ୍କାର ପ୍ରଭୃତିରେ ସମ୍ମାନିତ ହୋଇଥିଲେ । ଜଣେ ଉତ୍ତମ ବେତାର-ଶିଳ୍ପୀ ଓ ଚଳଚିତ୍ର ତାରକା ରୂପେ ତାଙ୍କର ଅବଦାନ ଥିଲା ବିପୁଳ । ସେ ମୋର ଅଧିକାଂଶ ନାଟକରେ ନାୟକ ବା ଖଳନାୟକ ଭୂମିକାରେ ଅଭିନୟ କରିବା ସହିତ ବହୁ ନାଟକର ନିର୍ଦ୍ଦେଶକ ମଧ୍ୟ ଥିଲେ ।

ଶ୍ରୀ ପ୍ରିୟନାଥ ମିଶ୍ର (ପିରି)ଙ୍କ ଅବଦାନ ଓଡ଼ିଆ ରଙ୍ଗମଞ୍ଚରେ ସର୍ବଜନବିଦିତ ଓ ସ୍ୱୀକୃତ । ରଙ୍ଗମଞ୍ଚ ବ୍ୟତୀତ, ବେତାର ଓ ଚଳଚିତ୍ରରେ ବିଭିନ୍ନ ଚରିତ୍ରରେ ଅଭିନୟ କରି ସେ ପ୍ରତିଷ୍ଠାର ଏକ ବିଶାଳ ସୌଧ ଗଢ଼ିପାରିଛନ୍ତି । ସେ ମଧ୍ୟ ଜୟଦେବ ପୁରସ୍କାର, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଓ ଅନ୍ୟାନ୍ୟ ପୁରସ୍କାର ଲାଭ କରିବାର ଗୌରବ ଅର୍ଜନ କରିଛନ୍ତି । ସେ ମୋର ବହୁ ନାଟକରେ ବିଭିନ୍ନ ଚରିତ୍ରରେ ଅଭିନୟ କରିବା ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ମଧ୍ୟ ଦେଇଛନ୍ତି । ସ୍ୱଭାବତଃ ମିଷ୍ଟଭାଷୀ ଓ ଅହଂକାରଶୂନ୍ୟ ହୋଇଥିବାରୁ ଦର୍ଶକ-ମଣ୍ଡଳୀ ଦ୍ୱାରା ବିଶେଷ ଭାବେ ଆଦୃତ ।

ପିପିଲି ନିବାସୀ ଶ୍ରୀ କାଶୀନାଥ ସାହୁ ଜଣେ ପ୍ରଖ୍ୟାତ ଅଭିନେତା ଓ ନିର୍ଦ୍ଦେଶକ । ଅଳ୍ପ ବୟସରୁ ସେ ଅଭିନୟ ଜଗତରେ ପ୍ରବେଶ କରିଥିଲେ । ନାଟ୍ୟଗୁରୁ ୬ ବଳଭଦ୍ର ମୁଖାର୍ଜିଙ୍କ ପଟ୍ଟଶିଷ୍ୟ ଭାବେ ସେ ସୁନାମ ଅର୍ଜନ କରିଥିଲେ । ଅଶ୍ୱିନୀକୁମାରଙ୍କ 'କୋଣାର୍କ' ନାଟକରେ ବଳଭଦ୍ରବାବୁ •ବିଶୁ ମହାରଣା ଭୂମିକାରେ ଅବତୀର୍ଣ୍ଣ ହୋଇ ସମଗ୍ର ଓଡ଼ିଶାରେ ଯେପରି ପ୍ରତିଷ୍ଠା ଅର୍ଜନ କରିଥିଲେ କାଶୀନାଥ ମଧ୍ୟ ଧରମା ଭୂମିକାରେ ସେହିପରି ନିଜର ଅଭିନୟ ପରାକାଷ୍ଠା ପ୍ରଦର୍ଶନ କରିଥିଲେ । P.W.D. ନାଟକରେ ସେ Mr. Sen ଭୂମିକାରେ ଯେପରି ଅପୂର୍ବ ସାଫଲ୍ୟ ଅର୍ଜନ କରିଥିଲେ, ତାହା ବର୍ଣ୍ଣନାତୀତ । ଓଡ଼ିଶା ଆର୍ଟ ଥିଏଟର୍ ଦ୍ୱାରା ଉପରୋକ୍ତ ଦୁଇଟି ନାଟକର ଅଭିନୟ ଦେଖିବାର ସୁଯୋଗ ମୋତେ ମିଳିଥିଲା । ଶ୍ରୀ ସାହୁ ଅନ୍ନପୂର୍ଣ୍ଣା ଥିଏଟର 'ଏ' ଗ୍ରୁପର ଅଭିନୀତ ମୋର "ଗରିବ" ନାଟକର ନାୟକ ଅଭିନୟ କରିବା ସହିତ ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ ।

ତରୁଣ ନବାଗତ ଶ୍ରୀ ନିରଞ୍ଜନ ଶତପଥୀ ପ୍ରଥମେ ମୋ 'ଗରିବ' ନାଟକରେ ଖଳନାୟକ 'ମହେଶ' ଭୂମିକାରେ ଅବତୀର୍ଣ୍ଣ ହୋଇ ଆପଣାକୁ ଜଣେ ଉଚ୍ଚକୋଟୀର କଳାକାର ବୋଲି ପ୍ରମାଣିତ କରିଥିଲେ । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପରେ କିଛି କାଳ ରହିବା ପରେ ସେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ଯୋଗଦାନ କରିଥିଲେ ଏବଂ ସେଠାରୁ ଯାଇ ଜନତା ରଙ୍ଗମଞ୍ଚରେ ବହୁଦିନ ଅଭିନେତା ଜୀବନ ଅତିବାହିତ କରିଥିଲେ । ତାଙ୍କ ଅନୁରୋଧକ୍ରମେ ମୁଁ ବହୁ ବାଧା ଓ ବିରୋଧ ସତ୍ତ୍ୱେ ତାଙ୍କୁ ମୋର "ଜୀବନଜୁଆ" ନାଟକର ନିର୍ଦ୍ଦେଶନା ଦାୟିତ୍ୱ ଦେଇଥିଲି ଏବଂ ସେ ସୁଷ୍ଠୁରୂପେ ତାଙ୍କ ଦାୟିତ୍ୱ ନିର୍ବାହ କରିଥିଲେ । ତାହାହିଁ ଥିଲା ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ତାଙ୍କର ଶେଷ ଅଭିନୟ ଓ ନିର୍ଦ୍ଦେଶନା । ତା'ପରେ ଜନତା ରଙ୍ଗମଞ୍ଚରେ ସେ 'ପରକଲମ', 'ନଷ୍ଟଉର୍ବଶୀ', 'ଅଶୋକସ୍ତମ୍ଭ', 'ଭରସା' ପ୍ରଭୃତି ବହୁ ନାଟକରେ ଅଭିନୟ କରି ତାଙ୍କ ଶିଳ୍ପୀ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ ।

ମୋ କଟକ ଆସିବାର ଅଳ୍ପ କେତେବର୍ଷ ପରେ କଟକ ଇଞ୍ଜିନିୟରିଂ ସ୍କୁଲ ଛାତ୍ରମାନଙ୍କ ଦ୍ୱାରା ମୋର ଯେଉଁ ନାଟକ 'The finishing Touch' ବା 'ପରିଣତି' ନାଟକ ଅଭିନୀତ ହୋଇଥିଲା, ତାର ନିର୍ଦ୍ଦେଶକ ଥିଲେ ଶ୍ରୀଯୁକ୍ତ ନନ୍ଦ କୁମାର ଦାସ । କଟକର 'ଭାରତୀ' ଥିଏଟର ଅଭିନୀତ ନାଟକମାନଙ୍କରେ ସେ ଅଂଶ ଗ୍ରହଣ କରି ଅଭିନୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ ।

୰ ସାମୁଏଲ ନାୟକ (ବେତାର) ଥିଲେ ଜଣେ ଉଚ୍ଚକୋଟୀର ବେତାର ନାଟକ ରଚୟିତା ଓ ସଙ୍ଗୀତ ଲେଖକ । ତାଙ୍କ ଘର କଟକ ସହରର ଚୁଡ଼ାହାଟରେ । ମୁଁ ଯେଉଁ ସମୟରେ ଚୁଡ଼ାହାଟ ଖ୍ରୀଷ୍ଟିୟାନ୍ ସାହିର ଏକ ଭଡ଼ାଘରେ ରହୁଥିଲି; ତାଙ୍କ ସହିତ ମୋର ବିଶେଷ ଆତ୍ମୀୟତା ସୃଷ୍ଟି ହୋଇଥିଲା । ତାଙ୍କୁ ସମସ୍ତେ ଆଦରରେ 'ନଣ୍ଡାଭାଇ' ବୋଲି ଡାକୁଥିଲେ । ସେ ବର୍ଷେ ଦୁଇବର୍ଷ ଗ୍ରୁଣିପୁର ଯାଇ ଆମ ଗାଁ 'ଗ୍ରାମ୍ୟ ଡ୍ରାମାଟିକ କ୍ଲବ'ର "ସାଆନ୍ତ ଘର" ଓ "କେଶରୀଗଙ୍ଗ" ନାଟକର ନିର୍ଦ୍ଦେଶନା ଦାୟିତ୍ୱ ବହନ କରିଥିଲେ । ଆମ ଗାଁର ଅଧିକାଂଶ ଲୋକ ତାଙ୍କୁ ତାଙ୍କର ସରଳ ମଧୁର ବ୍ୟବହାର ଯୋଗୁଁ ଶ୍ରଦ୍ଧା କରୁଥିଲେ ।

ବୟୋବୃଦ୍ଧ ନାଟ୍ୟକାର ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷଙ୍କ ଲିଖିତ ନାଟକମାନଙ୍କ ବିଷୟରେ ପୂର୍ବରୁ ମୁଁ ଲେଖିଛି । ତାଙ୍କର 'ଲକ୍ଷହୀରା' ଓ 'ଇମିତ ବି ହୁଏ" ନାଟକ ସଫଳତାର ଶୀର୍ଷ ସ୍ଥାନରେ ପହଞ୍ଚିପାରିଥିଲା । ସେ

ଜଣେ ଦକ୍ଷ କଳାକାର, ସଙ୍ଗୀତ ରଚୟିତା, ନୃତ୍ୟ ଶିଳ୍ପୀ ଓ ଉଚ୍ଚକୋଟୀର ନିର୍ଦ୍ଦେଶକ । ସେ ମୋର 'ଗଣେଷ' ଓ 'ଜୟମାଳ୍ପ' ନାଟକରେ କେତେକ ମୂଲ୍ୟବାନ ପରାମର୍ଶ ଦେବା ସହିତ ନିର୍ଦ୍ଦେଶନାରେ ମଧ୍ୟ ସହାୟତା କରିଥିଲେ । ସେ ଭାରତ ବିଖ୍ୟାତ ଉଦୟଶଙ୍କରଙ୍କଠାରୁ ନୃତ୍ୟଶିକ୍ଷା କରିଥିଲେ । ନାଟ୍ୟକାର ୰ ଅଶ୍ୱିନୀ କୁମାର ଘୋଷ ତାଙ୍କ ଜ୍ୟେଷ୍ଠ ଭ୍ରାତା । ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀ ଜଗନ୍ନାଥ' ରେ ତାଙ୍କ ଅଭିନୟ ବେଶ୍ ଉଚ୍ଚକୋଟୀର । ସେ 'ଉପେନ୍ଦ୍ରଭଞ୍ଜ ପୁରସ୍କାର', 'ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର' ଓ 'କେଳୁଚରଣ ମହାପାତ୍ର ପୁରସ୍କାର' ଲାଭ କରିଅଛନ୍ତି ।

ଓଡ଼ିଶା ତଥା ଭାରତର ଜଣେ ପ୍ରସିଦ୍ଧ ନୃତ୍ୟଗୁରୁ ଭାବେ ଶ୍ରୀ କେଳୁଚରଣ ମହାପାତ୍ର ସର୍ବତ୍ର ପରିଚିତ । ଭାରତ ବାହାରେ ମଧ୍ୟ ସେ ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି । ସେ ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ସମ୍ମାନସୂଚକ 'କାଳିଦାସ ପୁରସ୍କାର' ଲାଭ କରିବା ସହିତ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମବିଭୂଷଣ' ଉପାଧିରେ ସମ୍ମାନିତ ହୋଇଛନ୍ତି । ପ୍ରଥମ ଅବସ୍ଥାରେ ସେ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ତବଲା ବଜାଇବା, ନିଜେ ନାଚିବା ଓ ଅଭିନୟ କରୁଥିଲେ ; ମାତ୍ର ନିଜ ସାଧନାବଳରେ ସଫଳତାର ଶୀର୍ଷତମ ସୋପାନରେ ପାଦ ଦେଇଛନ୍ତି । ମୋର କେତେକ ନାଟକର ସେ ନୃତ୍ୟ-ନିର୍ଦ୍ଦେଶକ ଥିଲେ । ଶ୍ରୀ ପଙ୍କଜ ଚରଣ ଦାସ ଓ ୰ ଦେବପ୍ରସାଦ ଦାସ ମଧ୍ୟ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରୁ ସେମାନଙ୍କର କଳାକାର ଜୀବନ ଆରମ୍ଭ କରି ଅଭିନୟ, ନୃତ୍ୟ ଓ ନୃତ୍ୟ-ନାଟିକା ନିର୍ଦ୍ଦେଶନା କ୍ଷେତ୍ରରେ ଜାତୀୟ ତଥା ଆନ୍ତର୍ଜାତୀୟ ପ୍ରସିଦ୍ଧି ଲାଭ କରିଅଛନ୍ତି ।

ଉକ୍ତାଙ୍କ ଅଭିନୟ, ନୃତ୍ୟ ଓ ସଙ୍ଗୀତ କଳାରେ ପାରଦର୍ଶିତା ଲାଭ କରିଥିବା ବହୁ କୃତବିଦ୍ୟ ଶିଳ୍ପୀଙ୍କ ବିଷୟରେ ମୁଁ କୌଣସି ଉଲ୍ଲେଖ କରିନାହିଁ । କେବଳ ଯେଉଁମାନେ ମୋ ନାଟକ ସହ ସଂପୃକ୍ତ ଥିଲେ, ସେମାନଙ୍କ କଥା ଲେଖୁଛି । ଶ୍ରୀ ଗୋପୀନାଥ ବେହେରା, ଶ୍ରୀ ବାଲୁକେଶ୍ୱର ରଥ ଓ ଶ୍ରୀ କୈଳାସ ଚନ୍ଦ୍ର ପଣ୍ଡା ପ୍ରମୁଖଙ୍କ ନାମ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ।

National Book Trust of India, New Delhi, ତରଫରୁ ଶ୍ରୀମତୀ ବର୍ଣ୍ଣା ଦାସ (ଗୁଜୁରାଟି ମହିଳା ଏବଂ ଟ୍ରଷ୍ଟର ଜଣେ ଅଫିସର) ମୋର ମଙ୍ଗଳା ସାହି ବାସ ଭବନରେ ମୋତେ ସାକ୍ଷାତ କରି ଅନୁରୋଧ କରାଇଥିଲେ କୋଣାର୍କ ଉପରେ ଗୋଟିଏ ନାଟକ ଲେଖିବା ପାଇଁ । ଓଡ଼ିଶାର ଯେ କୌଣସି ସ୍ଥାନରେ (ଯେଉଁଠି ମୋ ମନ) ରହି ସେ ଲେଖା ଶେଷ କରିବା ପାଇଁ ସେ ମୋତେ ପ୍ରବର୍ତ୍ତାଇଥିଲେ । କୋଣାର୍କ କାହିକି (ବୋଧହୁଏ ନୀଳମାଧବ କିଉଙ୍କ

ଇଚ୍ଛା) ମୁଁ ତାଙ୍କୁ କହିଲେ ଯାଇ ନୀଳମାଧବଙ୍କ ପାଖରେ ବସି ଉକ୍ତ ନାଟକ ରଚନା କରିବା ଲାଗି କହିଲି । ତଦନୁସାରେ ସେ ପାହାଡ଼ ଉପରେ ଥିବା ସ୍କୁଲରେ ମୋ ରହିବାର ସମସ୍ତ ବ୍ୟବସ୍ଥା କରିଦେଲେ । ନାଟକ ଲେଖା ଆରମ୍ଭ ହେଲା । ପ୍ରାୟ ପନ୍ଦର ଦିନ ଭିତରେ "କୋଣାର୍କ"ର ପାଣ୍ଡୁଲିପି ଶ୍ରୀମତୀ ଦାସଙ୍କୁ ଦେଲି । ନାଟକ ପଢ଼ି ଶୁଣାଇଲି । ସେ ଖୁବ ଖୁସି ହେଲେ ।

ନେସନାଲ ବୁକ୍ ଟ୍ରଷ୍ଟ ସେ ନାଟକ ଛାପିବାର ସମସ୍ତ ଦାୟିତ୍ୱ ବହନ କରିଥିଲେ । ପାଞ୍ଚ ଖଣ୍ଡି ଛାପାବହି ସହିତ ଏକ ହଜାର ମୁଦ୍ରା ସେ ମୋ ପାଖକୁ ପଠାଇ ଦେଇଥିଲେ । ପ୍ରଭୁ ନୀଳମାଧବଙ୍କ କୃପାରୁ ସେହି 'କୋଣାର୍କ' ନାଟକ ଜାତୀୟ ସ୍ତରରେ ପ୍ରଥମ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲା ।

ଯଥା ସମୟରେ ଦିଲ୍ଲୀ ଯାଇ ପୁରସ୍କାର ଆଣିବା ପାଇଁ ଟେଲିଗ୍ରାମ ମୋ ପାଖରେ ଆସି ପହଞ୍ଚିଲା । ସେହି ସମୟରେ ମୋ ଚତୁର୍ଥ କନ୍ୟା ସାଗରିକା(ନିନା)ର ବିବାହ କାର୍ଯ୍ୟ ଶେଷ ହୋଇଥାଏ । ଅଷ୍ଟମଙ୍ଗଳା, ଚଉଠି ସବୁ ବାକି ଥାଏ । ଦିଲ୍ଲୀ ଏହା ପୂର୍ବରୁ ତିନି ଚାରିଥର ବିଭିନ୍ନ କାର୍ଯ୍ୟ ଉପଲକ୍ଷରେ ଯାଇଥିବାରୁ, ଆଉ ଗଲାକୁ ଇଚ୍ଛା ନଥାଏ । ମାତ୍ର ମୋ ନୂଆ ସମୁଦି ତଲ ତେଲେଙ୍ଗା ବଜାର ବାଲ୍ମୀସାହି ନିବାସୀ ଡାକ୍ତର ନୀଳମଣି ମହାନ୍ତି (ହୋମିଓ) ଙ୍କ ପ୍ରରୋଚନାରେ ଯିବାକୁ ବାଧ୍ୟ ହେଲି । ମୋ ସାଙ୍ଗରେ ବଡ଼ ପୁଅ ପ୍ରଦୀପ୍ତ (ବାବୁଲି) ଓ ତୃତୀୟ ଜ୍ୱାଇଁ ଶ୍ରୀମାନ୍ ଶରତ କୁମାର ପାତ୍ର (ବର୍ତ୍ତମାନ ରିଡ଼ର, ମନୋବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ) ଦିଲ୍ଲୀ ଯିବାକୁ ବାହାରିଲେ (୧୯୮୪) ।

ଦ୍ୱିତୀୟ ପୁରସ୍କାର ଲାଭ କରିଥିଲେ ଶ୍ରୀ ନରସିଂହ ମିଶ୍ର ତାଙ୍କର 'ବଡ଼ଠାକୁର' ପୁସ୍ତକ ପାଇଁ । ତାଙ୍କ ଘର ଅନୁଗୋଳରେ । ସେତେବେଳେ ସେ ଡି ପି.ଆଇ ଅଫିସର ପ୍ରୌଢ଼ଶିକ୍ଷା ବିଭାଗରେ Writer-Cum-Translator ଭାବେ କାର୍ଯ୍ୟ କରୁଥିଲେ । ସେ କେବଳ ମୋର ସହକର୍ମୀ ନଥିଲେ, ଥିଲେ ଜଣେ ସାହିତ୍ୟିକ ବନ୍ଧୁ । ତାଙ୍କର 'ଅଳିଦୁଆ, 'କାଦମ୍ବିନୀ' ପ୍ରଭୃତି କେତେକ ଉପନ୍ୟାସ, ଓ ଅନେକଗୁଡ଼ିଏ କ୍ଷୁଦ୍ର ନାଟକ ଓ ଗଳ୍ପ ପାଠକ ମହଲରେ ବିଶେଷ ଆଦୃତ । ପୁରସ୍କାର ଆଣିବା ପାଇଁ ସେ ମଧ୍ୟ ମୋ ସହିତ ଦିଲ୍ଲୀ ଯାତ୍ରା କରିଥିଲେ । Assistant D.P.I. ଭାବେ ଅବସର ନେବାପରେ ନରସିଂହ ବାବୁ ବର୍ତ୍ତମାନ ଭୁବନେଶ୍ୱର I R.C. କଲୋନୀରେ ଘର କରି ସେଠାରେ ରହୁଛନ୍ତି । କହିବା ବାହୁଲ୍ୟ ଯେ, ସେ ମୋର ଜଣେ ସୁମୁଗ୍ଧ ପାଠକ ଏବଂ ମୋ ନାଟକର ଶ୍ରଦ୍ଧାଳୁ ଦର୍ଶକ !

ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଏକ ମନୋଜ୍ଞ ଉତ୍ସବରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଉକ୍ତ ପୁରସ୍କାର (ଶେଠ୍ ଗୋବିନ୍ଦ ଦାସ ସ୍ମାରକୀ) ପ୍ରଦାନ କରିବାର ପ୍ରୋଗ୍ରାମ ଥିଲା । ମାତ୍ର କୌଣସି ଜରୁରୀ କାର୍ଯ୍ୟରେ ଶ୍ରୀମତୀ ଗାନ୍ଧୀଙ୍କ ଆସାମ ଯିବା ଏକାନ୍ତ ଅପରିହାର୍ଯ୍ୟ ଥିବାରୁ ସେ ତତ୍କାଳୀନ ବୈଦେଶିକ ମନ୍ତ୍ରୀ ଶ୍ରୀଯୁକ୍ତ ପି. ଭି. ନରସିଂହରାଓଙ୍କୁ ପୁରସ୍କାର ପ୍ରଦାନ କରିବାକୁ କହି ଯାଇଥିଲେ । ଯାହାହେଉ, ସେଦିନ ଉତ୍ସବରେ ବହୁ ମନ୍ତ୍ରୀ ତଥା ଦିଲ୍ଲୀର ବହୁ ମାନ୍ୟଗଣ୍ୟ ବ୍ୟକ୍ତି (ବରିଷ୍ଠ ଓଡ଼ିଆ ଲେଖକ ଚୌଧୁରୀ ହେମକାନ୍ତ ମିଶ୍ର ଓ ଅନ୍ୟ କେତେକ ଓଡ଼ିଆ ବନ୍ଧୁ ତଥା ଶୁଭାକାଂକ୍ଷୀ) ଙ୍କ ଉପସ୍ଥିତିରେ 'କୋଣାର୍କ' ରଚନା ଲାଗି ମୁଁ ପୁରସ୍କାର ଲାଭ କରିଥିଲି ଅଜସ୍ର କରତାଳି ଓ ହର୍ଷଧ୍ୱନି ମଧ୍ୟରେ । ଜଣେ ଉଚ୍ଚପଦାଧିକାରୀ ଡାଏସ୍ ଉପରେ ମୋ Bio-data ପାଠ କରୁଥାନ୍ତି । ସେଦିନର ସେଇ ଅନୁଭୂତି ମୋ ମାନସପଟରୁ ଆଦୌ ଲିଭିବାର ନୁହେଁ । ସଭାକର୍ତ୍ତୃପକ୍ଷଙ୍କ ଆତିଥେୟତା ଓ ସୌଜନ୍ୟମୂଳକ ବ୍ୟବହାର ଯୋଗୁଁ ମୁଁ କର୍ମକର୍ତ୍ତା-ମାନଙ୍କ ନିକଟରେ କୃତଜ୍ଞ । ମୋ ପୁଅ ଓ ଝିଅ ମଧ୍ୟ ସେଥିରେ ସବୁରେ ମୋ ସହିତ ବରାବର ରହିଥିଲେ ଏବଂ ଟ୍ୟୁରର ଏକ କାର୍‌ଯୋଗେ ଦିଲ୍ଲୀର ଦର୍ଶନୀୟ ସ୍ଥାନ ସବୁ ବୁଲି ଦେଖିଥିଲେ । ତୁଇଟି ଦିନ ସେଠାରେ କଟାଇ ଆମ୍ଭେମାନେ ଆନନ୍ଦରେ ଘରକୁ ଫେରିଆସିଲୁ ।

ଦିଲ୍ଲୀରୁ ପ୍ରତ୍ୟାବର୍ତ୍ତନ କରିବାର ଆଠ, ଦଶଦିନ ପରେ "ଉତ୍କଳ ପାଠକ ସଂସଦ"ର ନିମନ୍ତ୍ରଣ ପତ୍ର ପାଇଲି ଏବଂ କଟକ ରାମଚନ୍ଦ୍ର ଭବନଠାରେ ଏକ ସାହିତ୍ୟିକ ଉତ୍ସବରେ ଯଥା ସମୟରେ ଉପସ୍ଥିତ ହେଲି । ସେଠାରେ ଏକ ଭବ୍ୟ-ସମ୍ବର୍ଦ୍ଧନା ସହିତ ମୋତେ 'ନାଟ୍ୟରତ୍ନ' ଉପାଧି ଉତ୍କଳ ପାଠକ ସଂସଦ ତରଫରୁ ତତ୍କାଳୀନ ରାଜ୍ୟପାଳ ମାନ୍ୟବର ବିଶ୍ୱମ୍ଭର ନାଥ ପାଣ୍ଡେ ପ୍ରଦାନ କରିଥିଲେ । ମୋ ସହିତ ଡଃ ଭୁବନେଶ୍ୱର ବେହେରା, ଡଃ ଶରତ ଚନ୍ଦ୍ର ମିଶ୍ର ପ୍ରମୁଖ ଅନ୍ୟ ଛଅଜଣ ବରିଷ୍ଠ ବ୍ୟକ୍ତିଙ୍କୁ ବିଭିନ୍ନ ଉପାଧି ସହ ସମ୍ବର୍ଦ୍ଧିତ କରାଯାଇ-ଥିଲା । ଆମ ସାତଜଣଙ୍କ ଜୀବନୀ ଅବଲମ୍ବନରେ "ସପ୍ତସୁମନ" ନାମକ ଏକ ପୁସ୍ତକ ପାଠକ ସଂସଦ ପ୍ରକାଶ କରିଥିଲେ । ଦିଲ୍ଲୀରୁ ପୁରସ୍କୃତ ହୋଇ ଫେରିବା ପରେ ପରେ ଏ ପ୍ରକାର ଏକ ସାରସ୍ୱତ ସମ୍ବର୍ଦ୍ଧନା ଓ ଉପାଧି ପ୍ରଦାନ ଏକ ଈଶ୍ୱର ପ୍ରେରିତ ଶୁଭ ଯୋଗାଯୋଗ ଭଳି ମନେହେଉଥିଲା ।

ମାତ୍ର ଏ ଘଟଣାର ୪-୫ ଦିନ ମଧ୍ୟରେ କୃଷ୍ଣ ହିଁ ପ୍ରଭାବରୁ ହେଉ ଅବା ଶରୀରରେ ଅଶ୍ମାର ପ୍ରାବଲ୍ୟ ଯୋଗୁ ହେଉ ମୁଁ ଅସୁସ୍ଥ ହୋଇପଡ଼ିଲି । ବହୁତ ଦିନ ଧରି ସର୍ଦ୍ଦିକାଶ ଓ ଜ୍ୱର ଲାଗି ରହିଲା । ଶ୍ରେଷ୍ଠ ବଡ଼ ବଡ଼ ହୋଇ ବହୁ ଡାକ୍ତର ଦେଖାଇଲି ଓ ନାନା ପ୍ରକାର ଔଷଧ ବ୍ୟବହାର କଲି; କିନ୍ତୁ ଉନ୍ନତିର କୌଣସି

ଲକ୍ଷଣ ପ୍ରକାଶ ପାଇଲା ନାହିଁ । କ୍ରମଶଃ ଦୁର୍ବଳ ହୋଇ ଶଯ୍ୟାଶାୟୀ ହେଲି । ଶେଷରେ ଡାକ୍ତର (ପ୍ରଫେସର) ରାଜକିଶୋର ଦାସ (Medicine Specialist)ଙ୍କ ଚିକିତ୍ସାଧୀନ ହେଲି । ସେ ମୋର ଲିଭର୍ ବଢ଼ିଯାଇଛି ଏବଂ ବ୍ରୋଙ୍କାଇଟିସ୍ ହୋଇଛି ବୋଲି ଜାଣିପାରିଲେ ଓ ରକ୍ତ, ମଳ, ମୂତ୍ର ପରୀକ୍ଷା ତଥା X Ray କରାଇ ଚିକିତ୍ସା କଲେ । ଭଗବାନଙ୍କ ଦୟାରୁ ସେ ଯାତ୍ରା ବର୍ତ୍ତିଗଲି । ପ୍ରାୟ ଛ'ମାସ ଲାଗିଲା ପରେ ସୁସ୍ଥ ହେଲି । ମୋର ଆତ୍ମୀୟ ସ୍ୱଜନ, ବନ୍ଧୁବାନ୍ଧବ ତଥା ସାଙ୍ଗସାଥୀମାନେ (ଯେଉଁମାନେ ପ୍ରାୟ ଆଶା ଛାଡ଼ି ଦେଇଥିଲେ) ଆଶ୍ୱସ୍ତ ହେଲେ ।

ଚିକିତ୍ସା ଅପେକ୍ଷା ସେବା ଶୁଶ୍ରୂଷାର ମହତ୍ତ୍ୱ ହିଁ ମୋତେ ରୋଗ ଦାଉରୁ ରକ୍ଷା କରିଥିଲା । ମୋ ବଡ଼ ଝିଅ ନିବେଦିତା (ମାମୁନି—ତାର ସ୍ୱାମୀ ଆଡ଼ଭୋକେଟ ସୁବାସ ରାୟ) ଜଗତସିଂହପୁରରୁ ଆସି ମାସ ମାସ ଧରି ଯେଉଁଭଳି ସେବା କରିଛନ୍ତି କୌଣସି ମା' ମଧ୍ୟ ତା' ପିଲାର ଏପରି ସେବା କରିପାରିବ କି ନା ସନ୍ଦେହ ! ତା'ର ସେ ନିଃସ୍ୱାର୍ଥପର ସେବା (ରାତି ଦିନ ବିଶ୍ରାମ ନ ନେଇ ମୋରି ପାଇଁ ଆକାତରରେ ସମୟ ଦେଇଛି, ଜଗିରହି ଶୁଶ୍ରୂଷା କରିଛି) ମୋତେ ମୃତ୍ୟୁମୁଖରୁ ବଞ୍ଚାଇ ରଖିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁଣି ଦଶବର୍ଷ ପରେ (୧୯୯୬) ଯେତେବେଳେ ମୋର ହାର୍ନିଆ ଅପରେସନ୍ ହେଲା, ସେ ସମୟରେ ମଧ୍ୟ ଡାକ୍ତରଖାନାଠୁଁ ଆରମ୍ଭ କରି ମୁଁ ସୁସ୍ଥ ହେବାଯାଏଁ ସେଇ ଝିଅ ମୋର ଅଖିଆ, ଅନିଦ୍ରା ହୋଇ ଯେପରି ଶୁଶ୍ରୂଷା କରିଥିଲା, ଜୀବନ ଥିବା ପର୍ଯ୍ୟନ୍ତ ମୁଁ ତାହା ପାଶୋରି ପାରିବ ନାହିଁ । ଅବଶ୍ୟ ଜୀବନ-ମରଣର ଏହି ଦୁଇଟି ଘଟଣାରେ ମୋର ବଡ଼ପୁଅ ପ୍ରଦୀପ୍ତ (ବୋହୂ ସୁରମା ଓ ନାତି ନାତୁଣୀମାନେ କରଞ୍ଜିଆରୁ ଆସି ପାରି ନଥିଲେ) ଓ ଅନ୍ୟ ଝିଅ ଜ୍ୱାଇଁମାନେ ମଧ୍ୟ ଅକ୍ଲାନ୍ତ ପରିଶ୍ରମ ତଥା ତ୍ୟାଗ ସ୍ୱୀକାର କରି ମୋ ଆରୋଗ୍ୟ ଲାଭ କରିବାରେ ବହୁତ ସେବା କରିଛନ୍ତି । ସେମାନଙ୍କ ମଧ୍ୟରେ ତୃତୀୟା କନ୍ୟା କବିତା ଦୃଢ଼ ସାହସ ଓ ଧୈର୍ଯ୍ୟର ସହିତ ମୋତେ ନର୍ସିଂହୋମରୁ ବଡ଼ଡାକ୍ତରଖାନା ନେବା, ବୟସାଧିକ ଦୃଷ୍ଟିରୁ ଅପରେସନ୍ କରିବାକୁ ଡାକ୍ତରମାନେ ଅନିଚ୍ଛା ପ୍ରକାଶ କରିବାରେ ଡ. ବନବିହାରୀ ମିଶ୍ରଙ୍କୁ ଅନୁନୟ ବିନୟ କରି ଅପରେସନ୍ କରାଇବାରେ ଏବଂ ଅପରେସନ୍ ପରେ ବଡ଼ ଭଉଣୀ ନିବେଦିତା ସହ କଷ୍ଟଦିନ ମୋର ପରିଚର୍ଯ୍ୟା କରିବାରେ ଯେଉଁ ସହାୟତା କରିଥିଲା ତାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ । ରକ୍ତ ଦେଇ ସ୍ନେହ ମମତା ଦେଇ ସେମାନଙ୍କୁ ମଣିଷ କରିଥିଲି; ପିତୃଋଣ ସୁଝାଇବାରେ ସେମାନେ ଆଦୌ ପଶ୍ଚାତ୍ପଦ ହୋଇନାହାନ୍ତି । ମୋ ସ୍ତ୍ରୀ ସରୋଜିନୀଙ୍କ ଉତ୍କଣ୍ଠା ଓ ସେବାଯତ୍ନ କଥା ଲେଖିବା ବାହୁଲ୍ୟ ମାତ୍ର । ସେ ତ ସବୁ କରିଛନ୍ତି, ଘରେ ବାହାରେ ସବୁଠି ତାଙ୍କ ଉପସ୍ଥିତି ଅନୁଭୂତ ହୋଇଛି । ସବା ସାନପୁଅ

ଝିଅଟା ପ୍ରସନ୍ନ (ବାପି) ମୋ ପାଇଁ ଯାହା କରୁଛି, ତାହା ମଧ୍ୟ ବର୍ଣ୍ଣନାତୀତ। ଚାକିରୀରେ ବୁଡ଼ିରହି, ଆପଣାର ଶରୀର ପ୍ରତି ଆଦୌ ଦୃଷ୍ଟି ନ ଦେଇ ଦିନରାତି ଦୌଡ଼ୁଛି, ସବୁ କାମରେ ଅଗଭର ହୋଇ ପରିଶ୍ରମ କରୁଛି। ଭଗବାନଙ୍କ ପାଖରେ ଆକୁଳ ଆବେଦନ ଜଣାଉଛି, "ହେ ଭଗବାନ୍! ବି. ଏ. ପରୀକ୍ଷାରେ ମତେ ପଛକେ ଫେଲ୍ କରିଦିଅ, ମୋ ବାପାଙ୍କୁ ଭଲ କରିଦିଅ।" ଅବଶ୍ୟ ସେ ଫେଲ୍ ହୋଇନାହିଁ, ଅର୍ଥଶାସ୍ତ୍ରରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ରଖି ପାଶ କରିଛି। ସେ ଓ ତାର ପାଠ୍ୟାର୍ଥୀ ସର୍ବଶ୍ରୀ ଶଶାଙ୍କ ଶେଖର ସାହୁ, ବନ୍ଧୁପ୍ରସାଦ ଜେଠୀ ଓ ସୁଧାଂଶୁ ଶେଖର ଜେନା ସେହି ସମୟରେ ମୋର ବହୁତ ସେବା କରିଛନ୍ତି, ପ୍ରତିଦାନରେ ତାଙ୍କ ଜୀବନରେ ଉନ୍ନତି କାମନା ଓ ଆଶୀର୍ବାଦ କରିବା ଛଡ଼ା ଆଉ ବା କ'ଣ ଦେବି? ସେମାନେ ଯଶସ୍ୱୀ ହୁଅନ୍ତୁ. ଭଲ ମଣିଷ ହୋଇ ବାପା ମା'ଙ୍କ ନାଁ ରଖନ୍ତୁ; ସୁସ୍ଥ ଓ ସୁଖୀ-ଜୀବନ ଯାପନ କରନ୍ତୁ, ଏତିକି କାମନା। ବାପିର ବାଲ୍ୟସାଥୀ ଶ୍ରୀମାନ୍ ସିଦ୍ଧାର୍ଥ ଶଙ୍କର ସାମଲ (ମୁନା) ମଧ୍ୟ ମୋ ପାଇଁ ବହୁତ କରିଛି। ତା'ପ୍ରତି ଅନ୍ତରର ଆଶୀର୍ବାଦ। ଘରକୁ ଫେରିବା ପରେ ମୋର ସବାସାନ ଝିଅ ସଂଘମିତ୍ରା (ଟିନୁ) ମୋ ସେବାର ଦାୟିତ୍ୱ ବହନ କରିଥିଲା। ଅପରେସନ୍ ଦିନ ସନ୍ତସାସ ଅଣ୍ଡ୍ରେଦ୍ୱୀପ ଜଳାଇ ଅଶ୍ରୁଭରା ନୟନରେ ସେ ମା ମଙ୍ଗଳାଙ୍କୁ ଜଣାଉଥିଲା କମିତି ତାର ବାପା ସୁସ୍ଥଭାବରେ ଘରକୁ ଫେରି ଆସନ୍ତୁ। ତାକୁ ଛାଡ଼ି ମୋର ଅନ୍ୟ ପାଞ୍ଚ ଝିଅ (ସମସ୍ତେ ବିବାହିତା) ଜ୍ୱାଇଁମାନେ ଏବଂ ସମ୍ପୃକ୍ତ ସମ୍ବନ୍ଧୀମାନେ ସମସ୍ତେ ମୋ ପାଇଁ ବହୁତ ବହୁତ କରିଛନ୍ତି; ବିଶେଷତଃ ମୋର ବାନ୍ଧବୀପାଦ୍ର ସମ୍ବନ୍ଧ (ସାଂଗଭକାର ଶ୍ୱଶୁର ହୋମିଓପାଥିକ ଡାକ୍ତର ନୀଳମଣି ମହାନ୍ତି ୧୯୮୪ ମସିହାର ବ୍ରଙ୍କାଇଟିସ୍ ଓ ୧୯୯୪ ମସିହାର ଅପରେସନ ସମୟରେ ମୋର ଶଯ୍ୟା ନିକଟରେ ଦିନରାତି ଉପସ୍ଥିତ ରହି ଟକେସ୍ରା ସମ୍ମୁଖରେ ତଦାରଖ କରି ସ୍ନେହ ମମତାର ରଜ୍ଜୁରେ ମତେ ବାନ୍ଧି ରଖିଛନ୍ତି। ତା'ଛଡ଼ା ତାଙ୍କର ଏକମାତ୍ର ପୁଅ ମନୋଜ (ମୋ ଚତୁର୍ଥ ଜ୍ୱାଇଁ) ମୋ ପାଇଁ ବହୁତ ଯତ୍ନ କରିଛନ୍ତି ଓ ତାଙ୍କ ଜ୍ୱାଇଁ ପୋଲିସ ସବ୍-ଇନସ୍ପେକ୍ଟର ଶ୍ରୀ କେଦାରନାଥ ଦାସ ମଧ୍ୟ ଅପରେସନ ସନ୍ତସାସ ମୋତେ ଜଗିରହି ଅନେକ କାମ କରିଛନ୍ତି ଓ ଅପରେସନର ଝୁମ୍ପକ (Risk) ନେଇଛନ୍ତି। ମୁଁ ସର୍ବାନ୍ତଃ-କରଣରେ ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି। ଦ୍ୱିତୀୟ ଜ୍ୱାଇଁ ଶ୍ରୀମାନ୍ ପ୍ରଶାନ୍ତ କୁମାର ପଟ୍ଟନାୟକ (ସଞ୍ଜିତାର ସ୍ୱାମୀ ଓ Export Promotion & Marketing Directorateର Assistant Public Relation Officer) ଓ ତୃତୀୟ ଜ୍ୱାଇଁ (Psychology Reader, Utkal University) ଶ୍ରୀମାନ୍ ଶରତ କୁମାର ପାତ୍ର (କବିତାର ସ୍ୱାମୀ) ତାଙ୍କ ଭାଇମାନଙ୍କୁ ଧରି

ସେଠାରେ ଉପସ୍ଥିତ ରହି ଅପରେସନ୍ ତଦାରଖ କରିବାରେ ଯେଉଁ ଭୂମିକା ଗ୍ରହଣ କରିଥିଲେ ସେଥିପାଇଁ ସେମାନଙ୍କୁ ମଧ୍ୟ କଲ୍ୟାଣ କରୁଛି । ପ୍ରଶାନ୍ତଙ୍କ ସ୍ତ୍ରୀ ଦିବାକର ଓ ଶିବଶଙ୍କର ମଧ୍ୟ ମୋ ପାଇଁ ଯଥେଷ୍ଟ କରିଛନ୍ତି । ତାଙ୍କୁ ମୋର ଅନ୍ତରର ଆଶୀର୍ବାଦ ।

୧୯୮୪ ମସିହାରେ ମୁଁ ବ୍ରେଙ୍କାଇଟିସ୍‌ରେ ଆକ୍ରାନ୍ତ ହୋଇ ମୃତ୍ୟୁ ସହିତ ସଂଗ୍ରାମ କରୁଥିବାବେଳେ ମୋର ପଞ୍ଚମ କନ୍ୟା ସ୍ନିଗ୍ଧା (ଲୁଲୁନ) ମୋର ବହୁତ ସେବା କରିଥିଲା । ସେ ମୋର ଗାଧୋଇବା ଓ ଖାଇବା ପିଇବାର ଯତ୍ନ ନେଉଥିଲା । ମାତ୍ର ୧୯୯୪ ମସିହାରେ ମୋର ଅପରେସନ୍ ବେଳକୁ ସେ ଯାଇ ତାର ଶାଶୂ ଘରେ ଚଣ୍ଡିଗଡ଼ରେ ରହୁଥିଲା । ମୋର ହସ୍‌ପିଟାଲ୍ ଯିବାର ଦଶଦିନ ପୂର୍ବରୁ ତାର ଶ୍ୱଶୁର ମହାପାତ୍ର ରାଜେନ୍ଦ୍ର ପ୍ରସାଦଙ୍କର ମୃତ୍ୟୁ ହୋଇଯାଇ ଥିବାରୁ ସେ ଓ ମୋର ଜ୍ୱାଇଁ ଶ୍ରୀମାନ୍ ସତ୍ୟଜିତ ମହାପାତ୍ର ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଯୋଗୁଁ ଅପରେସନ୍ ଦିନ କଟକ ଆସି ପାରି ନ ଥିଲେ । ପରେ ସେ ଆସି ଯେତେବେଳେ ମୋ ପାଖରେ ପହଞ୍ଚିଲେ, ସେତେବେଳକୁ ମୋର ଚେତା ଫେରି ଆସିଥାଏ ଓ ମୋ ଅବସ୍ଥା କିଛିଟା ଭଲ ଥାଏ ।

ମୋର ସେଇ ସମୁଦି ମହାପାତ୍ର ରାଜେନ୍ଦ୍ର ପ୍ରସାଦଙ୍କ ସହିତ ମୋର ବନ୍ଧୁତା ପ୍ରାୟ ୩୫।୩୬ ବର୍ଷ ତଳର । ସେ ଜଣେ ସାହିତ୍ୟିକ ଓ 'ଆସନ୍ତାକାଲି' ପତ୍ରିକାର ସମ୍ପାଦକ ଥିଲେ । କିନ୍ତୁ ମୋ ଝିଅ ବିବାହର ମାତ୍ର ଦୁଇବର୍ଷ ଭିତରେ ସେ ଶ୍ବାସ ରୋଗରେ ପୀଡ଼ିତ ହୋଇ ପ୍ରାଣ ତ୍ୟାଗ କରିଥିଲେ । ତାଙ୍କର ତିନିପୁଅ ମଧ୍ୟରୁ ବଡ଼ ବିଶ୍ୱଜିତ୍ ନରସିଂହପୁର ସ୍କୁଲ ଇନସ୍‌ପେକ୍ଟରଙ୍କ ଅଫିସରେ କାମ କରନ୍ତି, ଦ୍ୱିତୀୟ ସତ୍ୟଜିତ୍ ମୋର ପଞ୍ଚମ ଜାମାତା । ତାଙ୍କର ସାନଭାଇ ଦେବଜିତ୍ (ଧାପୁନା) କ୍ୟାସେଟ୍ ବ୍ୟବସାୟ କରନ୍ତି । ସତ୍ୟଜିତ୍ ଉଚ୍ଚଶିକ୍ଷିତ, ବୁଦ୍ଧିମାନ୍ ଏବଂ ଜଣେ ସୁଲେଖକ, ବିଭିନ୍ନ ପତ୍ରପତ୍ରିକାରେ ଲେଖା ଲେଖି କରନ୍ତି । ଶିକ୍ଷକତା କରିବା ସହିତ ସେ ରେଡ଼ିଓ ଓ ଟି.ଭି.ର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରନ୍ତି । କଟକ C.D.A.ରେ ତାଙ୍କ ନିଜର ଘର ରହିଛି ଏବଂ ପ୍ରତ୍ୟେକ କାର୍ଯ୍ୟରେ ସେ ସର୍ବଦା ଆମ୍ଭମାନଙ୍କୁ ସାହାଯ୍ୟ କରନ୍ତି ।

ମୋ ସମୁଦି ଶ୍ରୀଯୁକ୍ତ ନାଗଭୂଷଣ ପଟ୍ଟନାୟକ (ଦ୍ୱିତୀୟ କନ୍ୟା ସବିତାର ଶ୍ୱଶୁର) ତାଙ୍କ ଅସୁସ୍ଥତା ଯୋଗୁଁ କଟକ ଆସିପାରି ନ ଥିଲେ । କିନ୍ତୁ ତାଙ୍କ ପିଲାମାନଙ୍କୁ ଓ ଚିଠିଖାନା ପଠାଇ ମୋ ଖବର ସବୁ ବୁଝୁଥିଲେ । ସେ ଓଡ଼ିଶା ସେକ୍ରେଟେରିଏଟ୍‌ର ବିଭିନ୍ନ ବିଭାଗରେ କାର୍ଯ୍ୟ କରି Under Secretary ଭାବେ ଅବସର ଗ୍ରହଣ କରିଛନ୍ତି । ତାଙ୍କ ମଧୁର ବ୍ୟବହାର ଓ ବନ୍ଧୁପ୍ରୀତି ମଧ୍ୟ ଭୁଲିବାର ନୁହେଁ ।

---

ମନୁଷ୍ୟ ଜୀବନକୁ ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ— ବାଲ୍ୟ, କୈଶୋର, ଯୌବନ, ପ୍ରୌଢ଼ତ୍ୱ ଓ ଜରା । କଥା ପ୍ରସଙ୍ଗରେ ମୋର ଜଣେ ବନ୍ଧୁ ତଥା ପଡ଼ୋଶୀ ଶ୍ରୀ ତମିର ବନ୍ଦୋପାଧ୍ୟାୟ କହିଥିଲେ, ଏହାକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା—'ଦର୍ଶକ', 'ଦସ୍ୟୁ' ଓ 'ଦାର୍ଶନିକ' । ତାଙ୍କର ଯୁକ୍ତି ଥିଲା ଅଠରବର୍ଷ ପର୍ଯ୍ୟନ୍ତ ମନୁଷ୍ୟ ଦର୍ଶକ ଭାବରେ ସବୁ ଦେଖିଯାଏ, କେଉଁଥିରେ ଲିପ୍ତ ରହେ ନାହିଁ । ତାପରେ ଏପରି ଏକ ଅବସ୍ଥା ଆସେ, ସେ ହୁଏ ଦସ୍ୟୁ । ସାଧାରଣ ଅର୍ଥରେ ଏଠାରେ ଦସ୍ୟୁ କହିଲେ ପରସ୍ୱ ଅପହରଣକାରୀ, ତସ୍କର ବୁଝାଯାଏ ନାହିଁ । ଦସ୍ୟୁର କର୍ମତତ୍ପରତା, କ୍ଷିପ୍ର ଗତି, ବଳବତୀ ଇଚ୍ଛା ଓ ସ୍ୱ-ଅଭିଳାଷ ସିଦ୍ଧ କରିବାର ଆପ୍ରାଣ ଉଦ୍ୟମକୁ ହିଁ ଲକ୍ଷ୍ୟ କରାଯାଇଛି । ଶେଷରେ ଆସେ ଦାର୍ଶନିକ ଅବସ୍ଥା । ଅର୍ଥାତ୍ ଯାହା ସବୁ ଘଟିଯାଇଛି ବା ଘଟୁଛି ତାର ବିଚାର କରିବା, ଭଲ ମନ୍ଦ ବୁଝି କାର୍ଯ୍ୟ କରିବାକୁ ଉପଦେଶ ଦେବା ଓ ଆଗାମୀ କାଳ ପାଇଁ ଉପଯୁକ୍ତ ସମୀକ୍ଷା କରିବା ହିଁ ଦାର୍ଶନିକ ଅବସ୍ଥା । ଏ ସମସ୍ତ ପର୍ଯ୍ୟାୟ କୌଣସି ଯୁକ୍ତିକୁ ଅପେକ୍ଷା କରେ ନାହିଁ, ସମସ୍ତ ଗଡ଼ିଚାଲେ ତା ନିଜ ବାଟରେ । ଉତ୍କଳମଣି ଗୋପବନ୍ଧୁ ଦାସ ଲେଖିଛନ୍ତି—

"ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ,
କର୍ମେ ଜୀଏ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।"

ଅତଏବ କର୍ମ ହିଁ ଭାଗ୍ୟ ଆଉ ଭାଗ୍ୟ ହିଁ ଭଗବାନ୍ । ଭାଗ୍ୟରେ ଯାହା ଅଛି ବା ଥିଲା କହି ନିଶ୍ଚିନ୍ତ ହୋଇ ବସିଲେ 'ପୁରୁଷକାର'ର ଅମର୍ଯ୍ୟାଦା କରାଯାଏ । ଯେ ଭାଗ୍ୟବାଦୀ, ସେ ଦୁଃଖ ହିଁ ଭୋଗ କରେ । ମାତ୍ର ଯେ ଉଦ୍-ଯୋଗୀ, ଯେ କର୍ମବୀର, ସେ ତାର ଭାଗ୍ୟକୁ ନିଜ ହାତରେ ଗଢ଼େ ଏବଂ ସେଥିରେ ଭଗବାନ ତାଙ୍କୁ ସାହାଯ୍ୟ କରନ୍ତି ।

"ଉଦ୍‌ଯୋଗୀନାଂ ପୁରୁଷ ସିଂହ ମୁପୈତି ଲକ୍ଷ୍ମୀଃ
ଦୈବେନ ଦେୟମିତି କାପୁରୁଷାଃ ବଦନ୍ତି
ଯତ୍ନେ କୃତେ ଯଦି ନ ସିଦ୍ଧ୍ୟନ୍ତି କୁତ୍ର ଦୋଷଃ ?"

ଦୁର୍ଲଭ ମନୁଷ୍ୟ ଜୀବନ ପାଇ ଆମେ ସଂସାରକୁ ଆସିଛୁ, ଛଣଭଙ୍ଗୁର ଜାଣି ସୁଦ୍ଧା ଆମକୁ କର୍ମତତ୍ପର ହେବାକୁ ପଡ଼ିବ, ଯୋଗୀ, ଋଷି, ମହାମାନବଗଣ ଯେଉଁ

ପଥ ନିର୍ଦ୍ଦେଶ କରି ଯାଇଛନ୍ତି, ସେହି ପଥରେ ଶତ ସହସ୍ର ବାଧାବିଘ୍ନ ଅତିକ୍ରମ କରି ଚାଲିବାକୁ ହେବ । ନିଜ ପାଇଁ, ନିଜ ପରିବାରବର୍ଗ, ଜାତି ତଥା ଦେଶ ପାଇଁ କିଛି ଉତ୍ତମ ଆଦର୍ଶ ରଖିଯିବାକୁ ହେବ । ତାହେଲେ ଯାଇ ଜୀବନର ସାଫଲ୍ୟ, ମନୁଷ୍ୟ ଜନ୍ମର ସାର୍ଥକତା ! ନଚେତ୍ ପଶୁପକ୍ଷୀଙ୍କ ପରି ସେହି ଭୋଜନ, ଶୟନ, ଆହାର, ବିହାରର ମୂଲ୍ୟ କଣ ? "Help ever, hurt never"— ଇଂରାଜୀର ଏହି ମୂଲ୍ୟବାନ ଉକ୍ତିଟି ଆମର ଧ୍ୟେୟ ହେବା ଉଚିତ । କାହାରି ମନରେ ଆଘାତ ନ ଦେଇ, ଯେତେଦୂର ସମ୍ଭବ ଅନ୍ୟର ଉପକାର କରି ଜୀବନ ବଞ୍ଚାଇବାରେ ଗୌରବ ଅଛି, ମହତ୍ତ୍ୱ ଅଛି ।

ଜୀବନ-ଅପରାହ୍ଣରେ ପହଞ୍ଚି ମୁଁ ଏବେ ଜଣେ ଦାର୍ଶନିକର ଭୂମିକା ଗ୍ରହଣ କରିଛି (ତମିର ବନ୍ଦ୍ୟୋପାଧ୍ୟାୟଙ୍କ ଜୀବନ-ଚକ୍ଷୁ ଦୃଷ୍ଟିରୁ) । ଦାର୍ଶନିକ କହିଲେ ଯେଉଁ ପାଣ୍ଡିତ୍ୟ, ଯେଉଁ ଦୂରଦୃଷ୍ଟି, ଯେଉଁ ଗଭୀର ଅନ୍ତର୍ଦୃଷ୍ଟି ଆବଶ୍ୟକ ତା' ଅବଶ୍ୟ ମୋର ନାହିଁ; କିନ୍ତୁ ସାଧାରଣ ଜଣେ ଅଭିଜ୍ଞ ଗୃହସ୍ଥ ଭଳି ବିଚାର କରିବାର ଯେଉଁ ଦକ୍ଷତା ଅଛି, ତାରି ଉପରେ ମୋର ଜୀବନ-ଦର୍ଶନ ପର୍ଯ୍ୟବସିତ । ମୋ ସ୍ତ୍ରୀ, କନ୍ୟା, ଦୁଇପୁତ୍ର, ପୁତ୍ରବଧୂ, ନାତି,ନାତୁଣୀ(ବଧୂ ସୁରମା, ନାତି ପ୍ରିୟଦର୍ଶୀ, ଶୁଭଦର୍ଶୀ ଓ ନାତୁଣୀ ଅନିନ୍ଦିତା)ଙ୍କୁ ନେଇ ଯେଉଁ ପରିବାର; ସେମାନେ ଯଦି ମୋ ଜୀବନାଦର୍ଶରେ ତୃପ୍ତ ହୁଅନ୍ତି, ପ୍ରଭାବିତ ହୁଅନ୍ତି, ତାହେଲେ ଜୀବନ ସମ୍ପୂର୍ଣ୍ଣଭାବେ ସୁସ୍ଥ ଏବଂ ସୁନ୍ଦର ହୁଅନ୍ତା । ସାମାନ୍ୟତମ ଜଟିଳତା ମଧ୍ୟ ରହନ୍ତା ନାହିଁ । କିନ୍ତୁ ବିଶ୍ୱକର୍ମାଙ୍କ ସୃଷ୍ଟିରେ ସମସ୍ତେ ସମାନ ନୁହନ୍ତି କିମ୍ବା ସମସ୍ତଙ୍କର ଚିନ୍ତାଧାରା ମଧ୍ୟ ସମାନ ନୁହେଁ । ତେଣୁ ବେଳେବେଳେ ଅଘଟଣ ଯେ ଘଟି ନାହିଁ, ତା' ନୁହେଁ । ସମସ୍ୟା ତ ଅନେକ ରହିଛି ଓ ରହିଥିବ, ମାତ୍ର ତାର ଉଚିତ ମୁକାବିଲା କରି ସମାଧାନ କରିବା ହିଁ ବୁଦ୍ଧିମାନର କର୍ତ୍ତବ୍ୟ ।

୧୯୭୩ ମସିହାରେ ମୁଁ ଏକ ଜାତୀୟ ରଙ୍ଗମଞ୍ଚ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲି । ଓଡ଼ିଶାର ପେଷାଦାର ରଙ୍ଗମଞ୍ଚମାନ ଭାଙ୍ଗି ପଡ଼ିବା ପରେ ଏହିପରି ଏକ ପରିକଳ୍ପନା ମୋ ମନରେ ଜାଗରିତ ହୋଇଥିଲା । ଚିନ୍ତା କରି ଦେଖିଲି, ଓଡ଼ିଶା ସରକାରଙ୍କ ଦ୍ୱାରସ୍ଥ ହେଲେ ହୁଏତ କିଛି ଆର୍ଥିକ ସାହାଯ୍ୟ ମିଳିପାରେ, କିନ୍ତୁ ଘନ ଘନ ହସ୍ତକ୍ଷେପ, ଅଡ଼ିଟରମାନଙ୍କର କଣ୍ଟ୍ରୋଲ ଓ ଅଫିସରମାନଙ୍କ ନାଲି ଆଖି ମୋତେ ଅସୁବିଧାରେ ପକାଇପାରେ; ତେଣୁ କୌଣସି ଜଣେ ବଦାନ୍ୟ ଲକ୍ଷପତି ନିକଟରେ ପହଞ୍ଚିଲେ ହୁଏତ ସ୍ୱାର୍ଥସିଦ୍ଧି ହୋଇପାରେ । ରଙ୍ଗମଞ୍ଚଗୁଡ଼ିକ ଭୂଷୁଡ଼ି ପଡ଼ିବା ପରେ ବହୁ ଅଭିନେତା, ଅଭିନେତ୍ରୀ ତଥା କଳାକାରଙ୍କ ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହୋଇ ପଡ଼ିଥିଲା । ଏକ ନୂତନ ରଙ୍ଗମଞ୍ଚ ପ୍ରତିଷ୍ଠାକରି ସେମାନଙ୍କୁ ଥଇଥାନ କରିବା ସହିତ ଓଡ଼ିଆ ନାଟକର ଅଭିବୃଦ୍ଧି ଲାଗି ମୁଁ ଏହି ସଙ୍କଳ୍ପ

କରିଥିଲି । ଏଥିପାଇଁ ସ୍ଥିତମତ ଏକ ଯୋଜନା ପ୍ରସ୍ତୁତ କରି ପ୍ରଥମେ ମୟୂରଭଞ୍ଜ ମହାରାଜଙ୍କୁ ଦେଖା କରିବାର ଚେଷ୍ଟା କଲି ।

ବାରିପଦାରେ ପହଞ୍ଚି ଏକ କମିଟି ଗଠନ କଲି । ସେଥିରେ ମୁଁ ଚେୟାର-ମ୍ୟାନ୍ ହେବା ସହିତ ବାରିପଦାର ତତ୍କାଳୀନ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ସଦସ୍ୟ ଭାବେ ଗ୍ରହଣ କଲି । ଅବଶ୍ୟ ସେମାନେ ବାରିପଦାରେ ଏକ ରଙ୍ଗମଞ୍ଚ (National Theatre) ସ୍ଥାପିତ ହେବା ଏବଂ ସ୍ୱର୍ଗତଃ ମହାରାଜା ସାର୍ ପ୍ରତାପ ଚନ୍ଦ୍ର ଭଞ୍ଜଦେଓଙ୍କ ନାମରେ ନାମିତ ହେବା କଥା ଶୁଣି ଏବଂ ଯୋଜନାଟିକୁ ଆମୂଳଚୂଳ ପରୀକ୍ଷା କରି କମିଟିର ମେମ୍ବର ହେବାଲାଗି ସହସ୍ତ ସ୍ୱୀକୃତ ପ୍ରଦାନ କରିଥିଲେ । ତଦନୁଯାୟୀ ୰ବ୍ରଜସୁନ୍ଦର ଦାସ (ମୋ ମାମୁଁ ଓ ବାଲଡ଼ିହାର ସର୍ଦ୍ଦାର) ୰ବ୍ରଜସୁନ୍ଦର ଦାସ (ବାରିପଦା ହାଇସ୍କୁଲର ପୂର୍ବତନ ଖେଳ ଶିକ୍ଷକ ଓ ଅତି ବିଶିଷ୍ଟ ଫୁଟବଲ ଖେଳାଳି, ଯାହାଙ୍କ ଗୁଣ, ଗାରିମା ସମ୍ବନ୍ଧରେ ମୋ ଗ୍ରନ୍ଥ ଜୀବନରେ ଲେଖିଛି), ଆଡ଼ଭୋକେଟ ୰ ସୁରେଶ ଚନ୍ଦ୍ର ଦାସ, ଶ୍ରୀଯୁକ୍ତ ବିଜୟକୃଷ୍ଣ ମହାନ୍ତି ଓ ୰ କାଙ୍ଗାଳି ଚରଣ ମହାନ୍ତିଙ୍କୁ ନେଇ ବୋର୍ଡ଼ ଗଠିତ ହେଲା । ପ୍ରୋଗ୍ରାମ ସ୍ଥିର କରି ଆମ୍ଭେ-ମାନେ ମହାରାଜାଙ୍କୁ ସାକ୍ଷାତ କଲୁ । ସେ ଆମଠୁଁ ସବୁ କାଗଜ ପତ୍ର ନେଇ ବିଚାର କରିବେ ବୋଲି କିଛିଦିନ ସମୟ ନେଲେ । ମାତ୍ର ପରିଶେଷରେ ଆମ୍ଭ-ମାନଙ୍କୁ ନିରାଶ ହେବାକୁ ପଡ଼ିଥିଲା । ତାପରେ ଓଡ଼ିଶାର ଆଉ କେତେକ ଶିଳ୍ପପତି ତଥା ମାନ୍ୟଗଣ୍ୟ ବ୍ୟକ୍ତି (ସେମାନଙ୍କ ନାମ ଉଲ୍ଲେଖ କରିବା ଉଚିତ ମଣୁ ନାହିଁ)ଙ୍କୁ ଦେଖା କରି 'ଜାତୀୟ ରଙ୍ଗମଞ୍ଚ'ର ପରିକଳ୍ପନା ସ୍ପଷ୍ଟସ୍ୱରେ ଜଣାଇଲି । ମାତ୍ର ସେଠାରେ ମଧ୍ୟ ପରିଣାମ ନାସ୍ତି-ବାଚକ । ଯେତେଦୂର ମନେହୁଏ, ନାଟ୍ୟକଳାର ଅଭିବୃଦ୍ଧି ଲାଗି ସେମାନେ ବୀତସ୍ପୃହ ଥିଲେ । ଏବେ ଶୁଣିବାକୁ ମିଳୁଛି, ଓଡ଼ିଶା ସରକାର ଏ ସମ୍ପର୍କରେ ଧ୍ୟାନ ଦେଇଛନ୍ତି । ଉଜ୍ଜ୍ୱଳ ଭବିଷ୍ୟତ ଲାଗି ଆମେ ଲେଖକ ତଥା କଳାକାର-ଗୋଷ୍ଠୀ ଅପେକ୍ଷମାଣ । ଦେଶ ବିଦେଶରେ ନାଟ୍ୟକଳା ପ୍ରତି ଯେଉଁ ଆସ୍ଥା ପ୍ରକଟିତ ହେଉଛି, ଓଡ଼ିଶାରେ ସେଇ ଆସ୍ଥା ଓ ବିଶ୍ୱାସ ଜନ୍ମୁଟା ଫଳପ୍ରଦ ହେଲେ ନାଟକର ଯୁଗ ଅବା ଫେରି ଆସନ୍ତା । ଅଦ୍ୟାବଧି ଏହା ଏକ ପ୍ରଶ୍ନବାଚୀ ହୋଇ ରହିଛି !

———

—୮୪—

ମୋର କଲେଜ ସହପାଠୀ କଟକ ସିଦ୍ଧେଶ୍ବର ସାହିର ଅବସରପ୍ରାପ୍ତ O. A. S. ଅନ୍ତରଙ୍ଗ ତଥା ବନ୍ଧୁ ଶ୍ରୀ ଅନଲ କୁମାର ଦାସଗୁପ୍ତ ଦିନେ ମୋ ଘରକୁ ଆସି ମୋତେ କହିଲେ, "ଆମେ କେତେ ଜଣ ସ୍ଥାନୀୟ ଭଦ୍ରବ୍ୟକ୍ତି "ପ୍ରତିଭା ପୂଜା ସଂସଦ" ନାମରେ ଗୋଟିଏ ପ୍ରତିଷ୍ଠାନ ଗଢ଼ିବା ପାଇଁ ମନସ୍ଥ କରିଛୁ ।"

ମୁଁ ପଚାରିଲି, "ଏଭଳି ପ୍ରତିଷ୍ଠାନର ଆବଶ୍ୟକତା କଣ ?" ସେ କହିଲେ, "ଆପଣଙ୍କ ବୟସ ପ୍ରାୟ ସତୁରି ହେଲା । ଏ ପର୍ଯ୍ୟନ୍ତ ଆପଣଙ୍କ ଜନ୍ମଦିନ କେହି ପାଳନ କରୁନାହାନ୍ତି । ଆପଣଙ୍କ ତୁଳନାରେ ଅଳ୍ପ ପ୍ରତିଭାବାନ ବ୍ୟକ୍ତିଙ୍କର ଜନ୍ମତିଥି ପାଳିତ ହେଉଛି, ଅଥଚ "ଗାଁ କନିଆ ସିଙ୍ଘାଣୀ ନାକ" ହିସାବରେ ଆପଣ ଉପେକ୍ଷିତ ।"

"ଉପେକ୍ଷିତ କହିବାର ଅର୍ଥ ମୁଁ ଠିକ୍ ବୁଝିପାରୁ ନାହିଁ ଭାଇ ! ଭଗବାନଙ୍କ ଦୟାରୁ ମୁଁ ସବୁ ପାଇଛି, ପ୍ରଚାରର ଆବଶ୍ୟକତା ଆଉ କଣ ?" ମୁଁ କହିଲି ।

ସେ କହିଲେ, "ନା, ନା, ଆପଣ ଆପତ୍ତି କରନ୍ତୁ ନାହିଁ । ନଭେମ୍ବର ୧୩ ତାରିଖ ଦିନ ଆମେ ଏଇ ବର୍ଷଠାରୁ ଆପଣଙ୍କ ଜନ୍ମଦିନର ଶୁଭେଚ୍ଛା ଜଣାଇବୁ ।"

ତାହା ହିଁ ହେଲା । ଅନଲ ଜଣେ ଖୁବ୍ ପରିବାର ଲୋକ । ସରକାରୀ ଚାକିରୀରୁ ଅବସର ନେଇ ସେ ବର୍ତ୍ତମାନ ନାନା ସାଂସ୍କୃତିକ କାର୍ଯ୍ୟକ୍ରମ ସହିତ ସଂପୃକ୍ତ ହୋଇଛନ୍ତି । ସେ ନିଜେ ଜଣେ ସଙ୍ଗୀତ-ଶିଳ୍ପୀ (ଏବେ ଅବଶ୍ୟ ଗୀତ ଗାଉ ନାହାନ୍ତି), ସଙ୍ଗଠକ ଓ ଲେଖକ ମଧ୍ୟ । ବିଶେଷ କରି କ୍ଷୁଦ୍ରଗଳ୍ପ ହିଁ ଲେଖନ୍ତି । ପ୍ରତିଦିନ ଇଂରାଜୀ ହେଉ, ବଙ୍ଗଳା କିମ୍ବା ଓଡ଼ିଆ ହେଉ, ନାନା ପୁସ୍ତକ ପଢ଼ିବା ତାଙ୍କର ଏକ ନିଶା । ଯାହା ହେଉ, ତାଙ୍କରି ଉଦ୍ୟମରେ, ମଙ୍ଗଳା ସାହିର ଆଡ଼ଭୋକେଟ ଶ୍ରୀଯୁକ୍ତ କ୍ଷେତ୍ରମୋହନ ସାମଲ, ଶ୍ରୀଯୁକ୍ତ ବାବାଜି ଆଚାର୍ଯ୍ୟ, ଡାକ୍ତର ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ପ୍ରହରାଜ, ଶ୍ରୀଯୁକ୍ତ କୁଳମଣି ଦାସ, ଶ୍ରୀଯୁକ୍ତ ଦିନବନ୍ଧୁ ଭକ୍ତ, ଶ୍ରୀଯୁକ୍ତ ସୁରେନ୍ଦ୍ର କୁମାର ମହାନ୍ତି, ଶ୍ରୀଯୁକ୍ତ ଦାମୋଦର ବୈଧ, ଶ୍ରୀଯୁକ୍ତ ଶ୍ରୀଚରଣ ଦାସ ଓ ଶ୍ରୀମାନ ନିର୍ମଳ କୁମାର ଜେନା ପ୍ରମୁଖଙ୍କ ସକ୍ରିୟ ସହଯୋଗରେ ମଙ୍ଗଳା ସାହିର ମା ମଙ୍ଗଳାଙ୍କ ମନ୍ଦିରରେ "ପ୍ରତିଭା ପୂଜା ସଂସଦ" ଅନୁଷ୍ଠାନ (ସେମାନେ ହିଁ ଏହି ଅନୁଷ୍ଠାନର ନାମକରଣ କରିଥିଲେ) ଆନୁକୂଲ୍ୟରେ

ଏବଂ ଶ୍ରୀଯୁକ୍ତ ବଟକୃଷ୍ଣ ବେହେରାଙ୍କ ସଭାପତିତ୍ୱରେ ପ୍ରଥମବର୍ଷ (୧୯୯୩)ର ଜନ୍ମଦିନ ପାଳିତ ହେଲା । ସେଠାରେ ବକ୍ତାମାନେ ମୋତେ ଶୁଭେଚ୍ଛା ଜଣାଇବା ସହିତ ମୋ ସାହିତ୍ୟକୃତିର ଆଲୋଚନା ମଧ୍ୟ କଲେ । ମଙ୍ଗଳାଙ୍କ ଭୋଗ ପାଇ ସମସ୍ତେ ଘରକୁ ଫେରିଗଲେ । ଏହି ସମ୍ବର୍ଦ୍ଧନା ସଭାରେ ମଙ୍ଗଳା ସାହିର କେତେକ ଭକ୍ତ ଓ ଅଳିଶା ବଜାରର କେତେକ ଶୁଭେଚ୍ଛୁ ଯୋଗଦାନ କରି ମୋ ଦୀର୍ଘଜୀବନ କାମନା କରି ମା'ମଙ୍ଗଳାଙ୍କୁ ପ୍ରାର୍ଥନା କରିଥିଲେ । ସେହିଠାରେ ମୋ ମଟଡ଼ାଶୀ ଶିଶୁ-ବିଶେଷଜ୍ଞ ଡାକ୍ତର (ପ୍ରଫେସର, ଅବସରପ୍ରାପ୍ତ) କ୍ଷୀରୋଦ ଚନ୍ଦ୍ର ପ୍ରହରାଜ ମୋର ଅସୁସ୍ଥତା ସମୟରେ ବିନା ଅର୍ଥରେ ଚିକିତ୍ସା କରିବାର ପ୍ରତିଶ୍ରୁତି ଦେଇଥିଲେ ।

ଏହିଭଳି ଭାବରେ ୨-୩ ବର୍ଷ ନଭେମ୍ବର ମାସ ୧୩ ତାରିଖ ଦିନ ଉତ୍ସାହୀ ବନ୍ଧୁମାନେ ମୋର ଜନ୍ମତିଥି ପାଳନ କରି ଆସୁଥିଲେ । ୧୯୯୫ ମସିହାରେ ଇନ୍ଦିରା ଗାନ୍ଧୀ ମହିଳା ମହାବିଦ୍ୟାଳୟ ହଲ୍‌ରେ ଯେଉଁଭଳି ଭାବରେ ଉତ୍ସବ ପାଳନ କରାଗଲା, ତାହା ଥିଲା ଅଭୁତପୂର୍ବ । ଉପସ୍ଥିତ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳାମାନଙ୍କ ସଦିଚ୍ଛା ମୋତେ ଅଭିଭୂତ କରି ଦେଇଥିଲା । ସେହି ବର୍ଷ ମଙ୍ଗଳାସାହି 'ପ୍ରତିଷ୍ଠା ପୂଜା ସଂସଦ' ସହିତ ଦେଉଳ ସାହିର ସାଂସ୍କୃତିକ ତଥା ସ୍ୱେଚ୍ଛାସେବୀ ଓ ରେଜିଷ୍ଟ୍ରି-ଭୁକ୍ତ ଅନୁଷ୍ଠାନ "ଚେତନା ଚକ୍ର" ମଧ୍ୟ ସାମିଲ ହୋଇଥିଲେ ।

'ଚେତନା ଚକ୍ର'ର ଶ୍ରୀ ବିଜୟ ପ୍ରସାଦ ମହାନ୍ତି (ସାଧାରଣ ସମ୍ପାଦକ), ପ୍ରଫେସର କ୍ଷେତ୍ରମୋହନ ଶତପଥୀ, ଶ୍ରୀଯୁକ୍ତ ନେତ୍ରାନନ୍ଦ ପରିଜା, ବୟୋବୃଦ୍ଧ ସ୍ୱେଚ୍ଛାସେବୀ ଶ୍ରୀଯୁକ୍ତ ଯଦୁନନ୍ଦନ ବଣ୍ଟାଳ, ଅବସରପ୍ରାପ୍ତ ପୋଲିସ ଡି. ଏସ୍. ପି. ଶ୍ରୀଯୁକ୍ତ ବସନ୍ତ କୁମାର ଦାସ (ଉପ-ସଭାପତି), ଆଡ଼ଭୋକେଟ୍ ଶ୍ରୀଯୁକ୍ତ ଚଣ୍ଡିଚରଣ ରାଉତରାୟ (କୋଷାଧ୍ୟକ୍ଷ), ଶ୍ରୀମାନ୍ ମଧୁସୂଦନ ସାହୁ (ସହ-ସମ୍ପାଦକ), ଡାକ୍ତର କର୍ପୂର ଚରଣ ବେହେରା, ଶ୍ରୀଯୁକ୍ତ ଗୋକୁଳ ବିହାରୀ ମହାନ୍ତି (ଆଡ଼ଭୋକେଟ୍), ଶ୍ରୀଯୁକ୍ତ ରଘୁନାଥ ପ୍ରସାଦ ଦାସ, ଶ୍ରୀଯୁକ୍ତ ବସନ୍ତ କୁମାର ପଣ୍ଡା (ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିୟର), ଶ୍ରୀଯୁକ୍ତ ବସନ୍ତ କୁମାର ସ୍ୱାଇଁ, ଶ୍ରୀଯୁକ୍ତ ବୃନ୍ଦାବନ ଚନ୍ଦ୍ର ରଥ, ଶ୍ରୀଯୁକ୍ତ କ୍ଷେତ୍ରମୋହନ ଡଓ୍ୱାରୀ, ସର୍ବଶ୍ରୀଯୁକ୍ତ କୁଳମଣି ଦାସ, ଅର୍ଜୁନ ସାହୁ, ରାଧାଶ୍ୟାମ ପଟ୍ଟନାୟକ, ରବୀନ୍ଦ୍ର କୁମାର ସାହୁ, ଶ୍ରୀମତୀ ସରୋଜିନୀ ବେହେରା, ଶ୍ରୀମତୀ ଗାୟତ୍ରୀ ରାୟ, ଶ୍ରୀମତୀ ସୌଦାମିନୀ ପାଢ଼ୀ ଓ ଶ୍ରୀ ଫକୀର ସ୍ୱାଇଁ ପ୍ରମୁଖ ସମସ୍ତ ସଭ୍ୟ ଏହି ଉତ୍ସବରେ ଯୋଗଦାନ କରି ଏହାକୁ ସାଫଲ୍ୟମଣ୍ଡିତ କରିବାରେ ବହୁ ଯତ୍ନ କରିଥିଲେ । 'ମାତୃଭାଷା'ର ସମ୍ପାଦକ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମହାପାତ୍ର ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିଲେ ଏବଂ ଜାତୀୟ ଫିଲ୍ମ I.V. ଶିକ୍ଷା ଅନୁଷ୍ଠାନର ପ୍ରତିଷ୍ଠାତା ତଥା 'ଜୀବନ ରଙ୍ଗ' ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ରଣଧୀର ଦାସ ଉକ୍ତ ସଭାରେ ସଭାପତିତ୍ୱ କରିଥିଲେ । ବକ୍ତାମାନେ ବିଭିନ୍ନ ଦୃଷ୍ଟିକୋଣରୁ ଓଡ଼ିଆ ନାଟ୍ୟ-ସାହିତ୍ୟ ଏବଂ ସେଥିରେ ମୋ

ଅନାଗାନ ବିଷୟରେ ଆଲୋଚନା କରିଥିଲେ । ଶ୍ରୀମାନ୍ ମାନସ ଦାସ (ରମାଯୁଣୀ) ପୁଷ୍ପଗୁଚ୍ଛ ଦେଇ ମୋତେ ସମ୍ବର୍ଦ୍ଧନା ଜଣାଇଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, 'ଚେତନା ଚକ୍ର'ର ମୁଁ ହେଉଛି ସଭାପତି, ଏବଂ ଶ୍ରୀ ଅନଳ ଦାସଗୁପ୍ତ ଏହାର ଯୁଗ୍ମ-ସମ୍ପାଦକ । 'ପ୍ରତିଷ୍ଠା-ପୂଜା ସଂସଦ'ର କେତେକ ସଭ୍ୟ ମଧ୍ୟ 'ଚେତନା ଚକ୍ର'ର ସଦସ୍ୟ ରହିଛନ୍ତି । 'ଚେତନା ଚକ୍ର'ର ଅଭିମୁଖ୍ୟ ହେଉଛି ନିସ୍ୱାର୍ଥପର ଲୋକସେବା । ରାଜନୀତିକୁ ସମ୍ପୂର୍ଣ୍ଣ ବାଦ୍ ଦେଇ 'ବସୁଧୈବ କୁଟୁମ୍ବକମ୍' ଓ 'ସର୍ବେ ଭବନ୍ତୁ ସୁଖୀନଃ' ନୀତିରେ ତଥା ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ଏହି ଅନୁଷ୍ଠାନ କଟକ ନଗରୀ ଅଧିବାସୀଙ୍କ ସମୂହ ସ୍ୱାର୍ଥ ସାଧନ ଲାଗି ଉତ୍ସର୍ଗୀକୃତ । ଏକ ସମାଜ ବା ରାଷ୍ଟ୍ରର ଶକ୍ତି ଏହାର ଜନସାଧାରଣଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଓ ସଚେତନତା ଉପରେ ପର୍ଯ୍ୟବସିତ । ଏହି ସଚେତନତା ଜନତା ହୃଦୟରେ ଜାଗ୍ରତ କରାଇବା ଲକ୍ଷ୍ୟ ନେଇ 'ଚେତନା ଚକ୍ର' କାର୍ଯ୍ୟ କରି ଆସୁଅଛି । 'ଚେତନା ଚକ୍ର' ଏକ ରେଜିଷ୍ଟାର୍ଡ଼ ଅନୁଷ୍ଠାନ ଓ ଏହାର ମୁଖ୍ୟ କାର୍ଯ୍ୟାଳୟ ତେଲିଙ୍ଗାବଜାରରେ ଅବସ୍ଥିତ । ଶ୍ରୀଯୁକ୍ତ ନିତ୍ୟାନନ୍ଦ ପଣ୍ଡା ମହୋଦୟ ତାଙ୍କ ବାସଭବନ 'ନିବେଦିତା'ର ଏକ ପ୍ରକୋଷ୍ଠରେ 'ଚେତନା ଚକ୍ର'ର ଅଫିସ ଓ ସଭା ଲାଗି ଅନୁମତି ପ୍ରଦାନ କରି ଆମ୍ଭମାନଙ୍କୁ ବିଶେଷ ଉତ୍ସାହିତ ଓ ଉପକୃତ କରିଛନ୍ତି । ସେ ଜଣେ ନିଷ୍ଠାପର ରାଜନୈତିକ (କଂଗ୍ରେସ) କର୍ମୀ ହୋଇଥିଲେ ମଧ୍ୟ 'ଚେତନା ଚକ୍ର'ର ସଭ୍ୟ ଭାବେ କୌଣସି ମିଟିଂରେ ରାଜନୀତି ବିଷୟ କେବେହେଲେ ଉତ୍ଥାପନ କରିନାହାନ୍ତି ।

---

—ପାଞ୍ଚ—

William Shakespeare ଲେଖିଛନ୍ତି—

"All the world's a stage
And all the men and women
merely players.
They have their exits
and entrances......"

ବାସ୍ତବିକ ଏ ପୃଥିବୀ ଏକ ରଙ୍ଗମଞ୍ଚ । ଏହି ରଙ୍ଗମଞ୍ଚରେ ନିତ୍ୟ ନିୟମିତ ନାଟକ ଅଭିନୟ ଚାଲିଛି । ପିତା, ମାତା, ଭ୍ରାତା, ଭଗିନୀ, ପୁତ୍ର, ବଧୂ, ସନ୍ତାନ-ସନ୍ତତି, ବନ୍ଧୁ, କୁଟୁମ୍ବ, ସାହି ପଡ଼ିଶା ସମସ୍ତଙ୍କୁ ନେଇ ସଂସାର ଆଉ ସମାଜ

ଗଡ଼୍‌ଡ଼ଲିକା ପ୍ରବାହ ପରି ଚାଲି ଆସିଛି, ଚାଲି ଆସୁଛି ଏବଂ ଚାଲି ଆସୁଥିବ । ଏହି ଚାଲିବାରେ କିଛିଏ ହେଲେ ବ୍ୟତିକ୍ରମ ନାହିଁ, ନୂତନତ୍ୱ ମଧ୍ୟ ନାହିଁ ।

କୌଣସି ବିଷୟବସ୍ତୁକୁ ନେଇ ଲେଖାଯାଏ ନାଟକ, ପୁଣି କାଛକ ପରିକଳ୍ପନା ଉପରେ ନାଟକ ମଧ୍ୟ ରଚିତ ହୋଇଥାଏ । କିନ୍ତୁ ବର୍ତ୍ତମାନ ଆମ ଦେଶରେ ପ୍ରତ୍ୟେକ ସ୍ଥାନରେ ଯେପରି ନାଟକ ସବୁ ଅଭିନୀତ ହେଉଛି, ସେଭଳି ନାଟକ ଲାଗି ଏବେ ଆଉ କାହାଣୀ ଅବା କଥାବସ୍ତୁ ଖୋଜିବାର ଆବଶ୍ୟକତା ନାହିଁ କିମ୍ବା କଳ୍ପନା କରିବାର ଅବକାଶ ମଧ୍ୟ ନାହିଁ । ବୃଦ୍ଧ ପିତାମାତାଙ୍କୁ ତାଙ୍କ ଭାଗ୍ୟ ଉପରେ ଛାଡ଼ିଦେଇ ପୁଅବୋହୂ ବର୍ତ୍ତମାନ ବାହାରେ ତାଙ୍କ ନିଜ ସଂସାର ଚଳାଉଛନ୍ତି । ପିଲାଟିଦିନୁ ଯିଏ ବଢ଼ାଇ କୁଢ଼ାଇ ମଣିଷ କରିଥିଲା ତାର ଆପଣା ସ୍ୱାର୍ଥକୁ ବଳି ଦେଇ, ସେଇ ବଡ଼ଭାଇକୁ ସାନଭାଇ ବର୍ତ୍ତମାନ ଶତ୍ରୁ ବୋଲି ଭାବି ତାର ସର୍ବନାଶ କରିବାକୁ ପଛାଉନାହିଁ, ସମାଜରୁ ମାନବିକତା ଆଜି ଲୁପ୍ତ ପ୍ରାୟ, ଧର୍ମ କେବଳ ଲୋକ ଦେଖାଣିଆ ଆଡ଼ମ୍ବର ଭିତରେ ଚିହ୍ନି ରହିଛି । ରାଜନୈତିକ ଦୃଶ୍ୟପଟ ମଧ୍ୟ ବର୍ତ୍ତମାନ କଳଙ୍କିତ । କ୍ଷମତାର ଲୋଭ, ଅର୍ଥର ଲାଳସା ଓ ଭୋଗର ପ୍ରବୃତ୍ତି ଆଜି ଦେଶର ବଡ଼ପଣ୍ଡାମାନଙ୍କୁ ଅନ୍ଧ କରି ଦେଇଛି । ଶୃଙ୍ଖଳାରକ୍ଷକ ପୋଲିସ୍, ଶିକ୍ଷା ଦାତା ମାଷ୍ଟର, ଜୀବନ ରକ୍ଷାକାରୀ ଡାକ୍ତର ସମସ୍ତେ ଆଜି ଲାଞ୍ଚ ନେବାପାଇଁ ଆକୁଳ, ଏପରିକି ବିଚାରପତି ମଧ୍ୟ ଉତ୍କୋଚ ନେବାକୁ ପଶ୍ଚାତପଦ ନୁହନ୍ତି । ଏ ଲାଞ୍ଚଖିଆ, ସ୍ୱାର୍ଥ-ସର୍ବସ୍ୱ ଦେଶରେ ନାଟକ ତ ଅହରହ ଅଭିନୀତ ହେଉଛି । ପରଦା ବାହାରେ ନାଟକର ଯେଉଁ ଅଂଶ ଦର୍ଶକମାନେ ଦେଖୁଛନ୍ତି, ପରଦା ପଛପଟେ ତାର ବିଭତ୍ସତା ବହୁତ ବେଶି ।

ଭାରତର ବର୍ତ୍ତମାନ 'ଗଣତନ୍ତ୍ର'ରେ ଗୋଟିଏ ବିଶେଷତ୍ୱ ହେଉଛି, ଜଣେ ଗରିବ ଲୋକ ଅବା ଅଧସ୍ତନ ରାଜ-କର୍ମଚାରୀ ଯଦି ସାମାନ୍ୟ କୌଣସି ଦୋଷରେ ଦୋଷୀ ହୁଏ, ତାପାଇଁ କଠୋର ଦଣ୍ଡର ବ୍ୟବସ୍ଥା ରହିଛି, ମାତ୍ର ଧନୀ, ମାନୀ, ଅବା ସର୍ବୋଚ୍ଚ ଶାସନକର୍ତ୍ତା ଯଦି ନରହତ୍ୟା ବା ଅନ୍ୟ କୌଣସି ଗର୍ହିତ କାର୍ଯ୍ୟ ପାଇଁ ଦୋଷୀ ହୁଅନ୍ତି, ତାଙ୍କ ସମ୍ମାନ-ଜନକ ମୁକ୍ତି ପାଇଁ ବହୁ ଦ୍ୱାର ଖୋଲି ଯାଏ ! କିଛିଟା ଭାବମୂର୍ତ୍ତି ଅବଶ୍ୟ ନଷ୍ଟ ହୁଏ ସେମାନଙ୍କର, ଜନତା ଆଖିରେ ଅବଶ୍ୟ କିଛିଟା ନ୍ୟୁନ ବୋଲି ସାବ୍ୟସ୍ତ ହୁଅନ୍ତି ସେମାନେ ; କିନ୍ତୁ ପରିଶେଷରେ ଅର୍ଥ ଓ କ୍ଷମତାର ବଳ ତାଙ୍କୁ ପୁନର୍ବାର ଉଚ୍ଚପଦାଧିକାରୀ ହେବାରେ ସହାୟତା କରେ । ଏ ଗଣତନ୍ତ୍ର ଏକ ବିଚିତ୍ର ଗଣତନ୍ତ୍ର, ଯାହା ଧନୀକୁ ଆହୁରି ଆହୁରି ଧନ-ଶାଳୀ କରିଥାଏ ଓ ଦରିଦ୍ରକୁ ଦାରିଦ୍ର୍ୟ ସୀମାରେଖାର ଆହୁରି ତଳକୁ ଟାଣି ନେଇଯାଏ ! ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ମହାମନ୍ତ୍ରୀ କୌଟିଲ୍ୟ (ଚାଣକ୍ୟ) ରାଜକାର୍ଯ୍ୟ ପାଇଁ ଉଜ୍ଜ୍ୱଳ ଲ୍ୟାମ୍ପଟିଏ ବ୍ୟବହାର କରୁଥିଲାବେଳେ ବ୍ୟକ୍ତିଗତ କାର୍ଯ୍ୟପାଇଁ

ପୋ'ଲଙ୍କ ତେଲର ଗାପ ଜଳାଉଥିଲେ ବୋଲି ପରିବ୍ରାଜକ ମେଗାସ୍ଥିନିସ ତାଙ୍କ ବିବରଣୀରେ ଲିପିବଦ୍ଧ କରି ଯାଇଅଛନ୍ତି । ଭାରତର ପ୍ରଧାନମନ୍ତ୍ରୀ କୁଡ଼ିଆ ଘରେ ସରଳ ନିରାଡ଼ମ୍ବର ଜୀବନଯାପନ କରିବା ଲାଗି ମହାମ୍ନା ଗାନ୍ଧୀ ଉପଦେଶ ଦେଇ ଯାଇଛନ୍ତି ; ମାତ୍ର ଆଜିର ସର୍ବୋଚ୍ଚ ଶାସନକର୍ତ୍ତା ଭୋଗବିଳାସ ମଧ୍ୟରେ ଶୀତତାପ ନିୟନ୍ତ୍ରିତ ପ୍ରାସାଦରେ ରକ୍ଷୀ ପରିବେଷ୍ଟିତ ଓ ଦାସଦାସୀ ପରିବୃତ ହୋଇ ଆଡ଼ମ୍ବରପୂର୍ଣ୍ଣ ଜୀବନଯାପନ କରିବାରେ ବ୍ୟସ୍ତ ! କି ବିଡ଼ମ୍ବନା ! ପୃଥିବୀରେ ଯେତେପ୍ରକାର ଶାସନ ବ୍ୟବସ୍ଥା ରହିଛି, ତନ୍ମଧ୍ୟରେ ଗଣତନ୍ତ୍ର ହିଁ ଶ୍ରେଷ୍ଠ, ଭାରତବର୍ଷ ଏକ ଗଣତନ୍ତ୍ର-ରାଷ୍ଟ୍ର ହିସାବରେ ସର୍ବୋଚ୍ଚ ସମ୍ମାନ ଦାବି କରେ । ସାଧାରଣ ନାଗରିକର ମଧ୍ୟ ସମାନ ଅଧିକାର ରହିଛି. Freedom of speech ଠୁଁ ଆରମ୍ଭ କରି ଯେତେ ପ୍ରକାର ସ୍ୱାଧୀନତା ରହିଛି, ଆମେ ସମସ୍ତେ ତାହା ଭୋଗ କରୁଛୁ । ମାତ୍ର ଏହି ଗଣତନ୍ତ୍ର ଶାସନକୁ ଆମେ ଆଉ ଆମର ରାଷ୍ଟ୍ରନେତାମାନେ କଳୁଷିତ କରୁଛୁ । ଏହାର ମହତ୍ତ୍ୱକୁ ନଷ୍ଟ କରି ଦେଉଛୁ ଆମର ବ୍ୟକ୍ତିଗତ ସ୍ୱାର୍ଥ ସାଧନ ଲାଗି ; ଏଇଠି ଆମର ଅବଶୋଷ୍ !

ଯୌତୁକ ପ୍ରସଙ୍ଗରେ ଅନେକ ବକ୍ତା କହିଥାନ୍ତି; "ସାହିତ୍ୟ ମାଧ୍ୟମରେ, କବିତା ଓ ନାଟକ ମାଧ୍ୟମରେ ଲେଖକମାନେ ଭ୍ରଷ୍ଟାଚାରର ମୁଖା ଖୋଲି ଦିଅନ୍ତୁ, 'ଗଣ-ଚେତନା' ସୃଷ୍ଟି କରନ୍ତୁ"; ମାତ୍ର ଏ ଯୁଗରେ ଲୋକ ସବୁ ବୁଝି ଅବୁଝା, ସବୁ ଜାଣି ଅଜଣା —ଏ ଲୋକ ହୃଦୟରେ 'ଚେତନା' ସୃଷ୍ଟି କରିବ କେଉଁ ସାହିତ୍ୟ ? ଏତେ କହି, ଏତେ ବୁଝାଇ, ଏତେ ସାହିତ୍ୟ ତଥା ଆଇନକାନୁନ୍ ସୃଷ୍ଟି କରି, ବିଭତ୍ସ, ପାଶବିକ ଯୌତୁକ-ଯାତନା ଯଦି ଦେଶରୁ ଦୂର ହୋଇ ନ ପାରିଲା, କେଉଁ ଅସ୍ତ୍ରଧ ନେଇ ଯୌତୁକ-ରାକ୍ଷସକୁ ବଧ କରାଯିବ ? ଝିଅ ବାପ ଘରେ ଯୌତୁକ ଦେବାକୁ ଧକ ଧକ, କିନ୍ତୁ ପୁଅ ବାପାଘରରେ ଯୌତୁକ ଆଣିବାକୁ ସକସକ; ଏ ମନୋବୃତ୍ତି ଦୂର ନ ହେବା ପର୍ଯ୍ୟନ୍ତ ନାରୀ-ନିର୍ଯାତନାର ନିରୋଧ ପ୍ରୟାସ ଏକ ନିଷ୍ଫଳ ପ୍ରହସନ ।

ଆମେ ସବୁ ନାଟକ ଲେଖିବା ସମୟରେ ଓଡ଼ିଶାରେ ୩୪ଟି ପେଷାଦାର ରଙ୍ଗମଞ୍ଚ ଥିଲା । ତା'ଫଳରେ ନାଟକ ବହୁ ରଜନୀ ଧରି ଅଭିନୀତ ହେବା ସହିତ ବିଦଗ୍ଧ ପାଠକ, ଶ୍ରୋତା ଓ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ନାଟକର ସମାଲୋଚନା ନିୟମିତ ପ୍ରକାଶ ପାଉଥିଲା । ତେଣୁ ଅଧିକ ନାଟକ ଲେଖିବା ପାଇଁ ଆମ୍ଭେମାନେ ଉତ୍ସାହିତ ହେଉଥିଲୁ । ଧନ, ଯଶ, ପ୍ରତିଷ୍ଠା—କୌଣସିଟିର ଅଭାବ ନ ଥିଲା । ସେ ସବୁ ନାଟକର ମୁଦ୍ରଣ ଲାଗି ପ୍ରକାଶକମାନେ ଆଗେଇ ଆସୁଥିଲେ, କାରଣ ଗାଁ ଗହଳ ତଥା ନଗରାଞ୍ଚଳମାନଙ୍କରେ ଯୁବକମାନେ ସେ ସବୁ ନାଟକ ଅଭିନୟ ପାଇଁ ଖୋଜୁ

ଥିଲେ । କିନ୍ତୁ ବର୍ତ୍ତମାନ ପେଷାଦାର ରଙ୍ଗମଞ୍ଚ ଲୋପ ପାଇଯାଇ ଥିବାରୁ ସୌଖୀନ ରଙ୍ଗମଞ୍ଚ ବଡ଼ ନାଟକ ପରିବର୍ତ୍ତେ ଘଣ୍ଟିକିଆ ନାଟକ ସବୁ ଗ୍ରହଣ କରନ୍ତି । ଗୋଟିଏ ନାଟକ ଖୁବ୍ ହେଲେ ଥରେ ବା ଦୁଇଥର ଲାଗି ଅଭିନୀତ ହେଉଛି । ସେଥିପାଇଁ ପୂର୍ଣ୍ଣାଙ୍ଗ ନାଟକର ପ୍ରଚାର ଓ ପ୍ରସାର ଆଉ ନାହିଁ । ଚାହିଦା କମିଯାଇଥିବାରୁ ବହି ବିକ୍ରୀ ମଧ୍ୟ ଆଶାଜନକ ଭାବେ ହେଉ ନାହିଁ । ପ୍ରକାଶକର ଆଗ୍ରହ କ୍ରମେ କମି ଯାଉଛି ।

ସେ ଯାହା ହେଉନା କାହିଁକି, ଏବେ ଶ୍ରେଷ୍ଠ ନାଟକ (ନାଟିକା) ଲେଖକଙ୍କ ସଂଖ୍ୟା ବଢ଼ିଯାଇଛି । ଶ୍ରେଷ୍ଠ ନାଟକର ସଂଖ୍ୟା ବର୍ତ୍ତମାନ ବେଶି (ଯଦିଓ ସବୁ ଛପା ହୋଇପାରୁ ନାହିଁ) । ବେତାର ଓ ଦୂରଦର୍ଶନରେ ମଧ୍ୟ ଅନେକ ନାଟକ ପ୍ରସାରିତ ହେଉଛି । (ମୋର 'ବୋଝୁ' ନାଟକ ଦୂରଦର୍ଶନ ଦ୍ୱାରା ପ୍ରସ୍ତୁତ ଓ ପ୍ରସାରିତ ହୋଇଛି)

ନାଟକ, ନାଟିକା ଲେଖିବାରେ ଆଗ୍ରହୀ ତରୁଣ ନାଟ୍ୟକାରମାନଙ୍କୁ ମୋର ବିଶେଷ ଅନୁରୋଧ, ସେମାନେ କେବଳ କଳ୍ପନା-ବିଳାସୀ ନ ହୋଇ ଏ ଯୁଗର ବିଭିନ୍ନ ସମସ୍ୟା ଉପରେ ଦୃଷ୍ଟି ରଖି ନାଟକ ଲେଖନ୍ତୁ । ରଚନା ପ୍ରଭାବଶାଳୀ ହେଲେ ଆନନ୍ଦ ପରିବେଷଣ କରିବା ସଙ୍ଗେ ସଙ୍ଗେ ତାହା ଦର୍ଶକ ଉପରେ ନିଶ୍ଚିତ ପ୍ରଭାବ ପକାଇବ ଏବଂ ଆମ ଦେଶ ତଥା ସମାଜକୁ ଦୁର୍ନୀତିମୁକ୍ତ, ସୁସ୍ଥ ଓ ସୁନ୍ଦର କରିବାରେ ସହାୟକ ହୋଇପାରିବ ।

ଋଷି ଅରବିନ୍ଦ ଲେଖିଛନ୍ତି, "I never clamoured for money and power, and did my work in silence for love of my work, even as nature does, just because I had no claim or no aim, but to give out the best that was in me, was able to create a language, a literature and a nation," ଅର୍ଥ ଓ ସମ୍ମାନ ପ୍ରାପ୍ତି ଆଶା ନରଖି ନିରବଚ୍ଛିନ୍ନ ଭାବେ ସାହିତ୍ୟ ସାଧନା କରିବା ପ୍ରତ୍ୟେକ ସାହିତ୍ୟିକଙ୍କର ଶ୍ରେୟ ଓ ଧେୟ ହେଲେ, ଆମର ଭାଷା, ସାହିତ୍ୟ ଓ ଆମ ଜାତିର ଉନ୍ନତି ସାଧିତ ହେବ । Pronography ଉପରେ ଶସ୍ତା ଲୋକପ୍ରିୟ ସାହିତ୍ୟ ସୃଷ୍ଟି ଦ୍ୱାରା ପ୍ରଚୁର ଅର୍ଥ ଲାଭ ହୋଇପାରେ, କିନ୍ତୁ ତାହା ଆମ ସମାଜକୁ ଅଶ୍ଳୀଳତାର ଅନ୍ଧକାର ଭିତରକୁ ଠେଲି ଦେଇ ଧ୍ୱଂସ ବିଧ୍ୱସ୍ତ କରିଦେବ । ସାହିତ୍ୟ ହେଉଛି ଜାତିର ମେରୁଦଣ୍ଡ—ତାହା prono-graphy ଅବା plagiarism ଉପରେ ପ୍ରତିଷ୍ଠିତ ହୋଇପାରେନା ।

ପରାମର୍ଶ ବା ଉପଦେଶ ଦେବାର ଅଧିକାର ମୋର ଅଛି କି ନାହିଁ ଜାଣେନା, କିନ୍ତୁ ଅନୁରୋଧ କରିବାରେ କିଛି ବାଧା ନାହିଁ ବୋଲି ମନେ କରୁଛି । ନାଟ୍ୟ-

ସାହିତ୍ୟରେ ଅଶ୍ଳୀଳତା ରହିବା ଆଦୌ ସ୍ପୃହଣୀୟ ନୁହେଁ । "ପରର ଲୁଗା ପିନ୍ଧି ଯାତ୍ରକୁ ଗିବା"— ଯାହାକୁ ଇଂରାଜୀରେ Plagiarism କୁହାଯାଏ, ତା' ମଧ୍ୟ ବାଞ୍ଛନୀୟ ନୁହେଁ । ଥରେ କଲିକତାର ହାଓଡ଼ା ଅଞ୍ଚଳରେ ମୋର ସଙ୍ଗୀତଜ୍ଞ ବନ୍ଧୁ ୰ଉଦୟନାଥ ସାହୁଙ୍କ ସହିତ ମୁଁ ଓଡ଼ିଆ ନାଟକ 'ଚନ୍ଦ୍ରଗୁପ୍ତ' ଦେଖିବାକୁ ଯାଇଥିଲି । ପ୍ରବାସୀ ଓଡ଼ିଆ ଭାଇମାନଙ୍କ ଛଡ଼ା ବହୁ ବଙ୍ଗାଳୀ ଦର୍ଶକ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ନାଟକ ଆରମ୍ଭ ହେଲା । ଦ୍ୱିତୀୟ ଦୃଶ୍ୟ ପରେ ତୃତୀୟ ଦୃଶ୍ୟ ଆରମ୍ଭ ମାତ୍ରକେ ହଟ୍ଟଗୋଳ ଆରମ୍ଭ ହେଲା । ବଙ୍ଗଳା 'ଚନ୍ଦ୍ରଗୁପ୍ତ' ନାଟକର ନକଲ ବୋଲି ବଙ୍ଗାଳୀ ଦର୍ଶକମାନେ ଚିତ୍କାର କଲେ । ଆଉ ନାଟକ ? ହୋ-ହଲ୍ଲା ଭିତରେ ଆମେ ଦୁଇବନ୍ଧୁ ଲଜ୍ଜାରେ ମୁଣ୍ଡ ତଳକୁ କରି ମାନେ ମାନେ ଘେରୁ ଫେରି ଆସିଲୁ ।

ମୁଁ ଯେତେବେଳେ ଖ୍ରୀଷ୍ଟ କଲେଜରେ ବି. ଏ. ପଢ଼ୁଥାଏ, ଓଡ଼ିଆରେ 'ଭଞ୍ଜକବି' ବୋଲି ଖଣ୍ଡିଏ ନାଟକ ପାଠ୍ୟପୁସ୍ତକ ଥାଏ । ପରୀକ୍ଷା ପୂର୍ବରୁ ସେ ବହି ଖଣ୍ଡିକ କଲେଜ ଲାଇବ୍ରେରୀରୁ ଆଣି ପଢ଼ି ବସିଲି । ପ୍ରଥମରୁ ଲେଖାଥିଲା, ଉକ୍ତ 'ଭଞ୍ଜକବି' ନାଟକ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ଉପରେ ଆଧାରିତ । ମୌଳିକତା ଓ ଉପସ୍ଥାପନା ଦୃଷ୍ଟିରୁ ଅତି ଉପାଦେୟ ବିଚାରି ଭଞ୍ଜନଗର ପର୍ବ୍ୱତ ଘୁମୁସର, ନାଟ୍ୟକାରଙ୍କୁ ଏକ ସହସ୍ର ମୁଦ୍ରା ଓ ପ୍ରଶଂସାପତ୍ର ଦେଇ ସମ୍ମାନିତ କରିଛନ୍ତି । ପ୍ରଶଂସା ପତ୍ରଟି ମଧ୍ୟ ପୁସ୍ତକରେ ମୁଦ୍ରିତ ହୋଇଛି । କବିସମ୍ରାଟଙ୍କ ଜୀବନୀ ଓ କାବ୍ୟକୃତି ଉପରେ ମୋର ଯେତିକି ଧାରଣା ଥିଲା, ତା' ଅପେକ୍ଷା ବହୁ ତଥ୍ୟ, ବହୁ ଘଟଣା ଜାଣି ପାରିବି ବୋଲି ଭାବି ନାଟକଟିକୁ ଆମୂଳଚୂଳ ପାଠ କଲି । ମାତ୍ର ସେଥିରେ ମୁଁ କଣ ପାଇଲି ?···

ଉପେନ୍ଦ୍ରଭଞ୍ଜ ଜୀବନୀ ସମ୍ପର୍କିତ ଉକ୍ତ ନାଟକ ଆଦୌ ମୌଳିକ ନୁହେଁ କିମ୍ବା ସତ୍ୟ ଘଟଣା ଉପରେ ଆଧାରିତ ନୁହେଁ ! ବଙ୍ଗଳାର ଶ୍ରେଷ୍ଠ ନାଟ୍ୟକାର ଶ୍ରୀଯୁକ୍ତ ଦ୍ୱିଜେନ୍ଦ୍ର ଲାଲ୍ ରାୟଙ୍କ ଲିଖିତ ବିଖ୍ୟାତ ନାଟକ "ସାଜାହାନ"ର ବହୁ ଅଂଶର ନକଲ "ଭଞ୍ଜକବି" ନାଟକରେ ସନ୍ନିବେଶିତ କରାଯାଇଛି । କାହିଁ ଘୁମୁସରର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଆଉ କାହିଁ ଭାରତବର୍ଷର ମୋଗଲସମ୍ରାଟ୍ ସାହାଜାହାନ ? ମୋଗଲ ସମ୍ରାଟଙ୍କ ଜୀବନର ବହୁ ଘଟଣା ଭଞ୍ଜକବିଙ୍କ ଜୀବନୀ ସହିତ ପ୍ରାୟ ମିଶି ଏକାକାର ହୋଇଯାଇଛି । ଭାଷା ମଧ୍ୟ ପୁରାପୁରି ନକଲ । ତଳେ ଗୋଟିଏ ଉଦାହରଣ ଦେଉଛି ।

ଆଗ୍ରା ଦୁର୍ଗରେ ବନ୍ଦୀ ଥାଇ ସମ୍ରାଟ ସାହାଜାହାନ ତାଙ୍କ କନ୍ୟା ଜାହାନାରାଙ୍କୁ କହୁଛନ୍ତି, "ଶୋନୋ ଜାହାନାରା ! ଆଜ ସାଜାହାନ ବୃଦ୍ଧ ବଟେ,

କିନ୍ତୁ ସେ ସମ୍ରାଟ ସାଜାହାନ ! ସେ ଯଦି ବାହାରେ ଗିସ୍ତେ ତା'ର ସମବେତ ପ୍ରଜାବେର ସମ୍ମୁଖେ ଏକବାର ଦାଣ୍ଡାନେପାରେ, ତୁବ ଦେଖ୍‌ବ ଜାହାନାସ୍ !
ଶତ ସହସ୍ର ତଲ୍‌ଓ୍ୱାର୍ ଏକ ସଙ୍ଗେ ସୂର୍ଯ୍ୟ କିରନେ ଝଲ୍‌ସେ ଉଠ୍‌ବେ ।"
(ସାଜାହାନ ନାଟକରୁ ଉଦ୍ଧୃତ) 'ଭକ୍ତକବି' ନାଟକରେ ସେହିପରି ବୃଦ୍ଧ ସମ୍ରାଟ ଧନଞ୍ଜୟ ନୀଳକଣ୍ଠଙ୍କୁ କହୁଛନ୍ତି, "ଶୁଣ ନୀଳକଣ୍ଠ, ଆଜି ଧନଞ୍ଜୟ ବୃଦ୍ଧ ସତ୍ୟ, କିନ୍ତୁ ସେ ସମ୍ରାଟ ଧନଞ୍ଜୟ । ସେ ଯଦି ଥରେ ମାତ୍ର ତାର ସମବେତ ପ୍ରଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇପାରେ, ତୁମେ ଦେଖିବ ନୀଳକଣ୍ଠ ! ଶତ ସହସ୍ର ତରବାରି ଏକ ସଙ୍ଗେ ସୂର୍ଯ୍ୟ କିରଣରେ ଝଲସି ଉଠିବ !" ଆଉ ଅଧିକ ଦୃଷ୍ଟାନ୍ତର ପ୍ରୟୋଜନ ନାହିଁ । ଆଉରଙ୍ଗଜେବଙ୍କ ଦରବାରରେ ଘାତକ ଜିହନ ଅଲ୍ଲୀ ଯେତେବେଳେ ଯୁବରାଜ ଦାରା ସିକୋ ଓ ତାଙ୍କ ପୁତ୍ର ସିପାରର କଟାମୁଣ୍ଡ ନେଇ ଭେଟି ଦେଇଛି, ଆଉରଙ୍ଗଜେବ ସେ ବୀଭତ୍ସ ଦୃଶ୍ୟ ଦେଖି ଥରି ଉଠିବନ୍ତି । ତେଣୁ ଜିହନ ଅଲ୍ଲୀ ଯେତେବେଳେ ସମ୍ରାଟଙ୍କୁ ତାର ଏହି କାର୍ଯ୍ୟ ପାଇଁ ପୁରସ୍କାର ମାଗିଛି, ସମ୍ରାଟ କହିବନ୍ତି, "ଘାତକ ! ଏକେ ନିଯ୍ସେ ଯାଅ । ପ୍ରାନ୍‌ଦଣ୍ଡ ଓ'ଏର୍ ଉପେ୍‌କ୍ତ ପୁରସ୍କାର !" ଠିକ୍ ଏହିପରି ଭାବରେ ଘାତକ କଟାମୁଣ୍ଡ ନେଇ ମଣ୍ଡାରାଣୀଙ୍କୁ ଉପହାର ଦେଇଛି 'ଭକ୍ତକବି' ନାଟକରେ ଏବଂ ପୁରସ୍କାର ସ୍ୱରୂପ ପାଇଛି ମୃତ୍ୟୁଦଣ୍ଡ ।

ମୌଳିକତା ତଥା ସତ୍ୟ ଜୀବନୀ ତତ୍ତ୍ୱ ଆଧାରିତ 'ଭକ୍ତକବି' ନାଟକର ରଚୟିତା (ନାମ ମୁଁ ପ୍ରକାଶ କରିବାକୁ ଚାହୁଁନାହିଁ) ପାଇଛନ୍ତି ପ୍ରଶଂସାପତ୍ର ଏବଂ ଏକ ସହସ୍ର ମୁଦ୍ରା !

ଏଇଭଳି ବହୁ ଓଡ଼ିଆ ନାଟକରେ (ଯାତ୍ରା ନାଟକରେ ମଧ୍ୟ) plagiarismର ଅନେକ ଦୃଷ୍ଟାନ୍ତ ରହିଛି; କିନ୍ତୁ ନିଜେ ଜଣେ ନାଟ୍ୟକାର ହୋଇଥିବାରୁ ଅନ୍ୟମାନଙ୍କୁ ସମାଲୋଚନା କରିବା ଉଚିତ ହେବ ନାହିଁ ବୋଲି ଅଗତ୍ୟା କ୍ଷାନ୍ତ ହେଲି ।

ପୁଅ ବୁଢ଼ା ହେଇ ପଡ଼ିଲେ, ମା'ବଞ୍ଚିଥିବା ଯାକେ ପୁଅର ଜନ୍ମଦିନ ପାଳନ କରେ । ଆଉ କିଛି ନ କଲେ ବି, ବୁଢ଼ା ଚକୁଳି କରି ଷଠୀଦେବୀଙ୍କ ପାଖରେ ଭୋଗ କରେ ଓ ପୁଅର ଦୀର୍ଘ ଜୀବନ କାମନା କରି ମୁଣ୍ଡିଆ ମାରେ । ବୋଉ ବଞ୍ଚିଥିବା ଯାକେ ମୋ ପାଇଁ ସେଇଆ କରୁଥିଲା ଓ ନୂଆ ଧୋତି ପିନ୍ଧିବାକୁ ବାଧ୍ୟ କରୁଥିଲା । ତାର ମୃତ୍ୟୁପରେ ମୋ ସ୍ତ୍ରୀ ସରୋଜିନୀ ବୁଢ଼ା ଚକୁଳି ଲାଗି କରି ଏ ପର୍ଯ୍ୟନ୍ତ ଜନ୍ମଦିନ ପାଳନ କରୁଛନ୍ତି । କିନ୍ତୁ ୧୯୯୨ ମସିହାଠାରୁ ଏ ପର୍ଯ୍ୟନ୍ତ ମଙ୍ଗଳା ସାହିର "ପ୍ରତିଭା ପୂଜା ସଂସଦ" ଆନୁକୂଲ୍ୟରେ ନଭେମ୍ବର ତା ୧୩ ରିଖ ଦିନ ଜୟନ୍ତୀ ପାଳିତ ହେଉଛି । ଦେଉଳସାହିର ସ୍ୱେଚ୍ଛାସେବୀ ଅନୁଷ୍ଠାନ "ଚେତନା

ଚକ୍ର'' (ଯାହାର ସଭାପତି ହେଉଛି ମୁଁ) ୧୯୯୫ ଓ ୧୯୯୬ ମସିହାରେ "ପ୍ରତିଭା ପୂଜା ସଂସଦ'' ସହିତ ସହଯୋଗୀ ଅଟନ୍ତି । ପ୍ରଥମ ଦୁଇବର୍ଷ ମଙ୍ଗଳା ସାହି ଶ୍ରୀ ବୁଢ଼ୀ ମଙ୍ଗଳା ମନ୍ଦିରରେ (ପ୍ରଥମ ବର୍ଷ ଶ୍ରୀ ଶ୍ରୀଚରଣ ଦାସ ସଭାପତି, ଦ୍ୱିତୀୟ ବର୍ଷ ଶ୍ରୀ ବଟକୃଷ୍ଣ ବେହେରା ସଭାପତି), ୧୯୯୪ ମସିହାରେ 'ଜୀବନରଙ୍ଗ' ଷ୍ଟୋନ ରୋଡ୍, କଟକ ପରିସରରେ (ସଭାପତି ଶ୍ରୀ ରଣଧୀର ଦାସ ଓ ତାଙ୍କର ସଭାପତିତ୍ୱରେ ୧୯୯୫ ଓ ୧୯୯୬ ମସିହାରେ କଟକର ଇନ୍ଦିରା ଗାନ୍ଧୀ ମହିଳା ମହାବିଦ୍ୟାଳୟର ହଲରେ ଜୟନ୍ତୀ ପାଳିତ ହୋଇଥିଲା । ୧୯୯୬ ମସିହା ନଭେମ୍ବର ୧୩ ତାରିଖ ଜୟନ୍ତୀ ଉତ୍ସବରେ ମୁଖ୍ୟ ଅତିଥିଭାବେ ଯୋଗଦାନ କରିଥିଲେ ଓଡ଼ିଶାର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ମାନ୍ୟବର ସେକ୍ ମତଲୁବ ଅଲ୍ଲୀ ମହୋଦୟ, ପ୍ରଦୀପ ଜାଳି ଉତ୍ସବର ଉଦ୍‌ଘାଟନ କରିଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀଯୁକ୍ତ ଗୌରକିଶୋର ଦାସ ଓ ସମ୍ମାନିତ ଅତିଥି ଭାବେ ଯୋଗଦାନ କରିଥିଲେ ସିକିମ୍ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ଯୁଗଲ କିଶୋର ମହାନ୍ତି ଓ କଟକ ଖ୍ରୀଷ୍ଟ କଲେଜର ପୂର୍ବତନ ଅଧ୍ୟକ୍ଷ ଅଧ୍ୟାପକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ । ଏକ ମନୋଜ୍ଞ ପରିବେଶ ମଧ୍ୟରେ ଉକ୍ତ ସାହିତ୍ୟ ସଭା ଅନୁଷ୍ଠିତ ହୋଇଥିଲା । ମନ୍ତ୍ରୀ ଶ୍ରୀଯୁକ୍ତ ଅଲ୍ଲୀ "ଜୀବନର ଜୟଯାତ୍ରା'' ଆତ୍ମଜୀବନୀ ପୁସ୍ତକର ଉଦ୍‌ଘାଟନ କରିଥିଲେ । ଶ୍ରୀଯୁକ୍ତ ଯୁଗଳକିଶୋର ମହାନ୍ତି ଏହି ଅବସରରେ ଉତ୍କଳର ଖ୍ୟାତନାମା ମଞ୍ଚ ଓ ଚଳଚିତ୍ର ଶିଳ୍ପୀ ଶ୍ରୀଯୁକ୍ତ ସାମୁଏଲ ସାହୁ (ବାବି ଙ୍କୁ ଉତ୍ତରୀୟ ଓ ମାନପତ୍ର ପ୍ରଦାନ କରି ସମ୍ମାନିତ କରିଥିଲେ । ଉତ୍ସବ ଶେଷରେ ମୋ ରଚିତ ଏକ ଶ୍ରେଷ୍ଠ ନାଟକ 'ଆମେ ସବୁ ବୋକା' 'ଜୀବନରଙ୍ଗ' ପରିଚାଳିତ 'ଜାତୀୟ ରଙ୍ଗମଞ୍ଚ ଓ ଚଳଚିତ୍ର' ପ୍ରଶିକ୍ଷଣ N. A. F. T.) କଳାକାରମାନଙ୍କଦ୍ୱାରା ଅଭିନୀତ ହୋଇଥିଲା । ଶହ ଶହ କଳାପ୍ରେମୀ ଓ ସାହିତ୍ୟଅନୁରାଗୀଙ୍କ ସୌଜନ୍ୟମୂଳକ ଉପସ୍ଥିତି ସହିତ ସର୍ବଶ୍ରୀ ନେତ୍ରାନନ୍ଦ ପରିଜା, ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ, ଦେବେନ୍ଦ୍ର ସାହୁ, ଆଡ଼ଭୋକେଟ୍ କ୍ଷେତ୍ରମୋହନ ସାମଲ, ବିଜୟ ପ୍ରସାଦ ମହାନ୍ତି, ଅନିଲ କୁମାର ଦାସଗୁପ୍ତ, ଯଦୁନନ୍ଦନ ବିଶ୍ୱାଳ, ବୃନ୍ଦାବନଚନ୍ଦ୍ର ରଥ, ବସନ୍ତ କୁମାର ଦାସ, ଆଡଭୋକେଟ୍ ଚଣ୍ଡୀଚରଣ ରାଉତରାୟ, ନିର୍ମଳ କୁମାର ଜେନା, କବି ରାଧାଶ୍ୟାମ ପଟ୍ଟନାୟକ, ବସନ୍ତ କୁମାର ସ୍ୱାଇଁ, ମଧୁସୂଦନ ସାହୁ ଓ ଦୀନବନ୍ଧୁ ଭୂକ୍ତା ପ୍ରମୁଖଙ୍କ ସକ୍ରିୟ ସହଯୋଗ ତଥା ସଙ୍ଗଠନ ଦକ୍ଷତା ଯୋଗୁଁ ଏହି ଜୟନ୍ତୀ ଉତ୍ସବ ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିଥିଲା । ସେହି ସନ୍ଧ୍ୟାର ମହନୀୟ ସ୍ମୃତି ମୋ ଜୀବନରେ ଅପାଶୋରା ହୋଇ ରହିବ । ଏହି ଅବସରରେ ମୁଁ 'ପ୍ରତିଭା ପୂଜା ସଂସଦ' ଓ 'ଚେତନା ଚକ୍ର'ର ସମସ୍ତ ପୁରୁଷ ଓ ମହିଳା ସଦସ୍ୟମାନଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି ।

ଜୟନ୍ତୀ ପାଳିତ ହେବାର ଏକ ସପ୍ତାହ ପରେ 'ଆଦି ନାଟ୍ୟକାର ସ୍ମୃତି ସଂସଦ' ମାହାଙ୍ଗା (କଟକ)ର ସଭାପତି ଅଧ୍ୟାପକ ଶ୍ରୀଯୁକ୍ତ ବିଜୟାନନ୍ଦ ସିଂହ ମୋ ଘରକୁ ଆସି ମୋତେ ନିମନ୍ତ୍ରଣ ଜଣାଇଲେ ୨୫ । ୧୧ । ୯୬ ତାରିଖରେ ମାହାଙ୍ଗା ଯାଇ ଆଦି ନାଟ୍ୟକାର ସମ୍ମାନ ୯୬ ଗ୍ରହଣ କରିବା ପାଇଁ । ମୋ ସ୍ୱୀକୃତି ଲାଭ କଲା ପରେ ଉକ୍ତ ଦିନ ସେ ମୋତେ ସାଙ୍ଗରେ ନେଇ ମାହାଙ୍ଗା ଗଲେ । ମୋ ସାଙ୍ଗରେ ଗଲେ ମୋର କଲେଜ ସାଥୀ ଡକ୍ଟର ଅସିତ କବି । ଉତ୍କଳର ବରପୁତ୍ର ଫକୀରମୋହନ, ଗଙ୍ଗାଧର ପ୍ରଭୃତିଙ୍କ ଜୀବନୀ ଲେଖିବା ବ୍ୟତୀତ ଅସିତ୍ ବାବୁ ସମାଲୋଚନା ଓ ପ୍ରବନ୍ଧ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ବେଶ୍ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ସେଦିନ ସାହିତ୍ୟ ସଭାର ମୁଖ୍ୟ ଅତିଥି ଥିଲେ ଓଡ଼ିଶାର ଗ୍ରାମ୍ୟ-ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ମତଲୁବ ଅଲ୍ଲୀ । ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ ଶ୍ରୀମାନ୍ କିଶୋର ଶତପଥି, 'ସମାଜ'ର ସହ-ସମ୍ପାଦକ ଓ ମୁଖ୍ୟବକ୍ତା ଥିଲେ ପ୍ରଫେସର୍ ଅସିତକବି ।

'ଆଦି-ନାଟ୍ୟକାର ସ୍ମୃତି ସଂସଦ' ଓ 'କୃଷି ଓ ସ୍ମୃତି' ମାହାଙ୍ଗାର କର୍ମକର୍ତ୍ତା ଓ ସଭ୍ୟବୃନ୍ଦଙ୍କ ଆନୁକୂଲ୍ୟରେ ଉକ୍ତ ଉତ୍ସବାନୁଷ୍ଠାନ ପ୍ରଯୋଜିତ ହୋଇଥିଲା । ଓଡ଼ିଶାର ଆଦି ନାଟ୍ୟକାର ୰ ଜଗନ୍ ମୋହନ ଲାଲ୍‌ଙ୍କ ('ଝଙ୍କାର' ଜାନୁଆରୀ ୧୯୯୬ ସମ୍ପାଦକୀୟ ଅନୁସାରେ ଲାଲ ନୁହେଁ, ଲାଲ୍ ଓ 'ଝଙ୍କାର' ୧୯୯୬ରେ ପ୍ରକାଶିତ ପ୍ରବନ୍ଧ ଜଗନ୍ ମୋହନ ଲାଲ୍. ଏକ ସ୍ପଷ୍ଟୀକରଣ—ଅଧ୍ୟାପିକା ବିଦ୍ୟୁତ୍‌ପ୍ରଭା ନାୟକ) ଆବକ୍ଷ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କଲାପରେ ମୁଖ୍ୟଅତିଥି ଶ୍ରୀଯୁକ୍ତ ଅଲ୍ଲୀ ଉତ୍ସବର ଶୁଭ ଉଦ୍‌ଘାଟନ କରିଥିଲେ ପ୍ରଦୀପ ପ୍ରଜ୍ୱଳନ କରି । ଉତ୍ସବର ସଭାପତି ଅଧ୍ୟାପକ ଡକ୍ଟର ବିଜୟାନନ୍ଦ ସିଂହ ଅତିଥିମାନଙ୍କର ପରିଚୟ ପ୍ରଦାନ କଲାପରେ ଭାଷଣ ପର୍ବ ଆରମ୍ଭ ହେଲା । ୰ ଲାଲ୍ ମହୋଦୟଙ୍କର ନାଟକ 'ବାବାଜି', 'ସତୀ' ଓ ଅନ୍ୟାନ୍ୟ ସାହିତ୍ୟକୃତିର ଆଲୋଚନା ପରେ ପରେ ମୋତେ ଆଦି-ନାଟ୍ୟକାର ସମ୍ମାନ-୯୬ ଅଙ୍ଗବସ୍ତ୍ର, ମାନପତ୍ର, ପୁଷ୍ପଗୁଚ୍ଛ ସହ ପ୍ରଦାନ କରାଗଲା । ସମ୍ବର୍ଦ୍ଧନା ଉତ୍ତରରେ ମୁଁ କହିଥିଲି, "ସାଲେପୁର ଓ ମାହାଙ୍ଗା ଅଞ୍ଚଳରେ ବହୁ ସାହିତ୍ୟିକ, ଶିଳ୍ପୀ ଓ କର୍ମଯୋଗୀ ଜନ୍ମଗ୍ରହଣ କରି ଏହି ମାଟିକୁ ପବିତ୍ର କରିଯାଇଛନ୍ତି । ସେମାନଙ୍କ ମଧ୍ୟରେ ନାଟ୍ୟକାର ଜଗନମୋହନ ଲାଲ୍‌ଙ୍କ ବ୍ୟତୀତ, ପଲ୍ଲୀକବି ନନ୍ଦକିଶୋର ବଳ, ଗଣକବି ବୈଷ୍ଣବ ପାଣି, ସୁସାହିତ୍ୟିକ ଜ୍ଞାନୀନ୍ଦ୍ର ବର୍ମା, ରାଜେନ୍ଦ୍ର ବର୍ମା, ଅମର ଚିତ୍ରଶିଳ୍ପୀ ବିମ୍ବାଧର ବର୍ମା, କର୍ମଯୋଗୀ ପ୍ୟାରୀମୋହନ ଆଚାର୍ଯ୍ୟ, ବାଗ୍ମୀ ବିଶ୍ୱନାଥ କର (ସମସ୍ତେ ସ୍ୱର୍ଗତ) ପ୍ରମୁଖ ଓ ପ୍ରଖ୍ୟାତଯଶା ସୁଲେଖିକା ବିଦୁଷୀ ଲବଙ୍ଗଲତା ଦେବୀଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ରାଜ୍ୟରୁ ତଥା ରାଜ୍ୟବାହାରୁ ବହୁ ସମ୍ମାନ, ବହୁ ପୁରସ୍କାର ଲାଭ

କରଥିଲେ ମଧ୍ୟ, ଆପଣା ଗାଁ ଭୂଇଁରେ ମୋତେ ଯେଉଁ ସମ୍ମାନ ମିଳୁଛି, ତାହା ମୋ ଜୀବନକୁ ଧନ୍ୟ କରୁଛି ।" ଏହି କଥାରେ ଉପସ୍ଥିତ ଜନତା ବିପୁଳ କରତାଳି ଓ ହର୍ଷଧ୍ୱନି ମଧ୍ୟରେ ମୋତେ ସ୍ୱାଗତ କରିଥିଲେ । ଆପଣା ଆପଣା ବାଡ଼ି ବଗିଚାରୁ ଫୁଲ ତୋଳି, ମାଳ ଗୁନ୍ଥା କରି ଆଣି ବହୁ ବ୍ୟକ୍ତି ମୋ ଗଳାରେ ଲମ୍ବାଇ ଦେଇ-ଥିଲେ । ମୋର ମନେ ହେଲା, ଫୁଲମାଳରେ ମୋର ସାରା ଶରୀର (କେବଳ ମୁଖକୁ ଛାଡ଼ି) ଆବୃତ୍ତ ହୋଇଯାଇଛି ।

ସେଦିନର ସେହି ମଧୁର ସ୍ମୃତି ମୋ ଜୀବନରେ ଅପାଶୋରା ହୋଇ ରହିଯିବ ।

ତା ୧୦ । ୮ । ୯୬ ରିଖର ଏକ ମହନୀୟ ସନ୍ଧ୍ୟା । ପ୍ରବୀଣ ସାହିତ୍ୟ-ସେବୀ ସ୍ୱର୍ଗତ ମହାପାତ୍ର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱିତୀୟ ଶ୍ରାଦ୍ଧୋତ୍ସବ ଭୁବନେଶ୍ୱର 'ସୂଚନା ଭବନ'ଠାରେ ଅନୁଷ୍ଠିତ ହୋଇଥିଲା । ସେହି ସ୍ମୃତି ସଭାରେ ମୁଖ୍ୟ-ଅତିଥି ଭାବେ ଯୋଗ ଦେବାକୁ 'ମହାପାତ୍ର ରାଜେନ୍ଦ୍ର ପ୍ରସାଦ ସ୍ମୃତି ସଂସଦ' ପକ୍ଷରୁ ମୋତେ ଆମନ୍ତ୍ରିତ କରାଯାଇଥିଲା । ଉକ୍ତ ସଭାରେ ଅଧ୍ୟକ୍ଷତା କରିଥିଲେ ଓଡ଼ିଶାର ପୂର୍ବତନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଯଦୁନାଥ ଦାସ ମହାପାତ୍ର ଓ ସମ୍ମାନିତ ଅତିଥିଭାବେ ଯୋଗ ଦେଇଥିଲେ ରାଜ୍ୟର ପୂର୍ବତନ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପାଟଶାଣୀ, 'ନବରବି'ର ସମ୍ପାଦିକା ଶ୍ରୀମତୀ ସନ୍ଧ୍ୟା ମହାନ୍ତି ଓ 'ସ୍ୱରାଜ୍ୟ' ସମ୍ପାଦକ ଶ୍ରୀଯୁକ୍ତ କୃଷ୍ଣମୋହନ ରାଓ ପ୍ରମୁଖ । ମୁଖ୍ୟ ଅତିଥି ଭାବେ ମୁଁ ପ୍ରଦୀପ ପ୍ରଜ୍ୱଳିତ କରି ସ୍ମୃତି ସଭାର ଉଦ୍‌ଘାଟନ କରିଥିଲି ଏବଂ ସ୍ମୃତି ସଂସଦ ତରଫରୁ ସମ୍ବର୍ଦ୍ଧିତ ବ୍ୟକ୍ତିମାନଙ୍କୁ ଉତ୍ତରୀୟ ଓ ମାନପତ୍ର ପ୍ରଦାନ କରିଥିଲି । ଭାଷଣ ପ୍ରସଙ୍ଗରେ ୰ ରାଜେନ୍ଦ୍ର ବାବୁଙ୍କ ସ୍ମୃତିଚାରଣ କରିବାକୁ ଯାଇ ମୁଁ ତାଙ୍କର କଳା, ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ଥିବା ଅବଦାନ ବିଷୟରେ ଆଲୋକପାତ କରିଥିଲି । ମହାପାତ୍ର ରାଜେନ୍ଦ୍ର ପ୍ରସାଦ କଲିକତାରେ ରହି ପ୍ରବାସୀ ଓଡ଼ିଆଙ୍କ ପାଇଁ ବହୁତ କାର୍ଯ୍ୟ କରିଥିଲେ । ସେ ଥିଲେ 'ଆସନ୍ତା କାଲି'ର ପରିଚାଳନା ସମ୍ପାଦକ ଓ 'ନବରବି' ପତ୍ରିକା ପାଇଁ ନିୟମିତ ଗଳ୍ପ, କାହାଣୀ ପ୍ରଭୃତି ଲେଖୁଥିଲେ । ସମ୍ବାଦପତ୍ର 'ଦୈନିକ ସ୍ୱରାଜ୍ୟ' ଓ 'ଗଣତନ୍ତ୍ର ପରିଷଦ'ର କଲିକତା ଓ କଟକର ପ୍ରତିନିଧି ଭାବେ, 'ହିନ୍ଦୁସ୍ଥାନ ସମାଚାର' ସମ୍ବାଦପତ୍ରର କଟକ ପ୍ରତିନିଧି ଏବଂ 'ଶ୍ରମିକ' ସାପ୍ତାହିକର ଥିଲେ ବାର୍ତ୍ତା-ସମ୍ପାଦକ । ତାଙ୍କର ଲେଖା 'ଈଶ୍ୱରଭକ୍ତ', 'ଅନ୍ତର ଲିପି', 'ଅନାଡ଼ି', 'ପ୍ରିୟତମେଷୁ' ଓ 'ଶୁଭଲଗ୍ନ' ପ୍ରଭୃତି ଉପନ୍ୟାସ, 'ନିର୍ମଳ ରାଜମୂର୍ତ୍ତି' ଓ 'ସମସ୍ତର ଚକ' ନାଟକ ବହୁ ପ୍ରଶଂସିତ । ୧୯୬୮ ମସିହାରେ ସେ 'ଭକ୍ତଧ୍ରୁବ' ଚଳଚିତ୍ରର ପ୍ରଯୋଜନା କରିଥିଲେ ଓ ୰ ନରେନ୍ ମିତ୍ରଙ୍କ ପ୍ରଯୋଜିତ 'ନାରୀ' ଚଳଚିତ୍ରରେ ସେ ନିଜେ ଅଭିନୟ କରିବା ସହ ତାର ସହକାରୀ

ନିର୍ଦ୍ଦେଶକ ଭାବେ କାର୍ଯ୍ୟ କରିଥିଲେ । ଏହା ବ୍ୟତୀତ 'ଦି କଳିଙ୍ଗ ଗ୍ରାମୋଫୋନ୍' ନାମକ ଏକ କମ୍ପାନୀ ଗଠନ କରି ସେ ବହୁ ସଙ୍ଗୀତ, ଭଜନ ଓ ଗୀତିନାଟ୍ୟ ପ୍ରଭୃତି 'ରେକର୍ଡ' କରାଇଥିଲେ । ପ୍ରକୃତତଃ ସେ ଥିଲେ ମିଷ୍ଟଭାଷୀ, ବନ୍ଧୁବତ୍ସଳ ଏବଂ ପରୋପକାରୀ । ତାଙ୍କ ସହିତ ବହୁକାଳରୁ ମୋର ବନ୍ଧୁତା ଥିଲା ଏବଂ ପରବର୍ତ୍ତୀ ସମୟରେ ଆମେ ଉଭୟେ ସମ୍ବନ୍ଧୀ ହେବା ବିଷୟ ମୁଁ ପୂର୍ବରୁ ଲେଖିଛି ।

ମୋତେ ଯେତେବେଳେ ମାତ୍ର ୪ ବର୍ଷ ବୟସ, ମୁଁ ଥରେ ବାରିପଦାରୁ ଆସି ଗାଁରେ କିଛିଦିନ ରହିଥିଲି । ସେ ସମୟରେ ଗୋଟିଏ ଘଟଣା (ମୋ ବୋଉଠୁଁ ଶୁଣିଥିବା) ଏଠାରେ ଲେଖୁଛି । ସେତେବେଳେ ଜଣେ ସିଦ୍ଧଯୋଗୀ ଭାବେ 'ରତ୍ନାକର ବାବା' କେନ୍ଦ୍ରାପଡ଼ା, ସାଲେପୁର, ବହୁଗ୍ରାମ ପ୍ରଭୃତି ଅଞ୍ଚଳରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ସେ ଥିଲେ ଶ୍ମଶାନ-ବାସୀ । ସେହିଠାରେ ବସି ସେ ତପ ସାଧନା କରୁଥିଲେ । କୌଣସି ରୋଗୀ ଯନ୍ତ୍ରଣା ସହି ନ ପାରି ତାଙ୍କ ଶରଣାଗତ ହେଲେ ଗୋଟାଏ ଶକ୍ତ ଚାପୁଡ଼ାରେ ବାବା ତାକୁ ରୋଗମୁକ୍ତ କରୁଥିଲେ । ସେ ଥରେ ଆମ ଗାଁକୁ ଆସିଥିଲେ । ଆମ ଅଗଣାରେ ମୋତେ ଖେଳୁଥିବାର ଦେଖି ସେ ହଠାତ୍ ମୋତେ ଉଠାଇ ନେଇ ତାଙ୍କ କାନ୍ଧରେ ବସାଇ ପଳାଉଥିଲେ । ଏହା ଦେଖି ମୋ ବୁଢ଼ୀ ମା' (୯ ସୁମତି ଦେଈ) କାନ୍ଦି ଉଠିଲା ଓ ଚିତ୍କାରରେ ଡାକ ପକାଇଲା । ବାବାଙ୍କ ଆଗକୁ ଯାଇ ଲମ୍ବ ହୋଇ ତାଙ୍କ ଗୋଡ଼ ତଳେ ପଡ଼ିଗଲା । କହିଲା, 'ବାବା, ମୋ ନାତିକୁ ଛାଡ଼ିଦିଅ । ମୋର ସେଇ ଗୋଟିକ ନାତି ।' ବାବା କହିଲେ, 'ଯାବେ ଉଠି ଯା, ମୁଁ କାହାରି କଥା ଶୁଣିବିନି । ଏାକୁ ପଥରରେ ଛେଚି କଂସ ଭଳିଆ ମାରିଦେବି ।' କାନ୍ଦି କାନ୍ଦି ମୋ ମା' କହିଲା, 'ତାକୁ ମାର ନା, ବାବା, ଦୟା କର । ମତେ ପଛକେ ମାରି ଦିଅ, ମୋ ନାତିକୁ ଛାଡ଼ି ଦିଅ । ମୁଁ ନେହୁରା ହେଉଛି'—କହୁଥାଏ, କାନ୍ଦୁଥାଏ, ବାବାଙ୍କ ପଛରେ ଗୋଡ଼ାଉଥାଏ । ସେତେବେଳକୁ ଅନ୍ୟମାନେ ଆସି ପହଞ୍ଚି ଗଲେଣି । ସମସ୍ତଙ୍କ ତୁଣ୍ଡରେ 'ହରିବୋଲ' ଧ୍ୱନି । କିନ୍ତୁ···ଶେଷକୁ ରତ୍ନାକର ବାବାଙ୍କ ହୃଦୟ ବୋଧହୁଏ ତରଳି ଗଲା । ସେ ମତେ କାନ୍ଧରୁ ଓହ୍ଲାଇ ଲଥ୍ କରି ତଳେ ଥୋଇଦେଲେ । କହିଲେ, 'ଅବେ ବୁଢ଼ୀ, ନେ ତୋ ନାତିକି । ଶଳା, ଏଇଟା ଗୋଟାଏ ବିରାଟ ପୁରୁଷ ହବ, ନେ ବେ, କିଏ ମାରୁ ପକାଉଛି ? ଶଳା ବୁଢ଼ୀ ଗୋଟାଏ ନାଟ ଲଗେଇଛୁ ଏଠି ।' ('ଶଳା' ଓ 'ବେ', 'ଆବେ' ବାବାଙ୍କର ପ୍ରତି କଥାରେ) । ବାବାଙ୍କର ଆଶୀର୍ବାଦ ଫଳଦାୟକ ହୋଇଛି କି ନାହିଁ, ମୁଁ 'ବିରାଟ ପୁରୁଷ' କି ସାନ, ଅକାଜନ; ତା' ମୁଁ ଜାଣେ ନାହିଁ । କିନ୍ତୁ ମହାପୁରୁଷଙ୍କ ଦୟାରେ ମୁଁ ଅନ୍ତତଃ ଜଣେ ଭଲ ମଣିଷ ହୋଇପାରିଛି ଓ ବାପ ଅଜାଙ୍କ ନାଁ ରଖି ପାରିଛି, ଏତିକରେ ହିଁ ମୋର ଆତ୍ମ-ସନ୍ତୋଷ !

ଯୁବକ ଅବସ୍ଥାରେ ସାଲେପୁର ହାଟ ଆଉ ବସ୍ତାଣ୍ଡରେ ରତ୍ନାକର ବାବାଙ୍କୁ ମୁଁ ବହୁବାର ଦେଖିଛି । ତାଙ୍କ ବୟସର କଳନା ମୋ ବାପା କରିପାରି ନଥିଲେ । ମୁଁ ବି କରିପାରି ନାହିଁ । ବାଳ ପାଚି ନାହିଁ । ଦାନ୍ତ ପଡ଼ି ନାହିଁ । ସେହିପରି ଦୀର୍ଘ ଶରୀର, ଉଜ୍ଜ୍ୱଳ କାନ୍ତି, ବିରାଟ ବପୁବନ୍ତ ମୂର୍ତ୍ତି !

ତାପରେ ସେ କେଉଁଦିନ, କେଉଁ ଅବସ୍ଥାରେ ଅବା କପରି ଭାବରେ ଦେହତ୍ୟାଗ କରିଛନ୍ତି, ତାହା ମୁଁ କହିପାରିବି ନାହିଁ । କିନ୍ତୁ ମୋ ଅଟକଳ ଅନୁସାରେ ସେ ଥିଲେ ଜଣେ ମହାନ୍ ଜିତେନ୍ଦ୍ରିୟ, ଅଲୌକିକ-ପ୍ରତିଭା-ସମ୍ପନ୍ନ, ତପୋଯୋଗୀ, ନିର୍ଲିପ୍ତ, ନିର୍ବିକାର ମହାପୁରୁଷ ! ସେ ଅଞ୍ଚଳର ବୟୋବୃଦ୍ଧ ବ୍ୟକ୍ତିମାନେ ଏବେ ବି ତାଙ୍କୁ ମନେରଖିଛନ୍ତି ।

Ph. No. 45275 & 454252

**TRUE COPY**

BHARATIYA GYANPEETH

Founder
Shri Shanti Prasad Jain
President
Smt. Rama Jain

Sahu-Jain Nilaya
9. Alipore, Park Place
Calcutta-27
19-6-62

Dear Friend,

I have the pleasure to enclose herewith a copy of the scheme, sponsored by the Bharatiya Gyanpeeth to award a prize of Rs 1 lakh every year to the best literary creative writing in any of the Indian Languages.

It will be the endeavour of the Gyanpeeth to finalise the scheme and put it into practice in such a way that it gives the maximum satisfaction to Indian writers, encourages real creative literary effort, and earns prestige for our country.

You are earnestly requested to go through the scheme carefully, discuss it with your literary friends, and let us have your reactions and suggestions as to what modifications will, in your opinion, enable the scheme to achieve the objects in view.

Please suggest five names in order of priority for membership of the Advisory committees of the languages with which you are concerned.

Sri Bhanja Kishore Patnaik
Author & Playwright,
Alisha Bazar, Chandnichouk
Cuttack.

An early reply will oblige,
Yours sincerely
*Sd/-*
Secretary, Bharatiya
Gyanpeeth

ଉପରୋକ୍ତ ଏହି ପତ୍ରଟି ଭାରତୀୟ ଜ୍ଞାନପୀଠର ସମ୍ପାଦକ ମୋ ପାଖକୁ ପଠାଇଥିଲେ । ଯଥାସମୟରେ ମୁଁ ଉତ୍ତର ଦେଇଥିଲି ଏବଂ ମୋର ସ୍ୱତନ୍ତ୍ର ମତାମତ ଜଣାଇଥିଲି । ଏହିଭଳି ଭାବରେ "Men and Tradesman", "Who's who, India", "Who's who, Asia", "Bharatiya Sahitya Accademy", "Eurekka" ପ୍ରଭୃତି ବହୁ ଅନୁଷ୍ଠାନ ସହିତ ମୋର ପତ୍ରାଳାପ ହୋଇଥିଲା ଏବଂ ସେମାନେ ତାଙ୍କ ପୁସ୍ତକରେ ମୋର ଓ ମୋର ସାହିତ୍ୟିକ କୃତୀ ସମ୍ବନ୍ଧରେ ଉଲ୍ଲେଖ କରିଅଛନ୍ତି ।

---

## — ଛଅ —

ଗୋଧୂଳି ଲଗ୍ନ । ଏହି ଲଗ୍ନରେ ବ୍ରଜରାଜ ଶ୍ରୀକୃଷ୍ଣ ଗୋପାଳ ବାଳକଙ୍କ ସହ ଧେନୁ ଘେନି ଗୋଠରୁ ବାହୁଡ଼ି ଆସୁଥିଲେ । ବଂଶୀର ମଧୁର ରାଗିଣୀ ଗୋପାଙ୍ଗନା-ମାନଙ୍କୁ ଉତଳା କରି ପକାଉଥିଲା, ଆଉ ସତୃଷ୍ଣ ନୟନରେ କୃଷ୍ଣଚନ୍ଦ୍ରଙ୍କ ଫେରିବା ବାଟକୁ ଚାହିଁ ରହୁଥିଲେ ନନ୍ଦରାଣୀ ଯଶୋଦା । "ଭୋକରେ, ଶୋଷରେ ଆତୁର ହୋଇ ପୁଅ ମୋର ଫେରୁଥିବ"—ଏହି ଥିଲା ମମତାମୟୀ ମାତାଙ୍କର ଏକମାତ୍ର ଚିନ୍ତା । ଟିକିଏ ବିଳମ୍ବ ହେଲେ ସନ୍ଧ୍ୟା ଗୋପପୁର ଉପରେ ନଇଁ ଆସିବ—ତାପରେ ଆସିବ ରାତି ! ବଣ୍ୟ ଜନ୍ତୁ ଯଦି କିଛି···ନା, ଆଉ ଭାବିପାରନ୍ତି ନାହିଁ ଯଶୋମତୀ; ଆଖିରୁ ଲୁହଧାର ଗଡ଼ିପଡ଼େ । ଏତିକି କଳାକାହ୍ନୁର ବଂଶୀ ସ୍ୱନ ଶୁଭିଚି, ଶୁଭିଚି ଗାଭୀର ହମ୍ବା ରଡ଼ି—ନିଶ୍ଚିନ୍ତ ହୋଇଯାଆନ୍ତି ସେ । ଲଡ଼ୁ, କ୍ଷୀର, ଆଉ ଲହୁଣୀ ସବୁ ସଜାଡ଼ି ବସନ୍ତି ପୁଅ ପାଇଁ । ଧନ୍ୟ ମାତା ! ଏ ମାତୃ ସ୍ନେହ ଯେଉଁ ସନ୍ତାନ ନ ପାଇଛି, ଜୀବନ ତାର ଧିକ୍, ଶତଧିକ୍ । ଆଉ ଯିଏ ପାଇଛି,

ତାର ଜୀବନ ଧନ୍ୟ ହୋଇଛୁ । ସେ ହିଁ ପ୍ରକୃତରେ ଭାଗ୍ୟବାନ୍ । ଏଇ କଥା ଭାବି କେଜାଣି କାହିଁକି ମୋ ଆଖିରୁ ଲୁହଧାର ଗଡ଼ିପଡ଼େ ।

ଜୀବନର ଏଇ ଅପରାହ୍ଣରେ ବଡ଼ ନାଟକ ଲେଖିବାର ଇଚ୍ଛା ମୋର ଆଉ ନାହିଁ; ବଳ, ବୀର୍ଯ୍ୟ, ଜୀବନୀଶକ୍ତି କ୍ରମେ ଊଣା ହୋଇ ଆସୁଛି । ଏକାଙ୍କିକା ବା ଗୋଟାଏ ଅଧେ କବିତା ଲେଖିବାଛଡ଼ା ବହି ପଢ଼ାରେ ବେଶି ମନୋନିବେଶ କରୁଛି । ବନ୍ଧୁମାନଙ୍କଠାରୁ ବିଭିନ୍ନ ପୁସ୍ତକ ଆଣି ପଢ଼ିବାରେ ଓ ରେଡ଼ିଓ, ଟି.ଭି. ସାହାଚର୍ଯ୍ୟରେ ସମସ୍ତ ମୋର କଟିଯାଉଛି । ଜଣେ ଅଧେ ମୋଠୁଁ ବହି ପଢ଼ିବାକୁ ନେଇ ଫେରାଇ ନାହାନ୍ତି, ହଜି ଯାଉଛି ବା ତାଙ୍କଠୁ କିଏ ନେଇ ଯାଇଛନ୍ତି ବୋଲି କହୁଛନ୍ତି ଅଥବା ଜାଣିଶୁଣି ଫେରାଉ ନାହାନ୍ତି । ଦୁଃଖ କଥା କାହାକୁ ବା କହିବି ? କୌଣସି ଗୋଟିଏ ପୁସ୍ତକରେ ପଢ଼ିଥିଲି ତିନି ପ୍ରକାର ନିର୍ବୋଧ ଅଛନ୍ତି ବୋଲି । ବହି ଯିଏ ଧାର ଦିଏ ସେ ହେଉଛି ପହିଲି ନମ୍ବର ବୋକା, ଯିଏ ଫେରି ପାଇବାର ଆଶା ରଖେ ସେ ଦୁଇନମ୍ବର ବୋକା ଓ ଯିଏ ବହି ପଢ଼ିବାକୁ ମାଗି ନେଇ ପୁଣି ଫେରାଇ ଦିଏ ସେ ହେଉଛି ବୋକା ନମ୍ବର ତିନ୍ । ଏହା ଯେ ନିହାତି ସତ କଥା, ସ୍ୱୀକାର କରିବାରେ ବାଧା ନାହିଁ, କାରଣ ମୁଁ ହେଉଛି ବୋକା ନମ୍ବର ଏକ । ଆପଣାର ଅତି ପ୍ରିୟ ବନ୍ଧୁଟିଏ ଦୂରକୁ ଚାଲିଗଲେ ମନରେ ଯେଉଁ ଦୁଃଖ ଜାତ ହୁଏ, ପ୍ରିୟ ପୁସ୍ତକଟିଏ ହାତଛଡ଼ା ହୋଇଗଲେ ଦୁଃଖର ମାତ୍ରା ତାଠାରୁ ଅଧିକ । କାରଣ ଉତ୍ତମ ପୁସ୍ତକ ହିଁ ହେଉଛି ମନୁଷ୍ୟର ସର୍ବଶ୍ରେଷ୍ଠ ଅନ୍ତରଙ୍ଗ ବନ୍ଧୁ ।

ଯାହାଙ୍କ ଆଶୀର୍ବାଦ ଓ ସଦିଚ୍ଛା ବଳରେ ମୁଁ ଜ୍ଞାନ ଅର୍ଜନ କରିଛି, କିଛି ଲେଖିବାର ପ୍ରୟାସ କରୁଛି, ସେହି ସର୍ବମୟ କର୍ତ୍ତା ପରମେଶ୍ୱରଙ୍କୁ ଭକ୍ତିପୂତ ଅନ୍ତରରେ ଡାକିବାର ସୁଯୋଗ ମୋତେ ମିଳି ନାହିଁ । ଘର ସଂସାର, ବନ୍ଧୁ ବାନ୍ଧବ, ଟଙ୍କା ପଇସା, କାମନାଦୀପ୍ତ ସ୍ୱାର୍ଥ ଆଶା ପ୍ରଭୃତି ନାନା ଜଞ୍ଜାଳରେ ବୁଡ଼ିଯାଇ ମୁଁ ତାଙ୍କୁଇ ଭୁଲିଯାଇଛି—ଯାହାଙ୍କ ଦାନରେ ମୁଁ ଆଜି ମନୁଷ୍ୟ ବୋଲି ଆପଣାର ପରିଚୟ ଦିଏ । ଭାଗବତକାର ଲେଖିଛନ୍ତି, "ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ, ଦେଖି ସନ୍ତୋଷ ଭଗବାନ"—ସେ ଦିବ୍ୟଜ୍ଞାନ କାହିଁ ? ମହାନଦୀରେ କେତେ ଜଳ ଆସି ବହିଯାଇଛି, ପର୍ଯ୍ୟାପ୍ତ ସମସ୍ତ ନାନା ସାଂସାରିକ ଚିନ୍ତାରେ କଟିଯାଇଛି; ହେଲେ ଯିଏ ସାରା ସୃଷ୍ଟିର କର୍ତ୍ତା ତାଙ୍କୁ ଡାକିବାକୁ ଚିତ୍ତ ବଳୁନାହିଁ । ଆଜି ଜୀବନର ଅପରାହ୍ଣରେ ମନକୁ ଆସୁଛି, ସବୁ ତ ହେଲା, ଧନ ଉପାର୍ଜନ କଲି, କିନ୍ତୁ ଧର୍ମ ତ ଅର୍ଜି ପାରିଲି ନାହିଁ । ଭାଗବତକାର କହିଛନ୍ତି, "ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନରହର" । ଗୀତା, ଭାଗବତ, ପୁରାଣ ସବୁ ତ ଆମେ ପଢ଼ିଲେ, ଶୁଣିଲେ, ହେଲେ ସବୁ ପ୍ରବଚନ ଖାଲି କଥାରେ ରହିଗଲା···ଧର୍ମ

ସନ୍ତାନରେ ଭୂଷଣ ଦେବା ପାଇଁ, ଅନ୍ୟଙ୍କୁ ପ୍ରତାରିତ କରିବା ପାଇଁ, ହେଲେ ଆମେ ନିଜେ ସେ ସବୁକୁ ଆମ କାମରେ ଲଗାଇ ପାରିଲୁନାହିଁ । ବଇଷ୍ଣବ ବୈଷ୍ଣବ ହୋଇ ନିଜକୁ ପତାରିତ କଲୁ ଆମେ । 'ସୋହଂ' ବୋଲି ଧାରଣା କରି ଧର୍ମ ମାର୍ଗରେ ଆତ୍ମ ଦର୍ଶନ କରିବାକୁ ଚଳେ ହେଲେ ଆଗଭର ହେଲୁ ନାହିଁ ।

ଶ୍ରୀମଦ୍ ଭଗବତ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି,

"ସର୍ବଧର୍ମାନ୍ ପରିତ୍ୟଜ୍ୟ
ମାମେକମ୍ ଶରଣଂ ବ୍ରଜଃ,
ଅହଂ ତ୍ୱାଂ ସର୍ବପାପେଭ୍ୟୋ
ମୋକ୍ଷୟିଷ୍ୟାମି ମା ଶୁଚଃ ।"

ଭଗବାନଙ୍କଠାରେ ନିଷ୍କାମ ଭାବରେ ଆତ୍ମସମର୍ପଣ କର, ତାଙ୍କର ଚିନ୍ତାରେ ବୁଡ଼ି ରହି ନିଲିପ୍ତ ଭାବରେ ଆତ୍ମ-ନିବେଦନ କର, ଜଞ୍ଜାଳ ମୁକ୍ତ ହୁଅ, ମୁକ୍ତିର ପଥ ଅନୁସରଣ କର, ଏହାହିଁ ଜୀବର ପରମ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ଜୀବାତ୍ମା ସହିତ ପରମାତ୍ମାର ମିଳନ ଘଟାଏ, ପୁନର୍ଜନ୍ମର ଦୁର୍ଯୋଗ ନଷ୍ଟ କରି ମୋକ୍ଷର ପଥ ନିର୍ଦ୍ଦେଶ କରେ ।

ଗୀତାର ଏହି ସୁମହିତ ପ୍ରବଚନକୁ କେବଳ ବାକ୍ୟରେ ପ୍ରକାଶ କରି ଆମେ ଯଦି ଅସତ୍ ମାର୍ଗ ଅନୁସରଣ କରୁ, ନିଜର ସ୍ୱାର୍ଥ ହାସଲ କରିବା ପାଇଁ ପଶୁଠାରୁ ଅଧମ ବୃତ୍ତି ଅନୁସରଣ କରୁ, ତାହାହିଁ ପ୍ରକୃତରେ ଆତ୍ମ-ପ୍ରବଞ୍ଚନା !

ଆଜି ସମୟ ଆସିଛି, ସେ ପ୍ରବଞ୍ଚନାରୁ ଅପଣାକୁ ମୁକ୍ତ କରି ଦିବ୍ୟଜ୍ଞାନ ଅର୍ଜନ କରିବା ପାଇଁ ! ପଶ୍ଚିମ ଦିଗ୍‌ବଳୟରେ ସୂର୍ଯ୍ୟାସ୍ତ ପାଖେଇ ଆସିଲାଣି···ଏଥର ସନ୍ଧ୍ୟା ଆସିବ···ଦେବ ମନ୍ଦିରରେ ଆରତିର ଘଣ୍ଟା ବାଜିବ···ତାପରେ ଆସିବ ରାତି ! ଏହି ରାତି ହିଁ ଜୀବନର ଶେଷ ରାତି ହୋଇ ପାରେ; ଆଗାମୀ କାଲିର ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରିବାର ସୌଭାଗ୍ୟ ମିଳିବ କି ନା, କିଏ ଜାଣେ ? ଧୂସର ଅପରାହ୍ଣର ଏଇ ମାହେନ୍ଦ୍ର ବେଳାରେ ନାରାୟଣଙ୍କ ସେ ବଂଶୀ-ମୋହନ ରୂପ କଳ୍ପନା ନୟନରେ ବାରମ୍ବାର ଭାସି ଉଠୁଛି—ପୁଣି ଧୀରେ ଧୀରେ ବିସ୍ମୃତିର ଗର୍ଭରେ ଲୀନ ହୋଇ ଯାଉଛି । ବଙ୍ଗଳାର କବି ଗାଇଛନ୍ତି :—

"ଓଗୋ, ସୁନ୍ଦର ! ମନେର ଗହନେ
ତୋମାର ମୂରତି ଖାନି
ଭେସେ ଭେସେ ଯାୟ୍ ଭେଙ୍ଗେ ଯାୟ୍ ବାରେ ବାରେ
ବାହିର ବକ୍ଷେ ତାଇ'ତ ତୋମାୟ୍ ଟାନି !
ଓଗୋ ସୁନ୍ଦର···

ତୋମାର ଆସନ—
ପାତବ ପଥେର ଧାରେ
ତୋମାର ଆସନ
ପାତବ ହାଟେର ମାଝେ !
ଓଇ ଯେ ହେଥାୟ, ସାଗର ବେଳାୟ
ଢେଉ କରେ କାନାକାନି
ବାହୁର ବନ୍ଧେ ତାଇ'ତ ତୋମାୟ ଟାନି !
ଓଗୋ ସୁନ୍ଦର !…"

କବିଙ୍କର ଏଇ ଯେଉଁ ଆକୁଳତା, ଏଇ ଯେଉଁ ଜିଜ୍ଞାସା ତାଙ୍କ ଭଗବାନଙ୍କ ରୂପ ସମୂର୍ତି ଦେଖା ଯାଉଛି, ରାସ୍ତା ମନ୍ଦିରେ, ହାଟ ଭିତରେ ଆଉ ସାଗରର ଲହରୀ ମଧ୍ୟରେ । ସେ ସୁନ୍ଦର, ସେ ନିତ୍ୟନୂତନ, ସେ ଚିରନ୍ତନ ! ତାଙ୍କୁ ଧରି ରଖିବାର ଏଇ ଯେଉଁ ବ୍ୟାକୁଳତା, ତାହା ହିଁ ପ୍ରକୃତରେ ଦିବ୍ୟ ଜ୍ଞାନ, ବାସ୍ତବ ଧର୍ମ ଧାରଣା । ସେଠାରେ ଅହଂକାର ନାହିଁ, ପ୍ରଲୋଭନ ନାହିଁ, ଜିଗୀଷା ନାହିଁ, କେବଳ ତାଙ୍କର ଚରଣ ତଳେ ଶରଣ ନେବାର, ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବାର କାମନା ହିଁ ପ୍ରକଟିତ ।

ଏଇ, ସନ୍ଧ୍ୟା ଆସୁଛି, ଆଉ ପରେ ରାତି ଘନେଇ ଆସିବ । ଆସୁ, ଯାହା ଆସିବ ଆସୁ, ଜୀବନର ଶେଷ ନିଃଶ୍ୱାସ ନିର୍ଗତ ହେବା ପର୍ଯ୍ୟନ୍ତ ପଛକୁ ନ ଚାହିଁ କର୍ମ ପଥରେ, ଧର୍ମ ପଥରେ ଆଗେଇ ଯିବାକୁ ପଡ଼ିବ । ପ୍ରସିଦ୍ଧ ଆମେରିକାନ କବି Robert Lee Frost ତାଙ୍କର "Stopping by woods on a snowy evening" କବିତାରେ ଲେଖିଛନ୍ତି—

"The woods are lovely, dark and deep,
But I have promises to keep,
And miles to go before I sleep,
And miles to go before I sleep."

---

ଗଣେଶ ପୂଜା
୧୬ । ୯ । ୯୬

# ପରିଶିଷ୍ଟ

## ଲାଭ କରିଥିବା ସମ୍ମାନ, ଆୱାର୍ଡ଼ ଓ ପୁରସ୍କାର ପ୍ରଭୃତି

୧। ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପୁରସ୍କାର ୧୯୫୮-୫୯
୨। ଓଡ଼ିଶା ସଙ୍ଗୀତ ନାଟକ ପୁରସ୍କାର ୧୯୭୭-୭୮
୩। ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ବିଷୁବ ମିଳନ ପୁରସ୍କାର ୧୯୬୧
୪। ଓଡ଼ିଶା ସାହିତ୍ୟ ଏକାଡେ଼ମୀ କର୍ତ୍ତୃକ ପ୍ରଦତ୍ତ ତାମ୍ରପତ୍ର ୧୯୮୮
୫। ନାଟକ 'କୋଣାର୍କ' ଲାଗି ଜାତୀୟ ପୁରସ୍କାର ୧୯୮୪
୬। କବିଚନ୍ଦ୍ର ସ୍ମୃତି କମିଟି ପକ୍ଷରୁ ପ୍ରଦତ୍ତ ପୁରସ୍କାର ୧୯୮୨
୭। ଫିଲ୍ମ 'ନବଜନ୍ମ' ପାଇଁ ରାଷ୍ଟ୍ରପତି ପୁରସ୍କାର ୧୯୫୬
୮। ଓଡ଼ିଶା ବନ ବିଭାଗ ସାଂସ୍କୃତିକ ସଂସଦ ପୁରସ୍କାର ୧୯୮୭
୯। ଉତ୍କଳ ସାହିତ୍ୟ ସମାଜ ପ୍ରଦତ୍ତ ନାଟ୍ୟକାର ରାମଚନ୍ଦ୍ର ମିଶ୍ର ସମ୍ମାନ ୧୯୯୪
୧୦। ଓଡ଼ିଆ ନାଟକ ଶତବାର୍ଷିକୀ ସମ୍ମାନ ୧୯୭୭
୧୧। ଜନତା ରଙ୍ଗମଞ୍ଚ କର୍ତ୍ତୃକ ପ୍ରଦତ୍ତ ସମ୍ମାନ ୧୯୬୩
୧୨। 'ଚଳପଥ' ବିଷୁବ ମିଳନ ପୁରସ୍କାର ୧୯୮୦
୧୩। 'ଅଶୋକ ସ୍ତମ୍ଭ' ନାଟକ ପାଇଁ ବାଙ୍ଗାଲୋର ରବୀନ୍ଦ୍ର କଳାକ୍ଷେତ୍ର ଠାରେ ପ୍ରଦତ୍ତ ସମ୍ମାନ ୧୯୭୦
୧୪। ଆଦ୍ୟ-ନାଟ୍ୟକାର ସମ୍ମାନ ୧୯୯୬
୧୫। 'ଉତ୍କଳ ପାଠକ ସଂସଦ' କର୍ତ୍ତୃକ 'ନାଟ୍ୟରତ୍ନ' ଉପାଧି ପ୍ରଦାନ ୧୯୮୪
୧୬। 'ଉତ୍କଳ ନାଟ୍ୟସଂଘ' କର୍ତ୍ତୃକ 'ନାଟ୍ୟ ଭାରତୀ' ଉପାଧି ପ୍ରଦାନ ୧୯୩୮-୪୯

ଏତଦ୍‌ବ୍ୟତୀତ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନମାନଙ୍କ ଦ୍ୱାରା ବହୁ ସମ୍ମାନ,
ମାନପତ୍ର ଓ ଉପଢୌକନ ପ୍ରଭୃତି

## —ଭଞ୍ଜକିଶୋର ରଚନାବଳୀ—

ପ୍ରକାଶିତ ନାଟକ—

୧ । ଅଘଥ—୧୯୫୫, ୧୯୭୪
୨ । ଅଗ୍ନି-ପରୀକ୍ଷା—୧୯୫୫
୩ । ଅଶୋକସ୍ତମ୍ଭ—୧୯୫୯
୪ । ଆଲେକ—୧୯୫୦
୫ । ଆକାଶ ଯେଉଁଠି ମାଟି ଛୁଏଁ—୧୯୭୪
୬ । ଏ ଯୁଗର ଝିଅ—୧୯୬୦
୭ । କୁଳବୋହୂ—୧୯୫୭
୮ । କାଶ୍ମୀରୀ ବେଗମ୍ ଗୁଲନାର—୧୯୭୭
୯ । କୋଣାର୍କ—୧୯୮୨
୧୦ । ଗରବ—୧୯୪୯
୧୧ । ଗୋଟିଏ ମା' କୋଟିଏ ସନ୍ତାନ—୧୯୭୪
୧୨ । ଜହର—୧୯୪୭, ୧୯୬୮
୧୩ । ଜୟମାଳ୍ୟ—୧୯୫୨
୧୪ । ଜୀବନ ଜୁଆ—୧୯୫୦
୧୫ । ତୋଫାନ—୧୯୪୯
୧୬ । ଦିଗ୍‌ଦର୍ଶନ—୧୯୯୧
୧୭ । ଦେଖା—୧୯୪୫
୧୮ । ଦେବଭୂମି—୧୯୭୭
୧୯ । ପରଶୋଧ—୧୯୫୭
୨୦ । ପହିଲି ରଜ—୧୯୫୩
୨୧ । ପ୍ରତାପରୁଦ୍ର—୧୯୫୮
୨୨ । ବେନାମୀ—୧୯୪୭
୨୩ । ବୈରାଗୀର ସଂସାର—୧୯୫୨
୨୪ । ମାଣିକଯୋଡ଼—୧୯୫୧
୨୫ । ରାଜନର୍ତ୍ତକୀ—୧୯୫୮
୨୬ । ସାଧନା—୧୯୫୧

୨୭ । ଶାଆଳ୍ପଘର—୧୯୫୭
୨୮ । ସୁଖୀ ସଂସାର—୧୯୬୫
୨୯ । ଶିକାର—୧୯୪୭, ୧୯୫୭

**ଅପ୍ରକାଶିତ ନାଟକ—**

୧ । ଅଦୃଷ୍ଟ ଚକ୍ର—୧୯୪୪
୨ । ଝଡ଼ ଗ୍ରନ୍ଥ—୧୯୩୯ (ବାଲପଡା ହାଇସ୍କୁଲ ଛାତ୍ରଙ୍କ ଦ୍ୱାରା ଅଭିନୀତ)
୩ । ଢାଙ୍ଗା—୧୯୪୦ (ପୁରୀ ଜଗନ୍ନାଥ ଥିଏଟର ଦ୍ୱାରା ଅଭିନୀତ)
୪ । ପଲଣ୍ଡ—୧୯୪୩ (କଟକ ଇଂଷ୍ଟିଚ୍ୟୁସନ ସ୍କୁଲ ଛାତ୍ରଙ୍କ ଦ୍ୱାରା ଅଭିନୀତ)
୫ । ପ୍ରେମପୁଷ୍ପ—୧୯୪୦ (ଉର୍ଣ୍ଣିପୁର ଶ୍ରୀକୃଷ୍ଣ ଡ୍ରାମାଟିକ କ୍ଲବ ଦ୍ୱାରା ଅଭିନୀତ)
୬ । ଫୁଲଶେଯ—୧୯୯୦ (କଟକ ସିଭିଲ କୋର୍ଟ ଷ୍ଟାଫ୍ ଦ୍ୱାରା ଅଭିନୀତ)

**ଅପ୍ରକାଶିତ ନାଟିକା ଓ ବେତାର ନାଟିକା—**

୧ । ପାଞ୍ଚୋଟି ଏକାଙ୍କିକା—୧୯୬୨
୨ । ଏକାଙ୍କିକା ସମାବେଶ—୧୯୬୯
୩ । ବାଣ ହରଣ—୧୯୫୦
୪ । ସୁଲତାନା ରେଜିୟା—୧୯୮୩
୫ । ବାଜି ରହିଲା—୧୯୬୫
୬ । ଘରଣୀ (ଆଠଟି ଏକାଙ୍କିକାର ସମାହାର)—୧୯୬୮
୭ । ଜାଗରଣ—୧୯୬୫
୮ । ଅସଜ୍ଜାକାଳର ସୂର୍ଯ୍ୟ—୧୯୭୭

**ଅପ୍ରକାଶିତ ନାଟିକା, ବେତାର ନାଟିକା ଓ ଦୂରଦର୍ଶନ ନାଟକ—**

୧ । ସାବିତ୍ରୀ
୨ । କର୍ଣ୍ଣ
୩ । ସାନ ମା'
୪ । ଖାନତଲ୍ଲାସ
୫ । କୃଷ୍ଣା
୬ । ଅଗ୍ନି-ପତଙ୍ଗ
୭ । ଦାନଦର୍ପୀ
୮ । ମାଉଲଖଣ୍ଡ
୯ । ବରକନ୍ୟା
୧୦ । ଧନୀ ସୌଦାଗର
୧୧ । ଚକ ଘୁରୁଆଏ (ଘିଅଜ)
୧୨ । ବୋହୂ (ଦୂରଦର୍ଶନରେ ପ୍ରସାରିତ)

**ପ୍ରକାଶିତ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ—**

୧ । ମରୁପଥିକ (ଉପନ୍ୟାସ
୨ । କଲମ (କ୍ଷୁଦ୍ରଗଳ୍ପ)

୩ । ତାସ୍‌ର ଘର (କ୍ଷୁଦ୍ରଗଳ୍ପ)
୪ । ଧାନ ଓ ଜନତା (କ୍ଷୁଦ୍ରଗଳ୍ପ)
୫ । ବାସ୍ତାଣୀ (କ୍ଷୁଦ୍ରଗଳ୍ପ)

ଅପ୍ରକାଶିତ ଅନ୍ୟାନ୍ୟ ରଚନା—
୧ । ପଥିକ ରୁମ ବଂଶୀ ବାଜ (କବିତାଗୁଚ୍ଛ)
୨ । ବଳବାମନ (ଗୀତିନାଟ୍ୟ, J. E. କମ୍ପାନୀ ଦ୍ୱାରା କ୍ୟାସେଟ୍ ନିର୍ମିତ)
୩ । ମୁକ୍ତି ଭିକ୍ଷା ( ,, ,, )
୪ । ବୋହୂ (ଦୂରଦର୍ଶନ ନାଟିକା)
୫ । ପଶ୍ଚିମା ହାଓ୍ୱା (ଦୂରଦର୍ଶନ ନାଟିକା)

ଚଳଚ୍ଚିତ୍ର—
୧ । ମାଣିକଯୋଡ଼ (କାହାଣୀ ଓ ସଂଳାପ)
୨ । ଜୀବନ-ସାଥୀ (ସଂଳାପ)
୩ । ନବଜନ୍ମ (କାହାଣୀ ଓ ସଂଳାପ)
୪ । ରାଜା ହରିଶ୍ଚନ୍ଦ୍ର (ସଂଳାପ)
୫ । ମାନ ଅଭିମାନ (ସଂଳାପ)

---

ବିଂଶ ଶତାବ୍ଦୀର ଚତୁର୍ଥ-ପଞ୍ଚମ ଦଶକରେ ଯେଉଁ କେତେଜଣ ଓଡ଼ିଶାର ସାଂସ୍କୃତିକ ତଥା କଳାଜଗତକୁ ଗୌରବାନ୍ୱିତ କରିଥିଲେ, ସେମାନଙ୍କ ମଧ୍ୟରେ ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ ଅନ୍ୟତମ । ସେ ଜନ୍ମଗ୍ରହଣ କରିଥିଲେ କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ଗୁର୍ଣ୍ଣିପୁର ଗ୍ରାମରେ ୧୯୨୨ ମସିହା ନଭେମ୍ବର ୧୩ ତାରିଖରେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ଭଞ୍ଜକିଶୋର ୧୨।୧୩



ବର୍ଷ ବୟସରୁ କବିତା ଓ ଶ୍ରେଷ୍ଠ ନାଟକ ଲେଖା ଆରମ୍ଭ କରିଥିଲେ । ସେହିଦିନରୁ ଗତ ୬୦ ବର୍ଷ ମଧ୍ୟରେ ସେ ବହୁ କାବ୍ୟ-କବିତା, କ୍ଷୁଦ୍ରଗଳ୍ପ ପ୍ରବନ୍ଧ, ଏକାଙ୍କିକା, ବେତାର ଓ ଦୂରଦର୍ଶନ ନାଟିକା, ଗୀତିନାଟ୍ୟ, ଓ ପ୍ରାୟ ସ୍ୱଳଣ ଖଣ୍ଡ ପୂର୍ଣ୍ଣାଙ୍ଗ ନାଟକ ରଚନା କରିଛନ୍ତି । "ମରୁପଥିକ" ତାଙ୍କର ଏକ ଉଚ୍ଚକୋଟୀର ଉପନ୍ୟାସ । "ମାଣିକ ଯୋଡ଼ି," "ଜୀବନସାଥୀ", "ନବଜନ୍ମ" ଓ "ରଜାହରିଶ୍ଚନ୍ଦ୍ର" ଚଳଚ୍ଚିତ୍ର ମଧ୍ୟ ତାଙ୍କରି କୃତି । "ନବଜନ୍ମ" ଚଳଚ୍ଚିତ୍ର ରାଷ୍ଟ୍ରପତି ପୁରସ୍କାର ଲାଭ କରିଛି । ତାଙ୍କର 'କୋଣାର୍କ' ଶ୍ରେଷ୍ଠ-ନାଟକ ପାଇଁ ସେ ଜାତୀୟ ପୁରସ୍କାର ଲାଭ କରିବା ସହିତ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ଓ ତାମ୍ରପତ୍ର ଲାଭ କରିଛନ୍ତି । ତାଙ୍କ ଅମ୍ଳାନ ପ୍ରତିଭାର ସ୍ୱୀକୃତି ସ୍ୱରୂପ "ଉତ୍କଳ ନାଟ୍ୟସଂଘ" ତାଙ୍କୁ "ନାଟ୍ୟଭାରତୀ" ଓ "ଉତ୍କଳ ପାଠକ ସଂସଦ" ତାଙ୍କୁ "ନାଟ୍ୟରତ୍ନ" ଉପାଧିରେ ବିଭୂଷିତ କରିଛନ୍ତି । ଏବେ ପରିଣତ ବୟସରେ ମଧ୍ୟ ତାଙ୍କ ଲେଖନୀ ଜାଗ୍ରତ ଓ ସଚଞ୍ଚଳ ରହିଛି । ତାଙ୍କର ମହାର୍ଘ ଅବଦାନ ଦ୍ୱାରା ଭାରତ ତଥା ଓଡ଼ିଶାର ସାହିତ୍ୟ ଜଗତକୁ ଉତ୍ତରୋତ୍ତର ସମୃଦ୍ଧ କରିବାକୁ ପରମେଶ୍ୱର ତାଙ୍କୁ ସମସ୍ତ ଓ ଶକ୍ତି ଦିଅନ୍ତୁ, ଏତିକି ପ୍ରାର୍ଥନା ।

—ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ